# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**April-2021**

୭୭ ଭାଗ ୯ମ ସଂଖ୍ୟା ଚୈତ୍ର-ବୈଶାଖ ଅପ୍ରେଲ - ୨୦୨୧



---

ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

**ଅପ୍ରେଲ -୨୦୨୧**





# ବନ୍ଦେ ଉତ୍କଳ ଜନନୀ

ବନ୍ଦେ ଉତ୍କଳ ଜନନୀ
ଚାରୁହାସମୟୀ ଚାରୁ ଭାଷମୟୀ, ଜନନୀ, ଜନନୀ, ଜନନୀ ।
ପୂତ-ପୟୋଧି-ବିଧୌତ-ଶରୀରା,
ତାଳତମାଳ-ସୁଶୋଭିତ-ତୀରା,
ଶୁଭ୍ରତଟିନୀକୂଳ-ଶୀକର-ସମୀରା
ଜନନୀ, ଜନନୀ, ଜନନୀ ।।

ଘନ ବନଭୂମି ରାଜିତ ଅଙ୍ଗେ,
ନୀଳ ଭୂଧରମାଳା ସାଜେ ତରଙ୍ଗେ,
କଳ କଳ ମୁଖରିତ ଚାରୁ ବିହଙ୍ଗେ
ଜନନୀ, ଜନନୀ, ଜନନୀ ।।

ସୁନ୍ଦରଶାଳି-ସୁଶୋଭିତ-କ୍ଷେତ୍ରା,
ଜ୍ଞାନବିଜ୍ଞାନ-ପ୍ରଦର୍ଶିତ-ନେତ୍ରା,
ଯୋଗୀଋଷିଗଣ-ଉଟଜ-ପବିତ୍ରା
ଜନନୀ, ଜନନୀ, ଜନନୀ ।।

ସୁନ୍ଦର ମନ୍ଦିର ମଣ୍ଡିତ-ଦେଶା,
ଚାରୁକଳାବଳି-ଶୋଭିତ-ବେଶା,
ପୁଣ୍ୟ ତୀର୍ଥଚୟ-ପୂର୍ଣ୍ଣ-ପ୍ରଦେଶା
ଜନନୀ, ଜନନୀ, ଜନନୀ ।।

ଉତ୍କଳ ସୁରବର-ଦର୍ପିତ-ଗେହା,
ଅରିକୁଳ-ଶୋଣିତ-ଚର୍ଚ୍ଚିତ-ଦେହା,
ବିଶ୍ୱଭୂମଣ୍ଡଳ-କୃତବର-ସ୍ନେହା
ଜନନୀ, ଜନନୀ, ଜନନୀ ।।

କବିକୁଳମୌଳି ସୁନନ୍ଦନ-ବନ୍ଦ୍ୟା,
ଭୁବନବିଘୋଷିତ-କୀର୍ତ୍ତିଅନିନ୍ଦ୍ୟା,
ଧନ୍ୟେ, ପୁଣ୍ୟେ, ଚିରଶରଣ୍ୟେ
ଜନନୀ, ଜନନୀ, ଜନନୀ ।।

(କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର)

# ନବ ଉତ୍କଳର ନିର୍ମାତାଗଣ



ଉତ୍କଳଗୌରବ ମଧୁସୂଦନ ଦାସ







ଉତ୍କଳମଣି ଗୋପବନ୍ଧୁ ଦାସ

# ନବ ଉତ୍କଳର ନିର୍ମାତାଗଣ



ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ



ପଣ୍ଡିତ ନୀଳକଣ୍ଠ ଦାସ





ସ୍ୱଭାବକବି ଗଂଗାଧର ମେହେର



ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ

# ନବ ଉତ୍କଳର ନିର୍ମାତାଗଣ



ବ୍ୟାସକବି ଫକୀରମୋହନ ସେନାପତି







କବିବର ରାଧାନାଥ ରାୟ

# ନବ ଉତ୍କଳର ନିର୍ମାତାଗଣ



ଡକ୍ଟର ହରେକୃଷ୍ଣ ମହତାବ







ମହାନ୍ ଜନନାୟକ ବିଜୁ ପଟ୍ଟନାୟକ

# ଗଣତାନ୍ତ୍ରିକ ମୂଲ୍ୟବୋଧ ପ୍ରତି ଯଥାର୍ଥ ସମ୍ମାନ



## ଗଣତନ୍ତ୍ରରେ ଭିନ୍ନ ଏକ ପରମ୍ପରା...



ବିରୋଧୀ ଦଳର ନେତୃମଣ୍ଡଳୀଙ୍କୁ ନବୀନ ନିବାସକୁ ସସମ୍ମାନେ ପାଛୋଟି ଆଣିବା ସକାଶେ
ନବୀନ ନିବାସରୁ ବାହାରୁଛନ୍ତି ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ।




ବିରୋଧୀ ଦଳର ମାନ୍ୟବର ସଦସ୍ୟମାନଙ୍କୁ ଫୁଲ ଚନ୍ଦନ ଦେଇ ସ୍ୱାଗତ କରାଯାଉଛି ।



ନବୀନ ନିବାସ ପରିସରରେ ଓଡ଼ିଶା ବିଧାନସଭାର ବିରୋଧୀ ଦଳର ନେତା ଓ
ସଦସ୍ୟଙ୍କ ସହ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ।



ନବୀନ ନିବାସଠାରେ ବିରୋଧୀ ଦଳର ନେତା ଓ ସଦସ୍ୟଙ୍କ ସହ
ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଆଲୋଚନାରତ ।



## ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା 'ମୋ କଲେଜ ଅଭିଯାନ'ର ଶୁଭାରମ୍ଭ










ଶ୍ରୀକ୍ଷେତ୍ର ପୁରୀଠାରେ ଭାରତର ମାନ୍ୟବର ରାଷ୍ଟ୍ରପତି ଶ୍ରୀ ରାମନାଥ କୋବିନ୍ଦ ।




# BHUBANESWAR'S FIRST LIBRARY INSIDE A PARK

## FOREST PARK LIBRARY

Time

7 AM - 10 AM
4 PM - 7 PM

(Every Monday Closed)

Free for all | For all age groups | Books of various genres & languages

An Initiative of
Bhubaneswar Development Authority
(Managed by Bakul Foundation)

## ଦିଲ୍ଲୀ ଫ୍ଲାଇଙ୍ଗ କ୍ଲବ୍ ପକ୍ଷରୁ ବିଜୁ ବାବୁଙ୍କ ଜୟନ୍ତୀ ପାଳନ

# ଦିଲ୍ଲୀ ଫ୍ଲାଇଙ୍ଗ କ୍ଲବ୍‌ରେ ବିଜୁ ବାବୁଙ୍କ ଟ୍ରେନିଂ ଦେଶର ବିମାନ ଚାଳନା କ୍ଷେତ୍ରରେ ନୂଆ ଇତିହାସ ସୃଷ୍ଟି କରିଥିଲା

– ମୁଖ୍ୟମନ୍ତ୍ରୀ




ବିଜୁ ବାବୁଙ୍କର ବ୍ୟକ୍ତିତ୍ୱର ସବୁଠାରୁ ବଳିଷ୍ଠ ଦିଗ ହେଉଛି ତାଙ୍କ ସାହସିକତା । ସେ ରାଜନୀତି ହେଉ, ବା ବିମାନ ଚାଳନା – ସବୁ କ୍ଷେତ୍ରରେ ତାଙ୍କର ଅସୀମ ସାହସ ସବୁବେଳେ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ହୋଇଥାଏ ।

ଜଣେ ଦୁର୍ଦ୍ଧର୍ଷ ପାଇଲଟ୍ ଭାବରେ ବିଜୁ ବାବୁ ଦେଶ ବିଦେଶରେ ସୁପରିଚିତ । ଇଣ୍ଡୋନେସିଆର ସ୍ୱାଧୀନତା ସଂଗ୍ରାମ ହେଉ, ବା ଜାମ୍ମୁ କାଶ୍ମୀରରେ ପାକିସ୍ତାନୀ ସୈନ୍ୟଙ୍କ ଆକ୍ରମଣ – ସବୁ କ୍ଷେତ୍ରରେ ସେ ତାଙ୍କର ଅସାମାନ୍ୟ ଦକ୍ଷତା ଓ ଅସୀମ ସାହସର ପରିଚୟ ଦେଇଯାଇଛନ୍ତି ।

ଦିଲ୍ଲୀ ଫ୍ଲାଇଙ୍ଗ କ୍ଲବ୍ ପକ୍ଷରୁ ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କ ୧୦୫ତମ ଜୟନ୍ତୀ ପାଳନ କରାଯାଇଛି । ଦେଶର ବିମାନ ଚାଳନା କ୍ଷେତ୍ରରେ ବିଜୁ ବାବୁଙ୍କ ଅବଦାନକୁ ସ୍ମରଣୀୟ କରିବା ପାଇଁ ଦିଲ୍ଲୀ ଫ୍ଲାଇଙ୍ଗ କ୍ଲବ୍ ପ୍ରତି ବର୍ଷ ତାଙ୍କ ଜନ୍ମ ଦିନକୁ କିମ୍ବଦନ୍ତୀ ଭାରତୀୟ ପାଇଲଟ୍ ଦିବସ ଭାବରେ ପାଳନ କରିବ ଏବଂ ଦେଶର ଜଣେ ଦକ୍ଷ ପାଇଲଟ୍‌ଙ୍କୁ ସମ୍ମାନିତ କରିବା ପାଇଁ ନିଷ୍ପତ୍ତି ନେଇଛି । କ୍ଲବର ସଭାପତି ଡଃ ବି.ବି.ଏଲ୍ ମଧୁକର ବିଜୁ ଜୟନ୍ତୀ ସମାରୋହ ଅବସରରେ ଏହା କହିଛନ୍ତି ।

ଏହି ଅବସରରେ ଆୟୋଜିତ ଏକ ସମାରୋହ ପାଇଁ ଏକ ଭିଡିଓ ବାର୍ତ୍ତାରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କହିଛନ୍ତି ଯେ ଦିଲ୍ଲୀ ଫ୍ଲାଇଙ୍ଗ କ୍ଲବ୍‌ରେ ବିଜୁ ବାବୁଙ୍କ ପ୍ରଶିକ୍ଷଣ ଦେଶର ବିମାନ ଚାଳନା କ୍ଷେତ୍ରରେ ଏକ ନୂଆ ଇତିହାସ ସୃଷ୍ଟି କରିଥିଲା । ତାଙ୍କର ବିମାନ ଉଡାଣର କାହାଣୀ ଆଜି କିମ୍ବଦନ୍ତୀ ହୋଇ ଘରେ ଘରେ ତାଙ୍କ ସାହସିକତା ଓ ଦେଶଭକ୍ତିର କଥା ବର୍ଣ୍ଣନା କରୁଛି ।






ମୁଖ୍ୟମନ୍ତ୍ରୀ କହିଥିଲେ ଯେ ବିମାନ ଚାଳନା ପାଇଁ ପ୍ରବଳ ଆଗ୍ରହ ଯୋଗୁଁ ବିଜୁ ବାବୁ ୧୯୩୦ ଦଶକର ପ୍ରାରମ୍ଭରେ ଦିଲ୍ଲୀ ଫ୍ଲାଇଙ୍ଗ କ୍ଲବ୍‌ରେ ବିମାନ ଚାଳନା ପାଇଁ ପ୍ରଶିକ୍ଷଣ ଆରମ୍ଭ କରିଥିଲେ ଏବଂ ଏହିଠାରୁ ହିଁ ଆରମ୍ଭ ହୋଇଥିଲା ତାଙ୍କର ଗୌରବମୟ ଯାତ୍ରା । ଇଗଲ୍ ପରି ଉଚ୍ଚ ଆକାଶରେ ଉଡିବା ଏବଂ ଝଡ ସହ ଲଢିବା ତାଙ୍କର ନିଶା । ଆଉ ତାଙ୍କର ସେହି ସ୍ୱପ୍ନକୁ ପୂରଣ କରିଥିଲା ଦିଲ୍ଲୀ ଫ୍ଲାଇଙ୍ଗ କ୍ଲବ । ସେ ବୋଧହୁଏ ଏକମାତ୍ର ସଂଗ୍ରାମୀ ଯିଏ କି ତିନୋଟି ଦେଶର ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇଥିଲେ । କେବଳ ଭାରତ ନୁହେଁ, ଇଣ୍ଡୋନେସିଆ ଓ ରୁଷିଆର ସ୍ୱାଧୀନତା ସଂଗ୍ରାମରେ ମଧ୍ୟ ସେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ।  ଭାରତରେ ଜୟପ୍ରକାଶ ନାରାୟଣ ଓ ଅରୁଣା ଆସଫ୍ ଅଲ୍ଲୀଙ୍କ ପରି ନେତୃବୃନ୍ଦଙ୍କୁ ବିମାନ ଯୋଗେ ବିଭିନ୍ନ ସ୍ଥାନକୁ ନେଇ ବ୍ରିଟିଶ କର୍ତ୍ତୃପକ୍ଷଙ୍କ ନଜରରୁ ବଞ୍ଚାଇଥିଲେ । ଏଥିପାଇଁ ସେ ବ୍ରିଟିଶ ସରକାରଙ୍କ ଆକ୍ରୋଶର ଶିକାର ହୋଇ ଜେଲ୍ ମଧ୍ୟ ଯାଇଥିଲେ । ଇଣ୍ଡୋନେସିଆର ସ୍ୱାଧୀନତା ସଂଗ୍ରାମରେ ତାଙ୍କ ଭୂମିକା ବିଶ୍ୱବିଦିତ । ଏହାସହିତ ଦ୍ୱିତୀୟ ବିଶ୍ୱ ଯୁଦ୍ଧ ସମୟରେ ସେ ରୁଷିଆର ରେଡ୍ ଆର୍ମିକୁ ମଧ୍ୟ ସହାୟତା ଦେଇଥିଲେ ।

- **ଦିଲ୍ଲୀ ଫ୍ଲାଇଙ୍ଗ କ୍ଲବ୍ ପ୍ରତି ବର୍ଷ ବିଜୁ ବାବୁଙ୍କ ଜୟନ୍ତୀକୁ 'କିମ୍ବଦନ୍ତୀ ଭାରତୀୟ ପାଇଲଟ୍ ଦିବସ' ଭାବେ ପାଳନ କରିବ ।**
- **ଦେଶର ଜଣେ ଦକ୍ଷ ପାଇଲଟ୍‌କୁ ସମ୍ମାନିତ କରିବ ।**

ମୁଖ୍ୟମନ୍ତ୍ରୀ ତାଙ୍କ ବାର୍ତ୍ତାରେ କହିଥିଲେ ଯେ ପାଇଲଟ୍ ଭାବରେ ବିଜୁ ବାବୁଙ୍କ ଗୌରବମୟ ଯାତ୍ରା ପାଇଁ ଦିଲ୍ଲୀ ଫ୍ଲାଇଙ୍ଗ କ୍ଲବ୍‌ର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏଥିପାଇଁ ସାରା ଓଡିଶା ଓ ଭାରତବାସୀ ଏହି କ୍ଲବ୍‌ର ଭୂମିକାକୁ ସବୁ ସମୟରେ ମନେ ରଖିବେ । ଜଣେ ଦକ୍ଷ ପାଇଲଟ୍ ଭାବରେ ବିଜୁବାବୁଙ୍କ ସ୍ମୃତିକୁ ପୁନର୍ଜୀବିତ କରିଥିବାରୁ ମୁଖ୍ୟମନ୍ତ୍ରୀ କ୍ଲବ୍‌ର ସଭାପତି ଡଃ. ବି.ବି.ଏଲ ମଧୁକରଙ୍କୁ ଧନ୍ୟବାଦ ଦେଇଥିଲେ ।

ମୁଖ୍ୟମନ୍ତ୍ରୀ କହିଥିଲେ ଯେ ବିଜୁ ବାବୁ ଆମ ପାଇଁ ସବୁବେଳେ ପ୍ରେରଣାର ଉତ୍ସ ହୋଇ ରହିଛନ୍ତି ଓ ରହିବେ । ସେ ଆମକୁ ଯେକୌଣସି ପରିସ୍ଥିତି ହେଉ ପଛେ, ଗରିବ ଓ ଦୁର୍ବଳ ଲୋକଙ୍କୁ ସହାୟତା କରିବା ପାଇଁ ଆଗେଇ ଆସିବାକୁ ପ୍ରେରଣା ଦେଉଥିଲେ । ତାଙ୍କ ସ୍ୱପ୍ନକୁ ପୂରଣ କରିବା ପାଇଁ ଏବଂ କଳିଙ୍ଗର ଗୌରବକୁ ପୁନର୍ଜୀବିତ କରିବା ପାଇଁ ଉଦ୍ୟମ ଜାରି ରହିବ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ ।

ଏହି କାର୍ଯ୍ୟକ୍ରମରେ ରାଜ୍ୟସଭା ସଦସ୍ୟ ଡଃ ସସ୍ମିତ ପାତ୍ର ମଧ୍ୟ ଯୋଗ ଦେଇ ବିଜୁ ବାବୁଙ୍କ ସ୍ମୃତି ଚାରଣ କରିଥିଲେ । ଦିଲ୍ଲୀ ଫ୍ଲାଇଙ୍ଗ କ୍ଲବ୍‌ର ସଭାପତି ଡଃ ବି.ବି.ଏଲ ମଧୁକର ଏବଂ ସଂପାଦକ ଶ୍ରୀ ଅମିତ ଶର୍ମା ବିମାନ ଚାଳନା କ୍ଷେତ୍ରରେ ବିଜୁ ବାବୁଙ୍କ ଅବଦାନକୁ ସ୍ମରଣ କରିଥିଲେ ।

## ରାଜ୍ୟ ସ୍ତରୀୟ ବିଶ୍ୱ ମହିଳା ଦିବସ ପାଳିତ

# ‘ମିଶନ ଶକ୍ତି ଏକ କୋଟି ମା’ଙ୍କର ନିର୍ଣ୍ଣାୟକ ଆନ୍ଦୋଳନ ହେବାକୁ ଯାଉଛି ’

– ମୁଖ୍ୟମନ୍ତ୍ରୀ



**ଯେଉଁ ଦେଶରେ ମା’ ଆଗୁଆ ସେ ଦେଶ ଉନ୍ନତ**

୨୦୦୧ ମାର୍ଚ୍ଚ ୮ ତାରିଖରେ ଲାଗିଥିବା ଗୋଟିଏ ଚାରା ଆଜି ଏକ ବିରାଟ ଗଛରେ ପରିଣତ ହୋଇଛି । ୮୦ ଲକ୍ଷ ମା’ମାନଙ୍କ ପାଇଁ ଆଶାର ବୃକ୍ଷ ହୋଇଯାଇଛି । ଏହି ଗଛର ପ୍ରତିଟି ପତ୍ରରେ ରହିଛି ଗୋଟିଏ ଗୋଟିଏ ସଫଳ କାହାଣୀ । ସେହି କାହାଣୀ ହେଉଛି ଆମର ମିଶନ ଶକ୍ତି । ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଭିଡିଓ କନଫରେନ୍ସିଂ ଜରିଆରେ ରାଜ୍ୟ ସ୍ତରୀୟ ବିଶ୍ୱ ମହିଳା ଦିବସ ପାଳନ ଅବସରରେ ଏହା କହିଛନ୍ତି ।



ମିଶନ ଶକ୍ତିର ଏ ସଫଳତା ଅଧିକରୁ ଅଧିକ ମା'ମାନଙ୍କୁ ପ୍ରେରଣା ଦେବ ଏବଂ ମିଶନ ଶକ୍ତି ଖୁବ୍ ଶୀଘ୍ର ଏକ କୋଟି ମହିଳାଙ୍କର ଏକ ବିରାଟ ଆନ୍ଦୋଳନରେ ପରିଣତ ହେବ ବୋଲି ମୁଖ୍ୟମନ୍ତ୍ରୀ ଦୃଢୋକ୍ତି ପ୍ରକାଶ କରିଥିଲେ । ଓଡିଶାର ଘରେ ଘରେ ସଶକ୍ତ ଓଡିଶାର ବାର୍ତ୍ତା ଦେବ । ମିଶନ ଶକ୍ତି ସ୍ୱତନ୍ତ୍ର ବିଭାଗ ନିଷ୍ପତ୍ତି ବିଷୟ ପ୍ରକାଶ କରି ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଏହାକୁ ମା'ମାନେ ଖୁବ୍ ସ୍ୱାଗତ କରିଛନ୍ତି ।

ମୁଖ୍ୟମନ୍ତ୍ରୀ କହିଥିଲେ ଯେ ମିଶନ ଶକ୍ତି ଆଜି ଏକ ବଡ ସାମାଜିକ ଓ ଅର୍ଥନୈତିକ ଆନ୍ଦୋଳନରେ ପରିଣତ ହୋଇଛି । ଗାଁ ଅର୍ଥନୀତିକୁ ଚଳ ଚଞ୍ଚଳ କରିପାରିଛି । ମିଶନ ଶକ୍ତି କେବଳ ଦେଶରେ ନୁହେଁ ସାରା ବିଶ୍ୱରେ ସବୁଠାରୁ ବଡ ଆନ୍ଦୋଳନରେ ପରିଣତ ହେବ ବୋଲି ମୁଖ୍ୟମନ୍ତ୍ରୀ ଆଶା ପ୍ରକାଶ କରିଥିଲେ ।

ମୁଖ୍ୟମନ୍ତ୍ରୀ କହିଥିଲେ ଯେ କୋଭିଡର ଆହ୍ୱାନମୂଳକ ସମୟରେ ମା'ମାନେ ହିଁ ସରକାରଙ୍କ ମୁଖ୍ୟ ସହଯୋଗୀ ହୋଇ କୋଭିଡ ମୁକାବିଲାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ମିଶନ ଶକ୍ତିର ମା'ମାନଙ୍କଠାରୁ ଆରମ୍ଭ କରି ଅଙ୍ଗନବାଡି, ଆଶା କର୍ମୀ, ସ୍ୱାସ୍ଥ୍ୟ କର୍ମୀ ଆଦି ସବୁ ମା'ମାନେ ସବୁଠାରୁ ବେଶି ଦାୟିତ୍ୱର ସହ କାମ କରିଛନ୍ତି । ପରିବାରକୁ ସଚେତନ ମଧ୍ୟ କରିଛନ୍ତି । ସେଥିପାଇଁ ମୁଖ୍ୟମନ୍ତ୍ରୀ ରାଜ୍ୟବାସୀଙ୍କ ପକ୍ଷରୁ ସେମାନଙ୍କୁ ଧନ୍ୟବାଦ ଦେଇଥିଲେ ।

ଶ୍ରୀ ପଟ୍ଟନାୟକ କହିଥିଲେ ଯେ ରାଜ୍ୟ ସରକାର ସବୁବେଳେ ମିଶନ ଶକ୍ତିର ମା'ମାନଙ୍କ ପାଇଁ ନିଷ୍ଠାର ସହ କାମ କରୁଛନ୍ତି । ସେମାନଙ୍କ ପାଇଁ ୫ ହଜାର କୋଟି ଟଙ୍କାର କାମ ଘୋଷଣା କରାଯାଇଛି ଏବଂ ସେମାନେ ଦକ୍ଷତାର ସହ କାମ କରି ସରକାରଙ୍କ ବିଶ୍ୱାସକୁ ବୃଦ୍ଧି କରିଛନ୍ତି ।

ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଯେଉଁ ଦେଶରେ ମା'ମାନେ ଯେତେ ଆଗୁଆ ସେ ଦେଶ ସେତେ ଉନ୍ନତ । ମା'ମାନଙ୍କ ସମୃଦ୍ଧି ଓ ଅଧିକାର ପାଇଁ ତାଙ୍କର ଉଦ୍ୟମ ଜାରି ରହିବ ବୋଲି ସେ କହିଥିଲେ ।

ଏହି କାର୍ଯ୍ୟକ୍ରମରେ ସଚିବାଳୟରେ ଉପସ୍ଥିତ ଥିବା ମହିଳା ଓ ଶିଶୁ ବିକାଶ ମନ୍ତ୍ରୀ ଶ୍ରୀମତୀ ଟୁକୁନୀ ସାହୁ କହିଲେ ଯେ ମହିଳାମାନଙ୍କ ଅନ୍ତର୍ନିହିତ ଶକ୍ତି ଓ ଦକ୍ଷତାକୁ ଉପଯୋଗ କରି ବିକାଶକୁ ଆଗେଇ ନେବା ପାଇଁ ମୁଖ୍ୟମନ୍ତ୍ରୀଙ୍କ ଦୂରଦୃଷ୍ଟି ଯୋଗୁଁ ଆଜି ଓଡିଶା ମହିଳା ବିକାଶ କ୍ଷେତ୍ରରେ ନୂଆ ଇତିହାସ ସୃଷ୍ଟି କରିପାରିଛି । ମିଶନ ଶକ୍ତି ମା'ମାନଙ୍କୁ ନୂଆ ପରିଚୟ ଦେଇଛି ବୋଲି ପ୍ରକାଶ କରି ଏଥିପାଇଁ ସେ ମୁଖ୍ୟମନ୍ତ୍ରୀଙ୍କୁ ଧନ୍ୟବାଦ ଦେଇଥିଲେ ।

କାର୍ଯ୍ୟକ୍ରମ ପ୍ରାରମ୍ଭରେ ମହିଳା ଓ ଶିଶୁ ବିକାଶ ବିଭାଗ ପ୍ରମୁଖ ସଚିବ ଶ୍ରୀମତୀ ଅନୁ ଗର୍ଗ ସ୍ୱାଗତ ଭାଷଣ ଦେଇ କହିଥିଲେ ରାଜ୍ୟ ସରକାର ମହିଳାମାନଙ୍କୁ ହିତାଧିକାରୀ ନୁହେଁ ବରଂ ବିକାଶର ସହ ଭାଗୀଦାର ବୋଲି ମନେ କରନ୍ତି । ମହିଳାମାନଙ୍କ ବିକାଶ ପାଇଁ ରାଜ୍ୟ ସରକାର କେବଳ ଗୋଟିଏ ଦିନ ନୁହେଁ ବରଂ ପୂରା ୩୬୫ ଦିନ ସମର୍ପିତ ହୋଇ କାମ କରୁଛନ୍ତି ବୋଲି ସେ କହିଥିଲେ ।

ମିଶନ ଶକ୍ତିର କମିଶନର ତଥା ନିର୍ଦ୍ଦେଶିକା ଶ୍ରୀମତୀ ସୁଜାତା କାର୍ତ୍ତିକେୟନ ଧନ୍ୟବାଦ ଅର୍ପଣ କରି କହିଥିଲେ ଯେ ୨୦୦୧ରେ ମିଶନ ଶକ୍ତି ଏକ ଯୋଜନା ହୋଇ ଆରମ୍ଭ ହୋଇଥିଲା, ଆଜି ଏହା ଏକ ସ୍ୱତନ୍ତ୍ର ବିଭାଗ ହୋଇଛି । ମୁଖ୍ୟମନ୍ତ୍ରୀ ମିଶନ ଶକ୍ତିର ମା'ମାନଙ୍କ ପାଇଁ ଯେଉଁ ୫ ହଜାର କୋଟି ଟଙ୍କା ଘୋଷଣା କରିଥିଲେ, ଆଜି ମା'ମାନେ ୨୫୦୦ କୋଟି ଟଙ୍କାରୁ ଅଧିକ ଟଙ୍କାର ବ୍ୟବସାୟ ଆରମ୍ଭ କରିସାରିଛନ୍ତି । ମା'ମାନଙ୍କ ପାଇଁ ୩୨୦୦ କୋଟି ଟଙ୍କାର ଋଣ ଲକ୍ଷ୍ୟ ଥିଲାବେଳେ ବର୍ତ୍ତମାନ ସୁଧା ୪୦୦୦ କୋଟି ଟଙ୍କାରୁ ଅଧିକ ଋଣ ମିଳିପାରିଛି ।

ଆଜିର କାର୍ଯ୍ୟକ୍ରମରେ ମହିଳା ଓ ଶିଶୁ ବିକାଶ ବିଭାଗ ଓ ମିଶନ ଶକ୍ତିର କାର୍ଯ୍ୟକ୍ରମ ସମ୍ପର୍କରେ ଦୁଇଟି ଭିଡିଓ ଚିତ୍ର ପ୍ରଦର୍ଶିତ ହୋଇଥିଲା । ଝାରସୁଗୁଡା, ଯାଜପୁର ଓ ଭୁବନେଶ୍ୱରରେ ତିନୋଟି କର୍ମଜୀବୀ ମହିଳା ହଷ୍ଟେଲ ଉଦ୍‌ଘାଟିତ ହୋଇଥିଲା । ହଷ୍ଟେଲ ପରିଚାଳନା, ସ୍ୱଧାର ଓ ଉଜ୍ଜ୍ୱଳ ଆଦି ଯୋଜନା ପାଇଁ ନୂଆ ପୋର୍ଟାଲ, ମିଶନ ଶକ୍ତି ୱେବ୍‌ସାଇଟ, ମୋବାଇଲ ଆପ୍ ଓ ବ୍ୟାଙ୍କ୍‌ମାନଙ୍କ ଋଣ ପ୍ରଦାନ ସମ୍ପର୍କରେ ଏକ ସ୍ୱତନ୍ତ୍ର ପୋର୍ଟାଲ ଉନ୍ମୋଚିତ ହୋଇଥିଲା । ଡାହାଣୀ କୁପ୍ରଥାର ବିଲୋପ ପାଇଁ IEC Package ମଧ୍ୟ ଉନ୍ମୋଚିତ ହୋଇଥିଲା ।

ଏହି ଅବସରରେ ଶ୍ରେଷ୍ଠ ପ୍ରଦର୍ଶନକାରୀ ଜିଲ୍ଲା, ସ୍ୱୟଂ ସହାୟକ ଗୋଷ୍ଠୀ, ଅଧିକାରୀ ଓ ବ୍ୟାଙ୍କମାନଙ୍କୁ ପୁରସ୍କାର ପ୍ରଦାନ କରଯାଇଥିଲା ।



## ମୁଖ୍ୟମନ୍ତ୍ରୀଙ୍କ ନୂଆପଡ଼ା ଗସ୍ତ

# ବିଜୁବାବୁଙ୍କ ସେଦିନର ସାନ ପୁଅ ନୂଆପଡ଼ା ଆଜି ସଶକ୍ତ ହୋଇଛି

– ମୁଖ୍ୟମନ୍ତ୍ରୀ



ନୂଆପଡାର ତିନୋଟି ମୁଖ୍ୟ ସମସ୍ୟା ଥିଲା ପିଇବା ପାଣି, ଜଳ ସେଚନ ଓ ଯୋଗାଯୋଗ । Fluoride ଯୁକ୍ତ ପାଣି ଯୋଗୁଁ ଲୋକମାନେ ନାନା ପ୍ରକାର ରୋଗର ଶିକାର ହେଉଥିଲେ । ଜଳ ସେଚନ ଅଭାବରୁ ଚାଷବାସରେ ଅସୁବିଧା ହେଉଥିଲା ଏବଂ ଯୋଗାଯୋଗ ବ୍ୟବସ୍ଥା ଉନ୍ନତ ନ ଥିବାରୁ ଆର୍ଥିକ ଉନ୍ନତି ସାଧିତ ହୋଇ ପାରୁନଥିଲା । ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ନୂଆପଡାର ଏହି ୩ ଗୋଟି ସମସ୍ୟାର ସମାଧାନ ହୋଇ ପାରିଛି ଏବଂ ନୂଆପଡା ଓଡିଶାର ବିକାଶ ଇତିହାସରେ ନିଜର ସ୍ଥାନ ସୁଦୃଢ କରିପାରିଛି । ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଦିନିକିଆ ନୂଆପଡା ଗସ୍ତରେ ଯାଇ ୨୩୩୭ କୋଟି ୧୫ ଲକ୍ଷ ଟଙ୍କାର ପ୍ରକଳ୍ପର ଲୋକାର୍ପଣ କରିଛନ୍ତି । ଏହି ମଧ୍ୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି Lower Indra ଜଳ ସେଚନ ପ୍ରକଳ୍ପ ଏବଂ ବିଭିନ୍ନ ପିଇବା ପାଣି ପ୍ରକଳ୍ପ ।

- ୨୩୩୭ କୋଟି ଟଙ୍କାର ପ୍ରକଳ୍ପ ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଉଦ୍‌ଘାଟିତ
- Lower Indra ଜଳ ସେଚନ ପ୍ରକଳ୍ପ ଉଦ୍‌ଘାଟିତ
- ଏକ ଲକ୍ଷ ପରିବାର ପାଖରେ ପହଞ୍ଚିଲା ବିଶୁଦ୍ଧ ପାଇପ ପାଣି
- ବିକାଶର ନୂଆ ଇତିହାସ ଲେଖିଛି ନୂଆପଡ଼ା
- ୨୦୨୨ ସୁଦ୍ଧା ନୂଆପଡ଼ାର ସବୁ ପରିବାରକୁ ବିଶୁଦ୍ଧ ପାଇପ ପାଣି– ମୁଖ୍ୟମନ୍ତ୍ରୀ

ଏହି ଅବସରରେ ଖଡିଆଳଠାରେ ଏକ ବିରାଟ ଜନସଭାକୁ ସମ୍ବୋଧିତ କରି ମୁଖ୍ୟମନ୍ତ୍ରୀ କହିଥିଲେ ନୂଆପଡାବାସୀ Fluoride ପାଣି ଯୋଗୁଁ ବହୁତ ସମସ୍ୟାର ସମ୍ମୁଖୀନ ହେଉଥିଲେ । ମା'ମାନଙ୍କୁ ଭଲ ପିଇବା ପାଣି ପାଇଁ ମାଇଲ ମାଇଲ ବାଟ ଯିବାକୁ ପଡୁଥିଲା । ଆଜି ସେ ସମସ୍ୟା ନାହିଁ । ଆଜି ନୂଆପଡାର ଏକ ଲକ୍ଷ ପରିବାର ପାଖରେ ପାଇପ ପାଣି ପହଞ୍ଚି ପାରିଛି ବୋଲି ବର୍ଣ୍ଣନା କରି ମୁଖ୍ୟମନ୍ତ୍ରୀ ଆନନ୍ଦ ପ୍ରକାଶ କରିଥିଲେ ।

ମୁଖ୍ୟମନ୍ତ୍ରୀ କହିଥିଲେ ପାଣିରୁ Fluoride ଦୂର କରିବା ପାଇଁ ୧୧୦୦ରୁ ଅଧିକ Fluoride Removal Plant Install କରାଯାଇଛି । ୯୦୦ରୁ ଅଧିକ ଗାଁ କୁ ସଂପୂର୍ଣ୍ଣ ଭାବରେ Fluoride ସମସ୍ୟାରୁ ମୁକ୍ତ କରାଯାଇଛି । ୨୦୨୨ ସୁଦ୍ଧା ନୂଆପଡାର ସବୁ ପରିବାରକୁ ଶତ ପ୍ରତିଶତ ପାଇପ ପାଣି ଯୋଗାଇ ଦିଆଯିବ ।



ଏଥିପାଇଁ ୭୦୦ କୋଟି ଟଙ୍କା ୨୦୫ଟି Pipe Water Supply Project ଏବଂ ଗୋଟିଏ Mega Pipe Water Supply Project କାମ ଚାଲିଛି ।

ଉଦ୍‌ଘାଟିତ Lower Indra Projectକୁ ରାଜ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରକଳ୍ପ ଭାବରେ ବର୍ଣ୍ଣନା କରି ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଚିର ମରୁଡି ପ୍ରପୀଡିତ ଅଞ୍ଚଳ ନୂଆପଡାରେ ଆଜି ନୂଆ ସବୁଜିମା ସୃଷ୍ଟି ହୋଇଛି । ନୂଆପଡା ଆଜି ବିକାଶର ନୂଆ ଇତିହାସ ଲେଖିଛି । ଜିଲ୍ଲାରେ ଗତ ଦଶ ବର୍ଷ ମଧ୍ୟରେ ଜଳସେଚନ ସୁବିଧା ୫୪ ପ୍ରତିଶତ ବଢିଛି । ଜିଲ୍ଲାର ଦେଢ ଲକ୍ଷ ଏକର ଜମିକୁ ଆଜି ପାଣି ସୁବିଧା ମିଳିଛି । ନୂଆପଡାର ଚାଷୀ ଆଜି ଧାନ ଉତ୍ପାଦନ ସହିତ

ମକା ଚାଷ, କପା ଚାଷ କରିପାରୁଛି । ଆଜିର ଏ ପ୍ରକଳ୍ପ ଚାଷୀମାନଙ୍କ ଭିତରେ ଆତ୍ମପ୍ରତ୍ୟୟ ସୃଷ୍ଟି କରିବ । ଏ ପ୍ରକଳ୍ପ ଦ୍ୱାରା ନୂଆପଡାର କୋମନା, ଖଡିଆଳ ଓ ବଲାଙ୍ଗୀରର ବଙ୍ଗୋମୁଣ୍ଡା, ମୁରିବାହାଲ ଓ ଟିଟିଲାଗଡ ବ୍ଲକ୍‌ର ୨୦୦ଟି ଗାଁର ୧,୮୦,୦୦୦ ଲୋକ ଉପକାର ପାଇବେ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ । ଏହି ପ୍ରକଳ୍ପ ପାଇଁ ଜମି ଦେଇଥିବା ଲୋକମାନଙ୍କୁ ସେମାନଙ୍କ ତ୍ୟାଗ ପାଇଁ ମୁଖ୍ୟମନ୍ତ୍ରୀ କୃତଜ୍ଞତା ଜଣାଇଥିଲେ ।

ନୂଆପଡାରେ ଚାଲିଥିବା ୨୨୦ କୋଟି ଟଙ୍କାର Mega Lift Irrigation Project ଏ ବର୍ଷ ଡିସେମ୍ବର ସୁଦ୍ଧା ଶେଷ ହେବ ବୋଲି ମୁଖ୍ୟମନ୍ତ୍ରୀ ସୂଚନା ଦେଇଥିଲେ । ଏହାଦ୍ୱାରା କୋମନା, ନୂଆପଡା, ସିନାପାଲୀ ଓ ବୋଡେନ ଅଞ୍ଚଳର ୧୮୦୦୦ ଏକରରୁ ଅଧିକ ଜମିକୁ ପାଣି ମିଳିପାରିବ ବୋଲି ଶ୍ରୀ ପଟ୍ଟନାୟକ କହିଥିଲେ । Lower Indra Project Underground Pipeline Technologyରେ ନିର୍ମିତ ହୋଇଥିବାରୁ ଏହି Projectରୁ ଆଉ ୭୫୦୦ ଏକର ଜମିକୁ ପାଣି ଯୋଗାଇବା ପାଇଁ କାମ ଆରମ୍ଭ କରାଯିବ ବୋଲି ମୁଖ୍ୟମନ୍ତ୍ରୀ ଘୋଷଣା କରିଥିଲେ ।

Lower Indra Siteରେ ୩ କୋଟି ଟଙ୍କା ବ୍ୟୟରେ ଏକ Science Park ଓ Museum କରାଯିବ ବୋଲି ମୁଖ୍ୟମନ୍ତ୍ରୀ ଘୋଷଣା କରିଥିଲେ । ସେହିପରି ନୂଆପଡା ଓ ଖଡିଆଳ NACରେ ଦୁଇଟି Indoor Stadium ସହିତ ଖଡିଆଳ Autonomous Collegeରେ କ୍ରୀଡା ଭିତ୍ତିଭୂମିର ବିକାଶ କରାଯିବ ।

ନୂଆପଡା ଜିଲ୍ଲାରେ ବିଭିନ୍ନ କ୍ଷେତ୍ରରେ ଗତ କିଛି ବର୍ଷ ମଧ୍ୟରେ ବିକାଶ ସମ୍ପର୍କରେ ସୂଚନା ଦେଇ ମୁଖ୍ୟମନ୍ତ୍ରୀ କହିଥିଲେ ଯେ ନୂଆପଡାରେ ଶିଶୁ ମୃତ୍ୟୁ ହାର କମିଛି । ମା'ମାନଙ୍କ ଜୀବନ ବଞ୍ଚାଇବାରେ ମଧ୍ୟ ନୂଆପଡା ବହୁତ ଭଲ କାମ କରିଛି । ନୂଆପଡା ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ ଭିତ୍ତିଭୂମି ରାଜ୍ୟର ବଡ ବଡ ସହରର Hospital ସହ ସମକକ୍ଷ ହୋଇପଡ଼ିଛି । ବିଜୁ ଏକ୍ସପ୍ରେସ ୱେରେ ସବୁଠାରୁ ଅଧିକ ଲାଭ ପାଇଛି ନୂଆପଡା । ୬୮୦ କୋଟି ଟଙ୍କା ଖର୍ଚ୍ଚରେ ୧୩୨ କି.ମି ରାସ୍ତା କେବଳ ନୂଆପଡାରେ ହିଁ ହୋଇଛି ବୋଲି ମୁଖ୍ୟମନ୍ତ୍ରୀ ସୂଚନା ଦେଇ ଜିଲ୍ଲାର ବିକାଶରେ ସମସ୍ତଙ୍କ ସହଯୋଗ କାମନା କରିଥିଲେ ।

ନୂଆପଡା ସହ ବିଜୁବାବୁଙ୍କ ସମ୍ପର୍କ ବିଷୟରେ ଉଲ୍ଲେଖ କରି ମୁଖ୍ୟମନ୍ତ୍ରୀ କହିଥିଲେ ଯେ ନୂଆପଡାକୁ ବିଜୁବାବୁ ଏକ ସ୍ୱତନ୍ତ୍ର ଜିଲ୍ଲା ଘୋଷଣା କଲେ । ସେତେବେଳେ କିଛି ଲୋକ ତାଙ୍କୁ ପ୍ରଶ୍ନ କରିଥିଲେ ଯେ ଆପଣ ଏତେ ଛୋଟ ଅଞ୍ଚଳକୁ କାହିଁକି ଜିଲ୍ଲା କଲେ ? ସେତେବେଳେ ବିଜୁବାବୁ କହିଥିଲେ, ନୂଆପଡା ଓଡିଶା ମା'ର ସବୁଠାରୁ ସାନ ପିଲା । ସେ ପୁଣି ଦୂରରେ ଅଛି । ସବୁ ବାପା ମା' ଯେପରି ଦୂରରେ ଥିବା ପିଲାକୁ ଅଧିକ ଭଲ ପାଆନ୍ତି, ମୁଁ ମଧ୍ୟ ସେପରି ନୂଆପଡ଼ାକୁ ସ୍ୱତନ୍ତ୍ର ଧ୍ୟାନ ଦେଉଛି । ଆଜି ନୂଆପଡାର ରୂପାନ୍ତରକୁ ଆପଣମାନେ ଦେଖି ପାରୁଛନ୍ତି ଓ ଅନୁଭବ କରିପାରୁଛନ୍ତି । ବିଜୁବାବୁଙ୍କର ସେଦିନର ସାନ ପିଲା ନୂଆପଡା ଆଜି ବଡ ହୋଇଛି । ସଶକ୍ତ ହୋଇଛି । ସବୁଜ ହୋଇଛି । ଓଡିଶାର ବିକାଶ ଯାତ୍ରାରେ ନିଜ ପାଇଁ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି । ଏଥିପାଇଁ ମୁଁ ବହୁତ ଖୁସି । ନୂଆପଡାରେ ବିକାଶର ଏ ଧାରା ଆହୁରି ଆଗକୁ ବଢିବ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ ।

ପ୍ରାରମ୍ଭରେ ମୁଖ୍ୟମନ୍ତ୍ରୀ ନୂଆପଡା ଜିଲ୍ଲାର ଭେଲା ଗାଁର ସ୍ୱାଧୀନତା ସଂଗ୍ରାମୀମାନଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ ଏବଂ ସ୍ୱାଧୀନତାର ୭୫ ବର୍ଷ ପୂର୍ତ୍ତି ଅବସରରେ ଭେଲାର ସଂଗ୍ରାମୀମାନଙ୍କୁ ସମ୍ମାନ ଜଣାଇ ସେଠାରେ ଏକ ସ୍ମାରକ ନିର୍ମାଣ କରାଯିବ ବୋଲି ମୁଖ୍ୟମନ୍ତ୍ରୀ ଘୋଷଣା କରିଥିଲେ ।

ଏହି କାର୍ଯ୍ୟକ୍ରମରେ ଅନ୍ୟମାନଙ୍କ ମଧ୍ୟରେ ମନ୍ତ୍ରୀ ଦିବ୍ୟଶଙ୍କର ମିଶ୍ର ଓ ନୂଆପଡା ଜିଲ୍ଲାର ବିଧାୟକମାନେ, ମୁଖ୍ୟ ଶାସନ ସଚିବ, ଜଳସମ୍ପଦ ବିଭାଗ ପ୍ରମୁଖ ସଚିବ, ମୁଖ୍ୟମନ୍ତ୍ରୀଙ୍କ ୫ 'ଟି' ସଚିବ ଯୋଗ ଦେଇଥିଲେ ।



## କୃଷି ଓଡ଼ିଶା – ୨୦୨୧ ଅବସରରେ ମୁଖ୍ୟମନ୍ତ୍ରୀଙ୍କ ଅଭିଭାଷଣ

# ‘କୃଷି ଓଡ଼ିଶା’ ଆମର ସଫଳ ଚାଷୀମାନଙ୍କର ଏକ ସୁନ୍ଦର ସମାବେଶ

– ମୁଖ୍ୟମନ୍ତ୍ରୀ

କୃଷି ଓଡ଼ିଶା –୨୦୨୧ ଅବସରରେ ଆମର ଚାଷୀ ଭାଇ ଓ ଭଉଣୀମାନଙ୍କୁ ମୋର ଶୁଭେଚ୍ଛା ଜଣାଉଛି ।

କୃଷି ଓଡିଶା ଆମର ସଫଳ ଚାଷୀମାନଙ୍କର ଏକ ସୁନ୍ଦର ସମାବେଶ । ଖୁସିର କଥା, ପ୍ରତି ବର୍ଷ ଏଥିରେ ଅଧିକରୁ ଅଧିକ ଚାଷୀ ଭାଗ ନେଉଛନ୍ତି । ଆମର ଚାଷୀ ଭାଇ ଓ ଭଉଣୀମାନଙ୍କୁ ସେମାନଙ୍କର ଦକ୍ଷତା ଓ ସଫଳତାକୁ Celebrate କରିବା ପାଇଁ ‘କୃଷି ଓଡିଶା’ ସୁଯୋଗ ସୃଷ୍ଟି କରିଛି । ଚାଷୀ ଭାଇଙ୍କର Best Practice ବିଷୟରେ ଜଣାଇବାକୁ ଅନ୍ୟମାନଙ୍କ ପାଇଁ ସୁଯୋଗ ସୃଷ୍ଟି କରିଛି ।



ଖୁସିର କଥା, ଆମର ଚାଷୀଭାଇଙ୍କ ସଫଳ କାହାଣୀ ଆଜିକାଲି ଖବର କାଗଜ ଓ Mediaରେ ବହୁତ ସୁନ୍ଦର ଭାବରେ ପ୍ରକାଶ ପାଉଛି । କେତେକ ସ୍ଥାନରେ ଲୋକମାନେ ଚାକିରି ଛାଡି ଚାଷକୁ ପସନ୍ଦ କରୁଥିବା ଖବର ମଧ୍ୟ ଆସୁଛି । ବିଶେଷ କରି ଉଦ୍ୟାନ କୃଷି ଫସଲ ଅଧିକ ଲାଭଜନକ ହୋଇପାରୁଛି ।

Millet Missionରେ ଆମ ରାଜ୍ୟ ସାରା ଦେଶର ଦୃଷ୍ଟି ଆକର୍ଷଣ କରିପାରିଛି । କଳାହାଣ୍ଡିର ଚାଷୀ ମାଛ ଚାଷରେ ସାରା ଦେଶରେ ପ୍ରଥମ ହୋଇଛି । ଆମର ଚାଷୀ ଭାଇ ଭଉଣୀଙ୍କର ସଫଳତା ପାଇଁ ମୁଁ ଗର୍ବିତ । ଓଡିଶାର ଚାଷୀ କାହାଠାରୁ କମ୍ ନୁହେଁ ।

ଆପଣ ଜାଣନ୍ତି କରୋନା ଦେଶର ଅର୍ଥନୀତିକୁ ବିଶେଷ ଭାବରେ ପ୍ରଭାବିତ କରିଛି କିନ୍ତୁ ଆମର କୃଷିକ୍ଷେତ୍ର ହିଁ ସଞ୍ଜିବନୀ ପରି ଆମ ଅର୍ଥନୀତିକୁ ଶକ୍ତି ଦେଇଛି । ଚାଷୀର ପରିଶ୍ରମ ଓ ତ୍ୟାଗକୁ ମୁଁ ସମ୍ମାନ ଜଣାଉଛି । ବର୍ତ୍ତମାନ ରାଜ୍ୟରେ କରୋନା ପାଇଁ ଟିକାକରଣ ଚାଲୁ ରହିଛି । ମୋର ଅନୁରୋଧ ଆପଣମାନେ ପାଳି ଅନୁଯାୟୀ ଟିକା ନିଶ୍ଚୟ ନିଅନ୍ତୁ ।

ଚାଷୀ ଯେପରି ତା'ର ଉତ୍ପାଦିତ ଜିନିଷର ଉଚିତ ମୂଲ୍ୟ ପାଇବ, ଠିକ୍ ସମୟରେ ସାର, ବିହନ, ଋଣ ସହାୟତା ପାଇବ, ତା' ଉପରେ ମୁଁ ସବୁବେଳେ Focus କରିଛି । ବର୍ତ୍ତମାନ ସୁଦ୍ଧା ଆମ ରାଜ୍ୟରେ ଚାଷୀମାନଙ୍କୁ ୨୦ ହଜାର କୋଟିରୁ ଅଧିକ ଟଙ୍କା ଋଣ ଆକାରରେ ଯୋଗାଇ ଦିଆଯାଇଛି । କାଳିଆ ଯୋଜନାରେ ଚାଷୀମାନଙ୍କୁ ନିକଟରେ ୧୨୭୨ କୋଟି ଟଙ୍କା ସହାୟତା ଦିଆଯାଇଛି । MSP ବୃଦ୍ଧି ପାଇଁ ଆମ ଲଢ଼େଇ ଜାରି ରହିଛି ଓ ରହିବ । ମୋର ଅନୁରୋଧ ଆପଣମାନେ ସରକାରଙ୍କର ବିଭିନ୍ନ ଯୋଜନାର ସୁଯୋଗ ନିଅନ୍ତୁ । ନୂଆ ନୂଆ ବୈଷୟିକ କୌଶଳର ପ୍ରୟୋଗ କରନ୍ତୁ । Crop Diversification ଉପରେ ଗୁରୁତ୍ୱ ଦିଅନ୍ତୁ ଓ ନିଜ ରୋଜଗାର ବଢ଼ାନ୍ତୁ ।

ମୁଁ ସବୁବେଳେ ଚାଷୀ ଭାଇଭଉଣୀମାନଙ୍କ ସହିତ ରହିଛି ଓ ସେମାନଙ୍କ ପାଇଁ କାମ କରୁଛି ଓ କରି ଚାଲିବି ।





## ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ବାର୍ତ୍ତା

# ଆମେ ସତର୍କ ରହିଲେ
# ଲକ୍‌ଡାଉନ୍ ଭଳି ସ୍ଥିତି ଉପୁଜିବ ନାହିଁ

**– ମୁଖ୍ୟମନ୍ତ୍ରୀ**

ପ୍ରିୟ ଭାଇ ଓ ଭଉଣୀମାନେ, ଆପଣମାନଙ୍କ ସହଯୋଗରେ ଓଡ଼ିଶା କରୋନା ନିୟନ୍ତ୍ରଣରେ ଆଜି ଭଲ ସ୍ଥିତିରେ ରହିଛି । ଏ ଦିଗରେ ଆମ ପଦକ୍ଷେପକୁ 'ହୁ' ମଧ୍ୟ ପ୍ରଶଂସା କରିଛି । ଏବେ ଆମର ଦୈନିକ ସଂକ୍ରମଣ ୧୦୦ ତଳେ ରହୁଛି । ଶୂନ୍ୟ ସଂକ୍ରମଣ ଆମର ଲକ୍ଷ୍ୟ । ମୁଁ ଆଗରୁ କହିଛି, ଏବେ ମଧ୍ୟ ପୁଣି ଥରେ କହୁଛି ରୋଗ କ୍ଷେତ୍ରରେ ଆତ୍ମସନ୍ତୋଷ ଠିକ୍ ନୁହେଁ କାରଣ ବିପଦ ଏବେ ବି ଟଳି ନାହିଁ ।

ମହାରାଷ୍ଟ୍ର, ପଞ୍ଜାବ, ଛତିଶଗଡ଼, ମଧ୍ୟପ୍ରଦେଶ ଆଦି କେତେକ ରାଜ୍ୟରେ ସ୍ଥିତି ଏବେ ବିଗିଡ଼ିବାରେ ଲାଗିଛି । ମହାରାଷ୍ଟ୍ରର କେତେକ ଅଞ୍ଚଳରେ ଲକ୍‌ଡାଉନ୍ ପୁଣି ଫେରିଛି । ଲକ୍‌ଡାଉନ୍ ସମୟର କଷ୍ଟ ଆମ ସ୍ମୃତିରେ ଏବେ ବି ତାଜା ଅଛି । ଆମର ଅର୍ଥନୀତି, ଆମର ସାମାଜିକ ଜୀବନ, ପିଲାମାନଙ୍କ ପାଠପଢ଼ା ସବୁ କ୍ଷେତ୍ରକୁ ଏହା ଗଭୀର ଭାବରେ ପ୍ରଭାବିତ କରିଛି । ଆପଣମାନଙ୍କ ତ୍ୟାଗ ଓ ସହଯୋଗ ଯୋଗୁଁ ବର୍ତ୍ତମାନ ସ୍ୱାଭାବିକ ଅବସ୍ଥା ଫେରିଛି । ଆମେ କେହି ଲକ୍‌ଡାଉନ୍‌କୁ ଫେରିବାକୁ ଚାହୁଁ ନାହୁଁ । ଆଉ ଲକ୍‌ଡାଉନ୍‌କୁ ନ ଫେରିବାର ଗୋଟିଏ ମାତ୍ର ଉପାୟ ହେଉଛି ସତର୍କତା । ଆମେ ସତର୍କ ରହିଲେ ଲକ୍‌ଡାଉନ୍ ଭଳି ସ୍ଥିତି ଉପୁଜିବ ନାହିଁ । ତେଣୁ ମୋର ଅନୁରୋଧ ଆମେ ସମସ୍ତେ ପୂର୍ବଭଳି କୋଭିଡ଼ ଗାଇଡ଼୍‌ଲାଇନ୍‌କୁ କଡ଼ାକଡ଼ି ଭାବରେ ପାଳନ କରିଚାଲିବା ।

ବାହାରକୁ ଗଲେ ମାସ୍କ ନିଶ୍ଚୟ ପିନ୍ଧିବା । ବେକରେ ଝୁଲାଇକରି ନୁହେଁ, ଠିକ୍ ଭାବରେ ପାଟି ଓ ନାକକୁ ଘୋଡାଇ ରଖି ପିନ୍ଧିବା । ଘରକୁ ଫେରିଲେ ସାବୁନରେ ଭଲକରି ହାତ ଧୋଇବା । ମୁହଁ, ନାକ ଓ ଆଖିରେ ବାରମ୍ବାର ହାତ ମାରିବା ନାହିଁ । ସମାଜିକ ଦୂରତ୍ୱ ରକ୍ଷାକରି ହାଟ ବଜାର ଆଦି ସ୍ଥାନକୁ ଯିବା ଏବଂ ଅନାବଶ୍ୟକ ଭାବରେ ବାହାରେ ବୁଲାବୁଲି କରିବା ନାହିଁ । ବର୍ତ୍ତମାନ କରୋନା ପାଇଁ ଟିକାକରଣ ଆମ ରାଜ୍ୟରେ ସଫଳ ଭାବରେ ଚାଲିଛି । ଏ ଦିଗରେ ମୁଁ ଆପଣମାନଙ୍କର ସହଯୋଗ କାମନା କରୁଛି ।

କରୋନା ବିରୁଦ୍ଧରେ ଆମର ଲଢ଼େଇରେ ଆମେ ଆମର ବହୁ ଯୋଦ୍ଧାଙ୍କୁ ହରାଇଛୁ । ସେମାନଙ୍କର ପରିବାର ଆଖିରୁ ଆଜି ମଧ୍ୟ ଲୁହ ଶୁଖି ନାହିଁ । ସେହି ଯୋଦ୍ଧାମାନଙ୍କର ବଳିଦାନକୁ ଆମେ କେବେ ବି ବ୍ୟର୍ଥ ଯିବାକୁ ଦେବା ନାହିଁ । ସତର୍କ ରହିବା ହିଁ ସହିଦ୍ କରୋନା ଯୋଦ୍ଧାଙ୍କ ପାଇଁ ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି । କରୋନା ନିୟମାବଳୀର ଅନୁପାଳନକୁ କଡ଼ାକଡ଼ି ଭାବରେ ତଦାରଖ କରିବା ପାଇଁ ମୁଁ ପ୍ରଶାସନ ଓ ପୋଲିସକୁ ନିର୍ଦ୍ଦେଶ ଦେଇଛି । ଆମେ ନିଜେ ସତର୍କ ରହିବା ହିଁ ସବୁଠାରୁ ଭଲ । ଆପଣମାନଙ୍କ ଉପରେ ମୋର ପୂର୍ଣ୍ଣ ଭରସା ରହିଛି । ଆପଣମାନେ ମୋର ଅନୁରୋଧ ରକ୍ଷା କରିବେ ଏବଂ ସତର୍କ ରହିବେ । ଆମେ ସମସ୍ତେ ମିଶି ଶୂନ୍ୟ ସଂକ୍ରମଣ ଲକ୍ଷ୍ୟ ହାସଲ କରିପାରିବା ।

**ବନ୍ଦେ ଉତ୍କଳ ଜନନୀ ।**

## ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ହୃଦୟରେ ଓଡ଼ିଶା ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିଲା

– ମୁଖ୍ୟମନ୍ତ୍ରୀ



ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ହୃଦୟରେ ଓଡିଶା ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିଲା । ମହାତ୍ମା ଓଡିଶାକୁ ୮ ଥର ପରିଦର୍ଶନ କରିଥିଲେ ଏବଂ ମୁଁ ବହୁତ ଖୁସି ଯେ ଏହି ପବିତ୍ର ଗୃହ ୧୯୨୧ ମାର୍ଚ୍ଚ ୨୩ ତାରିଖରେ ଗାନ୍ଧିଜୀଙ୍କର ପ୍ରଥମ ଓଡିଶା ଆଗମନର ଶତବାର୍ଷିକୀ ପାଳନ କରୁଛି । ଗାନ୍ଧିଜୀ ତାଙ୍କର ଓଡିଶା ପରିଦର୍ଶନ ସମୟରେ ରାଜ୍ୟର ବିଭିନ୍ନ ଅଞ୍ଚଳକୁ ବହୁବାର ଯାତ୍ରା କରିଥିଲେ ଏବଂ ବିଭିନ୍ନ ଶ୍ରେଣୀର ଲୋକମାନଙ୍କ ସହିତ ଭାବ ବିନିମୟ କରିଥିଲେ । ରାଜ୍ୟରେ ଅନେକ ପଦଯାତ୍ରା କରି ସେ ଓଡିଶାର ଲୋକଙ୍କର ନିକଟତର ହୋଇପାରିଥିଲେ । ତାଙ୍କର ପରିଦର୍ଶନ ସ୍ୱାଧୀନତା ସଂଗ୍ରାମକୁ ଶକ୍ତିଶାଳୀ କରିବା ସହିତ ରାଜ୍ୟର ବିଭିନ୍ନ ସାମାଜିକ ସମସ୍ୟା ସଂପର୍କରେ ବ୍ୟାପକ ସଚେତନତା ସୃଷ୍ଟି କରିଥିଲା ।

ସମଗ୍ର ବିଶ୍ୱକୁ ଭାରତର ଯାହା ଅବଦାନ ରହିଛି, ତନ୍ମଧ୍ୟରୁ ଗାନ୍ଧୀ ଦର୍ଶନ ଓ ଗାନ୍ଧୀଙ୍କ ବାର୍ତ୍ତା ଏକ ମହାନ୍ ଅବଦାନ ଭାବରେ ପରିଗଣିତ ।

ଆଜି ଆମେ କୌଣସି ସାଧାରଣ ପରିସ୍ଥିତି ମଧ୍ୟରେ ଗତି କରୁନାହୁଁ । ମହାମାରୀର ମୁକାବିଲା ଏହି ଆହ୍ୱାନର ସାମୂହିକ ରୂପକୁ ପ୍ରତିଫଳିତ କରୁଛି । ଏହା ମଧ୍ୟ ବିଶ୍ୱକୁ ମନେପକାଇ ଦେଇଛି ଯେ ଯଦି ଆମ ଜନସଂଖ୍ୟାର ଏକ ବଡ ଅଂଶ ଦାରିଦ୍ର୍ୟ ଓ ଶଂକାକୂଳ ଅବସ୍ଥାରେ ରୁହନ୍ତି, ତେବେ ଅଳ୍ପ କିଛି ଲୋକଙ୍କ ସଂପତ୍ତି ଓ ବିକାଶ ମୂଲ୍ୟହୀନ । ଆମେ ସମସ୍ତେ ଗୋଟିଏ ସୂତ୍ରରେ ଯୋଡି ହୋଇ ରହିଛେ ଏବଂ ମହାତ୍ମା ଗାନ୍ଧୀଙ୍କ ଜୀବନ ଓ ଦର୍ଶନ ଆମ ପାଇଁ ପୂର୍ବାପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇପଡିଛି । ବ୍ୟକ୍ତିଗତ ଲୋଭକୁ ଦୂର କରିବା ଉପରେ ଗାନ୍ଧିଜୀଙ୍କ ଗୁରୁତ୍ୱ ଏବଂ ସାଧାରଣ ଲୋକ ସଂପର୍କରେ ଚିନ୍ତା କରିବା ପାଇଁ ତାଙ୍କର ଆହ୍ୱାନ ଆମକୁ ବିଶ୍ୱର ଆବଶ୍ୟକତା ସଂପର୍କରେ ମନେ ପକାଇ ଦିଏ ।

## ମହାତ୍ମା ଗାନ୍ଧୀଙ୍କ ଓଡ଼ିଶା ଆଗମନର ଶତବାର୍ଷିକୀ ଅବସରରେ ବିଧାନସଭାରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଶ୍ରଦ୍ଧାଞ୍ଜଳି

ଆଜି ସମଗ୍ର ବିଶ୍ୱରେ ବିଭେଦ ଓ ଧ୍ରୁବୀକରଣ ବଢିଚାଲିଛି । ବହୁ ମତବାଦର ସୁରକ୍ଷା ପ୍ରତି ଗାନ୍ଧିଜୀଙ୍କର ନିଷ୍ଠା, ସହିଷ୍ଣୁତା ଓ ସଦ୍ଭାବର ବାର୍ତ୍ତା ଆଜି ମଧ୍ୟ ସେତିକି ଗୁରୁତ୍ୱପୂର୍ଣ୍ଣ ଯାହା ସେତେବେଳେ ଥିଲା । ମହାତ୍ମା ଗାନ୍ଧୀଙ୍କ ଅହିଂସ ପ୍ରତିବାଦ ଏପରି ଏକ ସ୍ଫୁଲିଙ୍ଗ, ଯାହା ସମଗ୍ର ବିଶ୍ୱରେ ଅନେକ ଶାନ୍ତିପୂର୍ଣ୍ଣ ଆନ୍ଦୋଳନକୁ ପ୍ରେରଣା ଦେଇଛି ।

ଗାନ୍ଧୀଙ୍କ ଏହି କାଳଜୟୀ ଦର୍ଶନକୁ ମନେ ପକାଇବା ପାଇଁ କଳିଙ୍ଗଠାରୁ ଆଉ ଭଲ ସ୍ଥାନ କଣ ଥାଇପାରେ, ଯେଉଁଠାରେ ଦୁଇ ସହସ୍ର ବର୍ଷ ପୂର୍ବେ ଅଶୋକ ଯୁଦ୍ଧ ତ୍ୟାଗ କରି ଶାନ୍ତିର ମାର୍ଗ ଗ୍ରହଣ କରିଥିଲେ । ଆଜି ଏହି ଅବସରରେ ମାର୍ଟିନ ଲୁଥର କିଙ୍ଗ (ଜୁନିଅର)ଙ୍କ କଥାକୁ ମନେ ପକାଉଛି । ସେ କହିଥିଲେ ଯଦି ମାନବତାକୁ ଅଗ୍ରସର ହେବାକୁ ଅଛି, ତା'ହେଲେ ଗାନ୍ଧୀଙ୍କୁ ଛାଡି ହେବ ନାହିଁ । ଆମେ କେବଳ ନିଜ ପାଇଁ ବିପଦ ସୃଷ୍ଟି କରି ହିଁ ଗାନ୍ଧିଜୀଙ୍କୁ ଉପେକ୍ଷା କରିପାରିବା । କିଙ୍ଗ୍‌ଙ୍କ ଏହି ମନ୍ତବ୍ୟ ଆଜିର ଦୁନିଆ ପାଇଁ ସଂପୂର୍ଣ୍ଣ ଭାବେ ପ୍ରାସଙ୍ଗିକ ।

ମହାତ୍ମା ଗାନ୍ଧୀ ଯେତେବେଳେ ୧୯୨୧ରେ ପ୍ରଥମ ଥର ପାଇଁ ଓଡିଶା ଆସିଥିଲେ, ସେତେବେଳେ ଓଡିଶା ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ନ ଥିଲା । ଲକ୍ଷ ଲକ୍ଷ ଓଡିଆ ଭାଷାଭାଷୀ ଲୋକଙ୍କ ଆକାଂକ୍ଷା ୧୯୩୬ରେ ବାସ୍ତବ ରୂପ ନେଇଥିଲା । ଗାନ୍ଧୀ ଯେତେବେଳେ ୧୯୪୬ ଜାନୁଆରୀରେ ଶେଷ ଥର ପାଇଁ ଓଡିଶା ଆସିଥିଲେ, ସେତେବେଳକୁ ଏକ ଭାଷାଭିତ୍ତିକ ରାଜ୍ୟ ଭାବେ ଓଡିଶା ୧୦ ବର୍ଷ ପୂରଣ କରିସାରିଥିଲା । ଓଡିଶା କିଭଳି ଭାବେ ନିଜର




ଭାଷାଗତ ଓ ଆଞ୍ଚଳିକ ଆକାଂକ୍ଷା ସହିତ ଜାତୀୟ ଲକ୍ଷ୍ୟର ସମନ୍ୱୟ ରକ୍ଷା କରିପାରିଥିଲା, ତାହା ଏକ ଚମତ୍କାର Case Study ଥିଲା ।

ଏହି ଅବସରରେ ମୋ ସରକାର ମହାତ୍ମା ଗାନ୍ଧୀଙ୍କ ନୀତି ଓ ଆଦର୍ଶ ପ୍ରତି ସଂପୂର୍ଣ୍ଣ ପ୍ରତିବଦ୍ଧତା ଘୋଷଣା କରୁଛି । ସଚିବାଳୟକୁ ଲୋକସେବା ଭବନ ଭାବେ ନାମିତ କରିବା କେବଳ ଏକ ପ୍ରତୀକ ନ ଥିଲା । ଗାନ୍ଧିଜୀଙ୍କ ଆଦର୍ଶରେ ଏହା ଆମ ବିଶ୍ୱାସର ପ୍ରତିଫଳନ । ଆଜି ଯେତେବେଳେ ଏହି ପବିତ୍ର ଗୃହ ମହାତ୍ମା ଗାନ୍ଧୀଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି, ଏହି ଅବସରରେ ଏକ କୃତଜ୍ଞତାର ଭାବନା ସହ ମୁଁ ଗାନ୍ଧିଜୀଙ୍କର ପ୍ରସିଦ୍ଧ ପରଶମଣି ସଂପର୍କରେ ଆପଣମାନଙ୍କୁ ମନେ ପକାଇ ଦେବାକୁ ଚାହୁଁଛି ।

"I will give you a talisman. Whenever you are in doubt, or when the self becomes too much with you, apply the following test. Recall the face of the poorest and the weakest man whom you may have seen and ask yourself, if the step you contemplate is going to be of any use to him. Will he gain anything by it ? Will it restore him to a control over his own life and destiny ? In other words, will it lead to Swaraj for the hungry and spiritually starving millions ?"



# ସରକାରୀ ହାଇସ୍କୁଲରେ ପଢୁଥିବା ଛାତ୍ରଛାତ୍ରୀଙ୍କ ନିମନ୍ତେ ମେଡ଼ିକାଲ ଓ ଇଞ୍ଜିନିୟରିଂ କଲେଜରେ ସଂରକ୍ଷଣ ପାଇଁ ବିଧାନସଭାରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ପ୍ରସ୍ତାବ ଉପସ୍ଥାପନ

ସର୍ବଭାରତୀୟ ସ୍ତରରେ ନିଟ୍ ଏବଂ JEE ପରି ସାଧାରଣ ପ୍ରବେଶିକା ପରୀକ୍ଷା ପ୍ରଚଳନ ହେବା ପରେ ରାଜ୍ୟର ସରକାରୀ ସ୍କୁଲ ଓ କଲେଜମାନଙ୍କରେ ପଢୁଥିବା ଛାତ୍ରଛାତ୍ରୀମାନଙ୍କର ସଂଖ୍ୟା ଉଲ୍ଲେଖନୀୟ ଭାବରେ ହ୍ରାସ ପାଉଥିବା ପରିଲକ୍ଷିତ ହେଉଛି ।

ଏହା ଛାତ୍ରଛାତ୍ରୀମାନଙ୍କର ମେଧାର ଅଭାବ ଯୋଗୁଁ ନୁହେଁ ବରଂ ଏହିସବୁ ପରୀକ୍ଷା ପାଇଁ ଆବଶ୍ୟକ ହେଉଥିବା କୋଚିଂ ସୁବିଧା ପାଇପାରି ନଥିବାରୁ ସରକାରୀ ସ୍କୁଲରେ ପଢୁଥିବା ଛାତ୍ରଛାତ୍ରୀମାନେ ଉପରୋକ୍ତ ପ୍ରବେଶିକା ପରୀକ୍ଷାରେ ଭଲ ପ୍ରଦର୍ଶନ କରିପାରୁ ନାହାନ୍ତି । ଏହିସବୁ ପ୍ରବେଶିକା ପରୀକ୍ଷାରେ ଭଲ ପ୍ରଦର୍ଶନ ପାଇଁ ଯେଉଁ ସ୍ୱତନ୍ତ୍ର ତାଲିମ ଆବଶ୍ୟକ, ତାହା କେବଳ ଏହି କୋଚିଂ ସେଣ୍ଟରମାନଙ୍କରେ ହିଁ ଉପଲବ୍ଧ ହୋଇଥାଏ । ଏହି କୋଚିଂ ସେଣ୍ଟରଗୁଡିକ ମୁଖ୍ୟତଃ ସହରଭିତ୍ତିକ ଏବଂ ଏଠାରେ ତାଲିମ ନେବା ପାଇଁ ବିପୁଳ ଅର୍ଥର ଆବଶ୍ୟକତା ରହିଛି । ସରକାରୀ ସ୍କୁଲ ଓ କଲେଜରେ ପଢୁଥିବା ପିଲାମାନଙ୍କ ପକ୍ଷରେ ଆର୍ଥିକ ଦୃଷ୍ଟିରୁ ଏହିସବୁ କୋଚିଂ କେନ୍ଦ୍ରରେ ତାଲିମ ନେବା ସମ୍ଭବ ହୋଇପାରୁନାହିଁ । ଏହାସହିତ କୋଚିଂ ସେଣ୍ଟରଗୁଡିକଠାରୁ ସେମାନେ ଦୂରରେ ରହୁଥିବାରୁ ସେମାନଙ୍କ ପକ୍ଷରେ ନିୟମିତ କୋଚିଂ ନେବା ସମ୍ଭବପର ହେଉନାହିଁ । ଏହା ଓଡିଶାର ସଂଖ୍ୟାଧିକ ଛାତ୍ରଛାତ୍ରୀମାନଙ୍କ ପାଇଁ ଏକ ଅସମାନ ପରିସ୍ଥିତି ସୃଷ୍ଟି କରୁଛି ।

ଏହି ପରିପ୍ରେକ୍ଷୀରେ ରାଜ୍ୟ କ୍ୟାବିନେଟ ଓଡିଶାର ସରକାରୀ ମେଡିକାଲ ଓ ଇଞ୍ଜିନିୟରିଂ କଲେଜମାନଙ୍କରେ ସରକାରୀ ସ୍କୁଲରେ ପଢୁଥିବା ପିଲାମାନଙ୍କ ପାଇଁ ଉପଯୁକ୍ତ ସଂଖ୍ୟକ ସ୍ଥାନ ସଂରକ୍ଷଣ ପାଇଁ ସଂକଳ୍ପ ଗ୍ରହଣ କରିଛି । ଏ ସଂପର୍କରେ ଆବଶ୍ୟକ ସୁପାରିସ୍ କରିବା ପାଇଁ ଓଡିଶା ହାଇକୋର୍ଟ୍‌ର ଅବସରପ୍ରାପ୍ତ ବିଚାରପତି ମାନ୍ୟବର ଜଷ୍ଟିସ୍ ଡଃ ଏ.କେ. ମିଶ୍ରଙ୍କ ଅଧ୍ୟକ୍ଷତାରେ ଏକ ଉଚ୍ଚ କ୍ଷମତାପନ୍ନ କମିଟି ଗଠନ କରାଯାଇଥିଲା ।

ଏହି ଉଚ୍ଚ କ୍ଷମତାପନ୍ନ କମିଟି ପରିସ୍ଥିତିର ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ ଓ ବିଶ୍ଳେଷଣ ପରେ ନିମ୍ନୋକ୍ତ ନିଷ୍କର୍ଷ ଓ ସୁପାରିସ୍ ପ୍ରଦାନ କରିଛନ୍ତି ।

୧. ଓଡିଶାରେ ସରକାରୀ ସ୍କୁଲମାନଙ୍କରେ ପ୍ରାୟ ୮୬ ପ୍ରତିଶତ ପିଲା ପାଠ ପଢୁଥିବା ବେଳେ, ରାଜ୍ୟ ମେଡିକାଲ କଲେଜରେ ସେମାନେ ୨୩ ପ୍ରତିଶତ ଏବଂ ଇଞ୍ଜିନିୟରିଂ କଲେଜରେ ୨୧ ପ୍ରତିଶତ ସିଟ୍‌ରେ ସ୍ଥାନ ପାଇପାରୁଛନ୍ତି ।

୨. କିନ୍ତୁ ରାଜ୍ୟର ଘରୋଇ ସ୍କୁଲମାନଙ୍କରେ ମାତ୍ର ୧୨ ପ୍ରତିଶତ ପିଲା ପାଠ ପଢୁଥିବା ବେଳେ, ସେମାନେ ଉଭୟ ମେଡିକାଲ ଓ ଇଞ୍ଜିନିୟରିଂ କଲେଜର ୬୦ ପ୍ରତିଶତ ସିଟ୍ ପାଉଛନ୍ତି ।

ଏହା ସ୍ପଷ୍ଟ ଭାବରେ ସୂଚିତ କରୁଛି ଯେ କୋଚିଂ ପ୍ରତିଷ୍ଠାନଗୁଡିକ ଯାହାକି ଜାତୀୟ ପ୍ରବେଶିକା ପରୀକ୍ଷାଗୁଡିକରେ ସଫଳତା ଲାଭ ପାଇଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରୁଛି, ସେଠାରେ ନାମ ଲେଖାଇବା ପାଇଁ ଆର୍ଥିକ ତଥା ପାରିପାର୍ଶ୍ୱିକ ସୁବିଧା ଅଭାବରୁ ଏଭଳି ବିଷମତା ସୃଷ୍ଟି ହେଉଛି । ଏହି ବିଷମତା ଦ୍ୱାରା ସଂଖ୍ୟାଧିକ ଛାତ୍ରଛାତ୍ରୀ ପ୍ରଭାବିତ ହେଉଛନ୍ତି ।

ଏହି ସମସ୍ୟାର ସମାଧାନ ପାଇଁ କମିଟି ନିମ୍ନୋକ୍ତ ସୁପାରିସ୍ ପ୍ରଦାନ କରିଛନ୍ତି ।

୧. ରାଜ୍ୟର ସରକାରୀ ହାଇସ୍କୁଲମାନଙ୍କରେ ପାଠ ପଢୁଥିବା ଛାତ୍ରଛାତ୍ରୀମାନଙ୍କ ପାଇଁ ଡାକ୍ତରୀ ଓ ଇଞ୍ଜିନିୟରିଂ ପାଠ୍ୟକ୍ରମରେ ନାମ ଲେଖାଇବା ପାଇଁ ୧୫ ପ୍ରତିଶତ ସ୍ଥାନ ସଂରକ୍ଷିତ ରହିବ ।

୨. ଏହି ସଂରକ୍ଷଣ ସୁବିଧା ସମସ୍ତ ସଂରକ୍ଷିତ ବର୍ଗ ତଥା ସାଧାରଣ ବର୍ଗର ପିଲାଙ୍କ ସ୍ଥାନ ସମେତ ସବୁ ସ୍ତରରେ ସମାନୁପାତିକ ଭାବେ ଲାଗୁ କରାଯିବ ।

୩. ଏହାକୁ କାର୍ଯ୍ୟକାରୀ କରିବା ପାଇଁ ସରକାର ଓଡିଶା ପ୍ରଫେସନାଲ ଏଜୁକେସନାଲ ଇନ୍‌ଷ୍ଟିଚ୍ୟୁସନ୍ସ (ରେଗୁଲେସନ ଅଫ ଆଡ଼ମିଶନ ଆଣ୍ଡ ଫିକ୍ସେସନ୍ ଅଫ୍ ଫି) ଆକ୍ଟ, ୨୦୦୭ର ଧାରା ୯ ଅନୁଯାୟୀ ବିଜ୍ଞପ୍ତି ଜାରି କରିପାରିବେ ।

ଓଡିଶା ରାଜ୍ୟର ଲକ୍ଷ ଲକ୍ଷ ଛାତ୍ରଛାତ୍ରୀଙ୍କ ସ୍ୱାର୍ଥକୁ ଦୃଷ୍ଟିରେ ରଖି ଉଚ୍ଚ କ୍ଷମତାସଂପନ୍ନ କମିଟିର ସୁପାରିସ୍‌କୁ ଗ୍ରହଣ କରିବା ପାଇଁ ମୁଁ ଏହି ପବିତ୍ର ଗୃହକୁ ନିବେଦନ କରୁଛି ।

ଏହା ରାଜ୍ୟର ମେଧାବୀ ଓ ବୁଦ୍ଧିମାନ୍ ଛାତ୍ରଛାତ୍ରୀ ଯେଉଁମାନଙ୍କର କୋଚିଂ ପ୍ରତିଷ୍ଠାନଗୁଡିକରେ ପଢିବା ପାଇଁ ଆର୍ଥିକ ଏବଂ ପାରିପାର୍ଶ୍ୱିକ ସୁବିଧା ନାହିଁ, ସେମାନଙ୍କ ମନୋବଳ ବୃଦ୍ଧି କରିବ ।

ଉଚ୍ଚ କ୍ଷମତାପନ୍ନ କମିଟିର ରିପୋର୍ଟକୁ ଏହି ପବିତ୍ର ଗୃହର ସଦସ୍ୟମାନଙ୍କୁ ପ୍ରଦାନ କରିବା ପାଇଁ ଅନୁମତି ଦେବାକୁ ମୁଁ ମାନ୍ୟବର ବାଚସ୍ପତିଙ୍କୁ ଅନୁରୋଧ କରୁଛି ।



**ମୁଖ୍ୟମନ୍ତ୍ରୀଙ୍କ କୋଭିଡ଼ ସମୀକ୍ଷା**

# ଦ୍ୱିତୀୟ ସଂକ୍ରମଣକୁ ରୋକିବା ପାଇଁ ସତର୍କତାମୂଳକ ପଦକ୍ଷେପ ଓ ବ୍ୟାପକ ଜନସଚେତନତାର ଆବଶ୍ୟକତା ରହିଛି

– ମୁଖ୍ୟମନ୍ତ୍ରୀ

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଭିଡିଓ କନ୍‌ଫରେନ୍ସିଂ ଜରିଆରେ କୋଭିଡ ମହାମାରୀର ସମ୍ଭାବ୍ୟ ଦ୍ୱିତୀୟ ସଂକ୍ରମଣର ମୁକାବିଲା ସଂପର୍କରେ ସମୀକ୍ଷା କରି ବ୍ୟାପକ ସତର୍କତାମୂଳକ ପଦକ୍ଷେପ ଓ ଜନସଚେତନତା ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ।



କୋଭିଡ଼ ଟିକା ନେବା ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ।

ମୁଖ୍ୟମନ୍ତ୍ରୀ କହିଛନ୍ତି ଯେ କେତେକ ରାଜ୍ୟରେ ପରିସ୍ଥିତି ଦ୍ରୁତ ଗତିରେ ବିଗିଡିବାରେ ଲାଗିଛି । ଏବେଠାରୁ ତୁରନ୍ତ ପ୍ରତିରୋଧମୂଳକ ପଦକ୍ଷେପ ନ ନେଲେ, ଆମ ରାଜ୍ୟ ମଧ୍ୟ ଘୋର ବିପଦର ସମ୍ମୁଖୀନ ହେବ ବୋଲି ମୁଖ୍ୟମନ୍ତ୍ରୀ ସତର୍କ କରାଇ ଦେଇଛନ୍ତି ।

ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଏହା ମଧ୍ୟରେ କୋଭିଡ ଯୁଦ୍ଧର ଏକ ବର୍ଷ ପୂରଣ ହୋଇଯାଇଛି । ତେବେ ଆମର ଡାକ୍ତର, ପାରାମେଡିକ୍, ଆଗଧାଡିର ଯୋଦ୍ଧା, ପ୍ରଶାସନ, ପଞ୍ଚାୟତ ପ୍ରତିନିଧି ଓ ପୋଲିସ ଏ ସମସ୍ତଙ୍କର ନିଃସ୍ୱାର୍ଥପର ସେବା ଓ ତ୍ୟାଗ ଯୋଗୁଁ ଆମେ ଏ ପର୍ଯ୍ୟନ୍ତ ଭୂତାଣୁର ମୁକାବିଲାରେ ସଫଳ ହୋଇଛୁ । ରାଜ୍ୟ ମଧ୍ୟ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ସଫଳ କୋଭିଡ ମୁକାବିଲା ପାଇଁ ସ୍ୱୀକୃତି ହାସଲ କରିଛି ବୋଲି ସେ କହିଥିଲେ ।

ଏବେ ଯେତେବେଳ ରୋଗ ନିୟନ୍ତ୍ରଣ, ଜୀବିକା ସୃଷ୍ଟି ଓ ଅର୍ଥନୀତି କ୍ଷେତ୍ରରେ ରାଜ୍ୟ ସ୍ୱାଭାବିକ ପରିସ୍ଥିତିକୁ ଫେରିଆସୁଛି, ସେତେବେଳେ ଆମ ଦେଶ ସହିତ ବିଶ୍ୱର ଅନେକ ଦେଶରେ କୋଭିଡର ପ୍ରତ୍ୟାବର୍ତ୍ତନ ଲକ୍ଷ୍ୟ କରାଯାଉଛି । ଆମ ଦେଶରେ ଦ୍ୱିତୀୟ ସଂକ୍ରମଣ ଆରମ୍ଭ ହେବା ପରି ପରିସ୍ଥିତି ଲକ୍ଷ୍ୟ କରାଯାଉଛି । ତେଣୁ ଏଭଳି ପରିସ୍ଥିତିରେ ଦ୍ୱିତୀୟ ସଂକ୍ରମଣକୁ ରୋକିବା ପାଇଁ ମାସ୍କ ବ୍ୟବହାର ଓ ହାତଧୁଆ ଉପରେ ବ୍ୟାପକ ସଚେତନତା ସୃଷ୍ଟି କରିବାକୁ ପଦକ୍ଷେପ ନେବା ଜରୁରୀ । ବିଶେଷକରି ସର୍ବସାଧାରଣ ସ୍ଥାନରେ ମାସ୍କ ବ୍ୟବହାରର ଦୃଢ ଅନୁପାଳନକୁ ସୁନିଶ୍ଚିତ କରିବାର ଆବଶ୍ୟକତା ରହିଛି ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ । ସମସ୍ତ ଜିଲ୍ଲାଗୁଡିକ ନିଜ ନିଜ ଅଞ୍ଚଳର ସ୍ଥାନୀୟ ନେତୃବୃନ୍ଦ, ପଞ୍ଚାୟତ ପ୍ରତିନିଧି ଓ ଧାର୍ମିକ ସଂସ୍ଥା ଆଦି ବିଭିନ୍ନ ଆବଶ୍ୟକ ବ୍ୟକ୍ତି ଓ ସଂସ୍ଥାମାନଙ୍କ ସହିତ ସଚେତନତା ଓ ସମନ୍ୱୟ ବୈଠକ କରିବା ପାଇଁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ ।



କୋଭିଡ୍ ଟିକା ନେବା ଅବସରରେ ମାନ୍ୟବର ରାଜ୍ୟପାଳ ପ୍ରଫେସର ଗଣେଶୀ ଲାଲ ।

ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଅନେକ ଦେଶରେ କୋଭିଡର ଦ୍ୱିତୀୟ ଲହର ପ୍ରଥମ ଲହରଠାରୁ ଅଧିକ ଭୟଙ୍କର ହେଉଛି । ଏସବୁ ଦେଶ ପୁଣି ଲକ୍‌ଡାଉନ ପରିସ୍ଥିତିକୁ ଫେରୁଛନ୍ତି । ଆମ ପକ୍ଷରେ ପୁଣି ଥରେ ଲକ୍‌ଡାଉନକୁ ଫେରିବା ବହୁତ କ୍ଷତିକାରକ ହେବ । ତେଣୁ ମୁଖ୍ୟମନ୍ତ୍ରୀ ସମସ୍ତଙ୍କୁ ନିବେଦନ କରିଥିଲେ ଯେ ଆମେ ସମସ୍ତେ ଆତ୍ମ ସଂଯମତା ପାଳନ କରିବା ସହିତ ରାଜ୍ୟର ସବୁସ୍ଥାନରେ କୋଭିଡ ନିୟମାବଳୀର ଅନୁପାଳନକୁ ସୁନିଶ୍ଚିତ କରିବା ।

ଦ୍ୱିତୀୟ ଲହର ନ ହେବା ପାଇଁ ରାଜ୍ୟ ପ୍ରଶାସନ ନୂତନ ଉତ୍ସାହ ସହିତ କାର୍ଯ୍ୟ କରିବାକୁ ପରାମର୍ଶ ଦେଇ ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଆମେ ସମସ୍ତେ ସତର୍କ ରହିବା ଏବଂ ଭୂତାଣୁ ସଂକ୍ରମଣକୁ ରୋକିବା ପାଇଁ ପ୍ରତିରୋଧମୂଳକ ପଦକ୍ଷେପକୁ କାର୍ଯ୍ୟକାରୀ କରିବା । ପରିସ୍ଥିତି ଉପରେ ସତର୍କ ନଜର ରଖିବା ସହ ନିୟମିତ ସମୀକ୍ଷା କରିବା ପାଇଁ ମୁଖ୍ୟ ଶାସନ ସଚିବଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଜିଲ୍ଲାପାଳ ଏବଂ ଏସ୍.ପି.ମାନେ ନିଜ ନିଜ ଅଞ୍ଚଳରେ ବ୍ୟକ୍ତିଗତ ଭାବେ ଏହି ଅନୁପାଳନକୁ ତଦାରଖ କରିବାକୁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ ।

ସେହିପରି ସ୍ୱାସ୍ଥ୍ୟ ଏବଂ ସୂଚନା ଓ ଲୋକସଂପର୍କ ବିଭାଗ ବ୍ୟାପକ ପ୍ରଚାର ଓ IEC campaign ଆରମ୍ଭ କରିବାକୁ ମୁଖ୍ୟମନ୍ତ୍ରୀ ପରିମର୍ଶ ଦେଇଥିଲେ । ଗାଁ, ସାପ୍ତାହିକ ହାଟ ଓ ଭିଡ ପରିଲକ୍ଷିତ ହେଉଥିବା ମାର୍କେଟରେ

ଡାକବାଜି ଯନ୍ତ୍ର ଜରିଆରେ ସମସ୍ତ ନିୟମାବଳୀ ଓ ଜରୁରୀ ସୂଚନା ସଂପର୍କରେ ତୁରନ୍ତ ଘୋଷଣା ଆରମ୍ଭ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଜିଲ୍ଲାପାଳମାନେ ନିଜ ନିଜ ଅଞ୍ଚଳରେ ସର୍ଭେଲାନ୍ସ ଓ ଟେଷ୍ଟିଂ କାର୍ଯ୍ୟକ୍ରମକୁ କଡାକଡି ଭାବରେ ତଦାରଖ କରିବାକୁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ ।

ସମଗ୍ର ପ୍ରଶାସନିକ କଳକୁ ପରିସ୍ଥିତିର ଗମ୍ଭୀରତା ଅନୁଭବ କରିବାକୁ ପରାମର୍ଶ ଦେଇ ମୁଖ୍ୟମନ୍ତ୍ରୀ ସମସ୍ତେ ନିଜ ନିଜକୁ କୋଭିଡ ଯୁଦ୍ଧରେ ପୁଣିଥରେ ନିଷ୍ଠାର ସହ ସାମିଲ କରିବା ପାଇଁ ନିବେଦନ କରିଥିଲେ ।

ବୈଠକରେ ମୁଖ୍ୟ ଶାସନ ସଚିବ ଶ୍ରୀ ସୁରେଶ ଚନ୍ଦ୍ର ମହାପାତ୍ର କହିଲେ ଯେ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ ଅନୁଯାୟୀ ରାଜ୍ୟରେ କୋଭିଡ ନିୟମକୁ ଅଧିକ କଡାକଡି ଭାବରେ ପାଳନ କରାଯିବ । ଛତିଶଗଡ ସୀମାନ୍ତବର୍ତ୍ତୀ ଜିଲ୍ଲାଗୁଡିକ ଅଧିକ ସତର୍କ ରହିବା ପାଇଁ ସେ ପରାମର୍ଶ ଦେଇଥିଲେ ।

ସ୍ୱାସ୍ଥ୍ୟ ବିଭାଗର ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ପ୍ରଦୀପ୍ତ କୁମାର ମହାପାତ୍ର ବର୍ତ୍ତମାନର ସ୍ଥିତି ସଂପର୍କରେ ବିସ୍ତୃତ ଉପସ୍ଥାପନା ଦେଇଥିଲେ । ଗତ କିଛି ଦିନ ହେଲା କୋଭିଡ ପଜିଟିଭ କେସ୍‌ରେ ସାମାନ୍ୟ ବୃଦ୍ଧି ଆସିଛି ବୋଲି ପ୍ରକାଶ କରି ସେ କହିଥିଲେ ଯେ ରାଜ୍ୟର ସୁନ୍ଦରଗଡ, ମୟୂରଭଞ୍ଜ, କଟକ ଓ ଖୋର୍ଦ୍ଧା ଏହି ୪ ଗୋଟି ଜିଲ୍ଲାରେ ରାଜ୍ୟରେ ବାହାରୁଥିବା ପଜିଟିଭ ସଂଖ୍ୟାର ୪୦ ପ୍ରତିଶତ ଥିବାବେଳେ ନୟାଗଡ ଓ ମାଲକାନଗିରିରେ କେହି ଜଣେ ବି ପଜିଟିଭ ନାହାନ୍ତି ବୋଲି ସେ କହିଥିଲେ । ବର୍ତ୍ତମାନ ରାଜ୍ୟରେ ୮୯୮ ଜଣ ସକ୍ରିୟ ରୋଗୀ ଥିବାବେଳେ, ୧୦୬ ଜଣ ହସ୍ପିଟାଲରେ ଚିକିତ୍ସିତ ହେଉଛନ୍ତି ଏବଂ ରାଜ୍ୟର କୋଭିଡ ଭିତ୍ତିଭୂମି ସଂପୂର୍ଣ୍ଣ ପ୍ରସ୍ତୁତ ଅଛି ବୋଲି ସେ କହିଥିଲେ ।

RT-PCR ଟେଷ୍ଟ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଛି ଓ ରେଡ୍ ଫ୍ଲାଗ୍ ରାଜ୍ୟଗୁଡିକରୁ ଆସୁଥିବା ଲୋକମାନଙ୍କୁ କଡାକଡି ଯାଂଚ କରାଯାଉଛି । ଟିକାକରଣ ସଂପର୍କରେ ଆଲୋକପାତ କରି ସେ କହିଲେ ଯେ ବର୍ତ୍ତମାନ ସୁଦ୍ଧା ରାଜ୍ୟରେ ୧୮. ୮୧ ଲକ୍ଷ ଲୋକଙ୍କୁ ଟିକା ଦିଆଯାଇସାରିଛି । ଅଧିକ ୨୫ ଲକ୍ଷ ଡୋଜ୍ ଟିକା ପଠାଇବା ପାଇଁ କେନ୍ଦ୍ରକୁ ଅନୁରୋଧ କରାଯାଇଛି ବୋଲି ସେ କହିଥିଲେ । ରାଜ୍ୟରେ ଟିକା ନଷ୍ଟ ପରିମାଣ ୦.୨୪ ପ୍ରତିଶତ ରହିଛି, ଯାହାକି ସମଗ୍ର ଦେଶରେ ସବୁଠାରୁ କମ୍ ବୋଲି ସେ କହିଥିଲେ ।

ପୋଲିସ ମହାନିର୍ଦ୍ଦେଶକ ଶ୍ରୀ ଅଭୟ କହିଥିଲେ ଯେ କୋଭିଡ ନିୟମର କଡା ଅନୁପାଳନ ପାଇଁ ପୋଲିସ ପ୍ରଶାସନକୁ ଦୃଢ ନିର୍ଦ୍ଦେଶ ଦିଆଯାଇଛି ।

ଷ୍ଟେସନ ଓ ବିମାନ ବନ୍ଦରଗୁଡିକରେ ବାହାରୁ ଆସୁଥିବା ଯାତ୍ରୀମାନଙ୍କ ଉପରେ କଡା ନଜର ରଖାଯିବା ସହିତ ସେମାନଙ୍କ ଟେଷ୍ଟିଂ ପାଇଁ ମଧ୍ୟ ପଦକ୍ଷେପ ନିଆଯାଉଛି ବୋଲି ବୈଠକରେ ସୂଚନା ଦିଆଯାଇଥିଲା । ମୁଖ୍ୟମନ୍ତ୍ରୀଙ୍କ ସଚିବ (୫-'ଟି') ଶ୍ରୀ ଭି.କେ. ପାଣ୍ଡିଆନ୍ ବୈଠକ ପରିଚାଳନା କରିଥିଲେ ।






# ଓଡ଼ିଶା ଦିବସ –୨୦୨୧ ପାଳନ ଅବସରରେ
# ଭାରତର ରାଷ୍ଟ୍ରପତି
# ଶ୍ରୀଯୁକ୍ତ ରାମନାଥ କୋବିନ୍ଦଙ୍କ
# ବାର୍ତ୍ତା



ଓଡ଼ିଶା ସରକାର ଅପ୍ରେଲ ପହିଲା ୨୦୨୧ରେ ଓଡ଼ିଶା ଦିବସ ଅଥବା ଉତ୍କଳ ଦିବସ ପାଳନ କରୁଥିବା ଜାଣି ମୁଁ ଆନନ୍ଦିତ ।

ଅପ୍ରେଲ ୧, ୧୯୩୬ରେ ସ୍ୱତନ୍ତ୍ର ରାଜ୍ୟ ଭାବେ ଆତ୍ମପ୍ରକାଶ କରିଥିବା ଓଡ଼ିଶା ରାଜ୍ୟର ପ୍ରତିଷ୍ଠା ଦିବସକୁ ସ୍ମରଣୀୟ ରଖିବା ନିମନ୍ତେ ଓଡ଼ିଶା ଦିବସ ପାଳନ କରାଯାଉଛି । ବାସ୍ତବରେ, ପ୍ରାଚୀନ କାଳରୁ ଓଡ଼ିଶା ସ୍ଥାପତ୍ୟ, ସଙ୍ଗୀତ, ନୃତ୍ୟ, ଧର୍ମଧାରା ଓ ଦର୍ଶନରେ ଉତ୍କର୍ଷ ପ୍ରତିପାଦନ କରିପାରିଛି । ସୁଦୀର୍ଘ ବେଳାଭୂମି, ସଘନ ସବୁଜିମାଭରା ପର୍ବତମାଳା ଓ ହେନ୍ତାଳବଣ ସାଙ୍ଗକୁ ସମୃଦ୍ଧ ସାଂସ୍କୃତିକ ପରମ୍ପରା ରାଜ୍ୟକୁ ଭାରତର ଅନ୍ୟ ରାଜ୍ୟମାନଙ୍କ ମଧ୍ୟରେ ଏକ ପୃଥକ୍ ପରିଚିତି ପ୍ରଦାନ କରିଛି । ମୁଁ ନିଶ୍ଚିତ ଯେ, ଦେଶରେ ସାମୂହିକ ଅଭିବୃଦ୍ଧିର ଏକ ଉଦାହରଣ ଭାବେ ରାଜ୍ୟକୁ ଗଢ଼ିତୋଳିବା ପାଇଁ ଓଡ଼ିଶାର ଜନସାଧାରଣ ଏବଂ ଓଡ଼ିଶା ସରକାର କଠିନ ପରିଶ୍ରମ ଅବ୍ୟାହତ ରଖିବେ ।

ଓଡ଼ିଶାବାସୀଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ଏବଂ ଉତ୍ସବର ସର୍ବସଫଳତା କାମନା କରୁଛି ।

RN Kovind

**ନୂଆଦିଲ୍ଲୀ** — **(ରାମନାଥ କୋବିନ୍ଦ)**

**ମାର୍ଚ୍ଚ ୨୫, ୨୦୨୧**




# ଓଡ଼ିଶା ଦିବସ – ୨୦୨୧ ପାଳନ ଅବସରରେ
# ମାନ୍ୟବର ପ୍ରଧାନମନ୍ତ୍ରୀ
# ଶ୍ରୀଯୁକ୍ତ ନରେନ୍ଦ୍ର ମୋଦିଙ୍କ
# ବାର୍ତ୍ତା



ଅପ୍ରେଲ ପହିଲା ୨୦୨୧ରେ ଓଡ଼ିଶା ଦିବସ ପାଳନ ହେଉଥିବା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ଉତ୍କଳ ଦିବସ ଅବସରରେ ଓଡ଼ିଶାବାସୀ ମୋର ଭଉଣୀ ଓ ଭାଇମାନଙ୍କୁ ଶୁଭେଚ୍ଛା ।

ଓଡ଼ିଶା ରାଜ୍ୟ ବିପୁଳ ପ୍ରାକୃତିକ ସମ୍ପଦ, ଭରପୂର ଜୈବ ବିବିଧତା ଏବଂ ସମୃଦ୍ଧ ସାଂସ୍କୃତିକ ତଥା ଆଧ୍ୟାତ୍ମିକ ଐତିହ୍ୟର ସମ୍ଭାରରେ ବିଭୂଷିତ । ଆଠ ଦଶନ୍ଧିରୁ ଊର୍ଦ୍ଧ୍ୱ ଯାତ୍ରା ମଧ୍ୟରେ ରାଜ୍ୟ ଅନେକଗୁଡ଼ିଏ ଉଲ୍ଲେଖନୀୟ ପରିବର୍ତ୍ତନର ସାକ୍ଷୀ ହୋଇଛି ।

ଓଡ଼ିଶାର ସର୍ବାଙ୍ଗୀନ ବିକାଶ ଦିଗରେ ଆମ ସରକାର ଏହାର ପ୍ରୟାସରେ ସର୍ବଦା ଦୃଢ଼ ରହିଛନ୍ତି । ‘‘ସବ୍‌କା ସାଥ୍, ସବ୍‌କା ବିକାଶ, ସବ୍‌କା ବିଶ୍ୱାସ’’ର ମନ୍ତ୍ରକୁ ଅନୁସରଣ କରି ଓଡ଼ିଶାର ପ୍ରତ୍ୟେକ କୋଣ ଅନୁକୋଣ ଏବଂ ପ୍ରତ୍ୟେକ ବ୍ୟକ୍ତିଙ୍କ ବିକାଶ ସାଧନର ସଙ୍କଳ୍ପ ସମେତ ବ୍ୟାପକ ପଦକ୍ଷେପ ଗ୍ରହଣ କରାଯାଇଛି ।

ଏକ ବଳିଷ୍ଠ ତଥା ଆତ୍ମନିର୍ଭର ଭାରତ ଗଠନ ଦିଗରେ ରାଷ୍ଟ୍ରର ପ୍ରତିବଦ୍ଧତାକୁ ଓଡ଼ିଶାର ଉଦାର ଓ ଅଧ୍ୟବସାୟୀ ଜନସାଧାରଣ ନିରନ୍ତର ସଶକ୍ତ କରିଆସିଛନ୍ତି । ଆଜିର ଏହି ଶୁଭ ଅବସର, ଓଡ଼ିଶାର ବିକାଶକୁ ନୂତନ ଶିଖରରେ ପହଞ୍ଚାଇବା ପାଇଁ ଅକ୍ଳାନ୍ତ ପରିଶ୍ରମ ନିମନ୍ତେ ସମସ୍ତଙ୍କୁ ଅନୁପ୍ରେରିତ କରିବ ।

ପୁଣି ଥରେ ଓଡ଼ିଶାବାସୀଙ୍କୁ ଉତ୍କଳ ଦିବସର ଅଭିନନ୍ଦନ । ଉତ୍ସବ ସମ୍ପୂର୍ଣ୍ଣ ସଫଳ ହେଉ ।

(ନରେନ୍ଦ୍ର ମୋଦି)

**ନୂଆଦିଲ୍ଲୀ**

**୨୫ ମାର୍ଚ୍ଚ, ୨୦୨୧**

# ଓଡ଼ିଶା ଦିବସ –୨୦୨୧ ପାଳନ ଅବସରରେ
# ମାନ୍ୟବର ରାଜ୍ୟପାଳ
# ପ୍ରଫେସର ଗଣେଶୀ ଲାଲଙ୍କ
# ବାର୍ତ୍ତା



ପ୍ରିୟ ଭଉଣୀ ଓ ଭାଇମାନେ,

ଓଡ଼ିଶା ଦିବସ–୨୦୨୧ ପାଳନ ଅବସରରେ ଆପଣମାନଙ୍କୁ ସମସ୍ତଙ୍କୁ ମୁଁ ଆନ୍ତରିକ ଶୁଭେଚ୍ଛା ଜଣାଉଛି । ୧୯୩୬ ମସିହା ଆଜିର ଦିବସରେ ଓଡ଼ିଶା ଏକ ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହୋଇଥିଲା । ଏ ମାଟିର ସୁଯୋଗ୍ୟ ସନ୍ତାନ ଉତ୍କଳଗୌରବ ମଧୁସୂଦନ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ବ୍ୟାସକବି ଫକୀରମୋହନ ସେନାପତି, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଭକ୍ତକବି ମଧୁସୂଦନ ରାଓ, କର୍ମବୀର ଗୌରୀଶଙ୍କର ରାୟ, ସ୍ୱଭାବ କବି ଗଙ୍ଗାଧର ମେହେର, କବିବର ରାଧାନାଥ ରାୟ ଏବଂ ଆହୁରି ଅନେକ ମହାନ୍ ଉତ୍ସର୍ଗୀକୃତ ବ୍ୟକ୍ତିତ୍ୱଙ୍କର ଉଦ୍ୟମ, ନିରବଚ୍ଛିନ୍ନ ସଂଗ୍ରାମ ତଥା ନିଃସ୍ୱାର୍ଥପର ତ୍ୟାଗ ସବୁଦିନ ପାଇଁ ଚିର ସ୍ମରଣୀୟ ହୋଇ ରହିବ ।

ଏହି ସ୍ମରଣୀୟ ଦିବସରେ, ସାରା ଭାରତବର୍ଷରେ ଭାଷାଭିତ୍ତିରେ ଗଠିତ ପ୍ରଥମ ରାଜ୍ୟର ଅନନ୍ୟ ପରିଚିତି ଆଣିଦେଇଥିବାରୁ ଆମେ ସେମାନଙ୍କ ପ୍ରତି ଆମର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ।

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ବିଚ୍ଛିନ୍ନ ଓଡ଼ିଆ ଭାଷାଭାଷୀ ଅଂଚଳର ଏକତ୍ରୀକରଣ ପାଇଁ ଉଦ୍ୟମ ଆରମ୍ଭ ହୋଇଥିଲା । ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଦ୍ୱାରା ୧୯୦୩ ମସିହାରେ ଗଠିତ 'ଉତ୍କଳ ସମ୍ମିଳନୀ' ଓଡ଼ିଆ ଭାଷାଭାଷୀ ଅଂଚଳଗୁଡିକର ଏକତ୍ରୀକରଣ ପାଇଁ ନିଷ୍ଠାପର ଉଦ୍ୟମ ଜାରି ରଖିଥିଲା । ଉତ୍କଳ ସମ୍ମିଳନୀର ଏହି ଐତିହାସିକ ସମାବେଶ ଅବିରତ ଉତ୍ସାହ ସହିତ ୧ ଅପ୍ରେଲ ୧୯୩୬ରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହେବା ପର୍ଯ୍ୟନ୍ତ ଜାରି ରହିଥିବା ଓଡ଼ିଆ ଆନ୍ଦୋଳନ ସବୁଦିନ ପାଇଁ ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଉତ୍କଳଗୌରବ ମଧୁସୂଦନ ଦାସ ଉତ୍କଳ ସମ୍ମିଳନୀର ମୁଖ୍ୟ ପୁରୋଧା ଥିଲେ । ପାରଳାଖେମୁଣ୍ଡିର ତତ୍କାଳୀନ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ପ୍ରଥମ ଗୋଲଟେବୁଲ ବୈଠକରେ ପ୍ରତିନିଧିତ୍ୱ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ଇଂରେଜ ସରକାରଙ୍କ ନିକଟରେ ସ୍ମାରକପତ୍ର ଉପସ୍ଥାପନ କରିଥିଲେ ।

ଏ ମାଟିର ଗୌରବମୟ ପରମ୍ପରା ଭାରତୀୟ ସଭ୍ୟତାର ସମୃଦ୍ଧିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ସହନଶୀଳତା, ଭ୍ରାତୃଭାବ ଏବଂ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଉପରେ ପର୍ଯ୍ୟବସିତ ଓଡ଼ିଶାର ନିରପେକ୍ଷ ମୂଲ୍ୟବୋଧର

ଗାଥା ଅନନ୍ୟ । ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଶାନ୍ତି ଏବଂ ଅହିଂସାର ମାର୍ଗ ଅନୁସରଣ କରି ଓଡ଼ିଶା ସ୍ୱାଧୀନତା ଆନ୍ଦୋଳନର ପୁରୋଭାଗରେ ରହିଥିଲା ।

ଓଡ଼ିଶାର ପ୍ରାଚୀନ କଳା ଓ ଭାସ୍କର୍ଯ୍ୟ, ମନ୍ଦିର ସ୍ଥାପତ୍ୟ, ପୋଥି ପୁରାଣ, ଶାସ୍ତ୍ରୀୟ ଓଡ଼ିଶୀ ନୃତ୍ୟ ଏବଂ ଓଡ଼ିଶୀ ସଂଗୀତ, ସୂକ୍ଷ୍ମ କାରୁକାର୍ଯ୍ୟଭରା ଚାନ୍ଦୁଆ, ରୌପ୍ୟ ତାରକସି କାମ, ଆଳଙ୍କାରିକ ହସ୍ତକଳା, ଚିତ୍ରକଳା ଏବଂ ମନ୍ଦିର ଭାସ୍କର୍ଯ୍ୟ, ତାଳପତ୍ର ପୋଥି, ପଟ୍ଟଚିତ୍ର, କୁଶଳୀ ହାତ କାରିଗରୀରେ ସମୃଦ୍ଧ ବୟନ ଶିଳ୍ପ ଏବଂ ହସ୍ତତନ୍ତ ଇତ୍ୟାଦି ଏହି ମାଟିର ସ୍ୱାତନ୍ତ୍ର୍ୟ ପ୍ରତିପାଦିତ କରିଥାଏ । ସୁଦୂର ଦେଶମାନଙ୍କ ସହିତ ଓଡ଼ିଶାର ଗରିମାମୟ ନୌବାଣିଜ୍ୟ ଐତିହ୍ୟ ଏବଂ ସମୃଦ୍ଧ ସାଂସ୍କୃତିକ ପରମ୍ପରା ରାଜ୍ୟ ହେଉଛି ଓଡ଼ିଶା । ସମୟ ସହିତ ଆମର ଆଧ୍ୟାତ୍ମିକ ଏବଂ ନୈତିକ ମୂଲ୍ୟବୋଧର ନିରନ୍ତର ଯାତ୍ରା ସଂହତି, ସମଭାବାପନ୍ନ ମନୋଭାବ ସହିତ ସକାରାତ୍ମକ ଆଭିମୁଖ୍ୟର ଏକ ଅନନ୍ୟ ଗାଥା ।

ଓଡ଼ିଶାର ଏହି ଅନନ୍ୟ ସାଂସ୍କୃତିକ ଭାବଧାରାର ସୁରକ୍ଷା, ବିକାଶ ଓ ସଂରକ୍ଷଣ ନିମନ୍ତେ ଆମ ସରକାର ବଦ୍ଧପରିକର ହେବା ସହିତ ଓଡ଼ିଆ ଭାଷା ଓ ସାହିତ୍ୟର ଏହି ମହାନ୍ ପରମ୍ପରାକୁ ସମୃଦ୍ଧ ତଥା ଋଦ୍ଧିମନ୍ତ କରିବା ଦିଗରେ ସମସ୍ତ ପଦକ୍ଷେପ ଗ୍ରହଣ କରୁଛନ୍ତି । ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରୋତ୍ସାହନ, ଗବେଷଣା ତଥା ସମୃଦ୍ଧି ଲକ୍ଷ୍ୟରେ ରାଜ୍ୟ ସରକାର ବହୁବିଧ ପଦକ୍ଷେପ ଗ୍ରହଣ କରିଛନ୍ତି ।

କୋଭିଡ-୧୯ ମହାମାରୀ ସଂକ୍ରମଣ ପ୍ରତିହତ କରିବା ପାଇଁ ଆଗୁଆ ପଦକ୍ଷେପ ଗ୍ରହଣ, ଅମୂଲ୍ୟ ମାନବ ଜୀବନ ରକ୍ଷା, ମୃତ୍ୟୁହାର ହ୍ରାସ ସହିତ କୋଭିଡ-୧୯ରୁ ରେକର୍ଡ ସଂଖ୍ୟକ ବ୍ୟକ୍ତିଙ୍କୁ ଆରୋଗ୍ୟ କରାଇ ଆମ ରାଜ୍ୟ ବିଶ୍ୱ ସମୁଦାୟର ପ୍ରଶଂସାଭାଜନ ହୋଇପାରିଛି । ସଂପ୍ରତି ରାଜ୍ୟ ସରକାରଙ୍କ ସଫଳ ଟିକାକରଣ ଅଭିଯାନ ମଧ୍ୟ ବେଶ୍ ଫଳପ୍ରଦ ହୋଇଛି । ସ୍ୱାସ୍ଥ୍ୟକର୍ମୀ, ବରିଷ୍ଠ ନାଗରିକ ଏବଂ ଆଗଧାଡିର କରୋନା ଯୋଦ୍ଧାଙ୍କୁ ସଫଳତାର ସହିତ ଟିକାଦାନ କରାଯାଇଛି । ମହାମାରୀ ସତ୍ତ୍ୱେ ୧.୨୫ ଲକ୍ଷ କୋଟି ଟଙ୍କାର ନୂତନ ପୁଞ୍ଜିନିବେଶ ପ୍ରସ୍ତାବ ଆକୃଷ୍ଟ କରିବାରେ ସମର୍ଥ ହୋଇ ଓଡ଼ିଶା ଦେଶର ଏକ ଅଗ୍ରଣୀ ପୁଞ୍ଜିନିବେଶ କ୍ଷେତ୍ରର ମାନ୍ୟତା ହାସଲ କରିଛି ।

ବୈଷୟିକ ଜ୍ଞାନ କୌଶଳ ପ୍ରୟୋଗରେ ରାଜ୍ୟର ୫ 'ଟି' ଉପକ୍ରମ ମାଧ୍ୟମରେ ଏବେ ଜନସାଧାରଣଙ୍କୁ ସୁଚାରୁରୂପେ ସରକାରୀ ସେବା ପ୍ରଦାନ କରିବା ପ୍ରକ୍ରିୟା ସୁଗମ ହୋଇଛି । ଜନମତ ଆଧାରରେ ପ୍ରଶାସନରେ ସ୍ୱଚ୍ଛତା ଏବଂ ଉତ୍ତରଦାୟିତ୍ୱ ଆଣିବା ସହିତ ଫଳପ୍ରଦ ସେବା ପ୍ରଦାନ ବ୍ୟବସ୍ଥାରେ ଉନ୍ନତି ଆଣିବା ଲକ୍ଷ୍ୟରେ ସମସ୍ତ ସରକାରୀ ବିଭାଗକୁ 'ମୋ ସରକାର'ରେ ଅନ୍ତର୍ଭୁକ୍ତ କରାଯାଇଛି ।

ମହିଳା ସଶକ୍ତିକରଣ, ଔଦ୍ୟୋଗିକତା ଏବଂ ନେତୃତ୍ୱ ପ୍ରଦାନ କ୍ଷେତ୍ରରେ ଓଡ଼ିଶା ମଡେଲ ରାଜ୍ୟ ଭାବେ ଉଭା ହୋଇଛି । ୮୦ ଲକ୍ଷ ମହିଳାଙ୍କୁ 'ମିଶନ ଶକ୍ତି'ରେ ଅନ୍ତର୍ଭୁକ୍ତ କରି ସେମାନଙ୍କୁ ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ସଶକ୍ତ କରାଯାଇଛି ।

'ମୋ ସ୍କୁଲ' ଅଭିଯାନ ସହିତ ରାଜ୍ୟ ସରକାର ସମଗ୍ର ବିଶ୍ୱର କୋଣ ଅନୁକୋଣରେ ରହୁଥିବା ଓଡ଼ିଆମାନଙ୍କୁ ସେମାନଙ୍କ ନିଜ ପୁରାତନ ଶିକ୍ଷାନୁଷ୍ଠାନର ବିକାଶରେ ଜଡିତ କରିବା ଲକ୍ଷ୍ୟରେ ନିକଟରେ 'ମୋ କଲେଜ' ଅଭିଯାନ ଆରମ୍ଭ କରିଛନ୍ତି । ଏହି ମିଶନ ସମଗ୍ର ବିଶ୍ୱର ପୁରାତନ ଓଡ଼ିଆ ଛାତ୍ରଛାତ୍ରୀଙ୍କୁ ସମ୍ମିଳିତ ଭାବେ ଜନ୍ମ ମାଟିରେ ଥିବା ନିଜ ଶିକ୍ଷାନୁଷ୍ଠାନଗୁଡିକର ପୁନଃ ବିକାଶରେ ସାମିଲ ହେବା ପାଇଁ ଏକ ସୁଯୋଗ ପ୍ରଦାନ

କରିବା ସହିତ ନିଜ ମାଟିରେ ଆଗାମୀ ପିଢ଼ିର ଛାତ୍ରଛାତ୍ରୀଙ୍କ ଭବିଷ୍ୟତ ଲକ୍ଷ୍ୟ ହାସଲକୁ ସୁନିଶ୍ଚିତ କରିବା ପାଇଁ ସମ୍ପୂର୍ଣ୍ଣ ଭାବେ ଫଳପ୍ରଦ ହେବ ।

ପୁରୀ ଶ୍ରୀମନ୍ଦିର, ଲିଙ୍ଗରାଜ ମନ୍ଦିର, କୋଣାର୍କ ମନ୍ଦିର ଭଳି ବିଶ୍ୱ ଐତିହ୍ୟ ତୀର୍ଥସ୍ଥଳୀଗୁଡିକର ରୂପାନ୍ତରଣ କାର୍ଯ୍ୟ ଆଗେଇ ଚାଲିଛି । ସମ୍ବଲପୁରର ମା'ସମଲେଶ୍ୱରୀଙ୍କ ମନ୍ଦିରର ବିକାଶ କାର୍ଯ୍ୟ ମଧ୍ୟ ହାତକୁ ନିଆଯାଇଛି । ରାଜ୍ୟର ସମସ୍ତ ସହରାଂଚଳରେ ଶତ ପ୍ରତିଶତ ପାଇପ୍ ପାନୀୟ ଜଳ ଯୋଗାଣ ସୁନିଶ୍ଚିତ କରିବାରେ ଓଡ଼ିଶା ସମଗ୍ର ଦେଶରେ ଅଗ୍ରଣୀ ରହିଛି । ଏକ ବଳିଷ୍ଠ ତଦାରଖ ବ୍ୟବସ୍ଥା, ହିତାଧିକାରୀଙ୍କ ପାଇଁ ପ୍ରୋତ୍ସାହନ, ନିର୍ମାଣ ପ୍ରକ୍ରିୟାରେ ସ୍ୱଚ୍ଛତା ଅବଲମ୍ବନ କରି ଗରିବ ଜନସାଧାରଣଙ୍କ ପାଇଁ ରେକର୍ଡ ସଂଖ୍ୟକ ବାସଗୃହ ନିର୍ମାଣ କରିବାରେ ରାଜ୍ୟ ସଫଳତା ହାସଲ କରିଛି ।

କଟକସ୍ଥିତ ଏସ୍.ସି.ବି ମେଡିକାଲ କଲେଜକୁ 'ଏମ୍ସ ପ୍ଲସ୍' ପ୍ରତିଷ୍ଠାନ ଭାବେ ରୂପାନ୍ତରିତ କରିବା କାର୍ଯ୍ୟ ହାତକୁ ନିଆଯାଇଛି । ସମସ୍ତ ନାଗରିକଙ୍କୁ ଗୁଣାତ୍ମକ ମାନର ସ୍ୱାସ୍ଥ୍ୟସେବା ଭିତ୍ତିଭୂମି ଯୋଗାଇଦେବା ପାଇଁ ରାଜ୍ୟ ସରକାରଙ୍କ ପ୍ରତିବଦ୍ଧତା ଫଳରେ ଓଡ଼ିଶାର ଆଉ ୨୧ଟି ସରକାରୀ ଡାକ୍ତରଖାନାକୁ ଆଇ.ଏସ୍.ଓ. ୯୦୦୧-୨୦୧୫ ମାନ୍ୟତା ମିଳିଛି । ଓଡ଼ିଶାକୁ ଏକ ବିଶ୍ୱସ୍ତରୀୟ କ୍ରୀଡା ଲକ୍ଷ୍ୟସ୍ଥଳରେ ପରିବର୍ତ୍ତିତ ବିକଶିତ କରିବା ପାଇଁ ରାଜ୍ୟ ସରକାର ପ୍ରତିବଦ୍ଧ । ରାଉରକେଲାଠାରେ ଖୁବ୍‌ଶୀଘ୍ର ଭାରତର ବୃହତ୍ତମ ହକି ଷ୍ଟାଡିୟମ୍ ନିର୍ମିତ ହେବାକୁ ଯାଉଛି ଏବଂ ଭୁବନେଶ୍ୱର ଓ ରାଉରକେଲାଠାରେ ଆଗାମୀ ୨୦୨୩ ଏଫ୍.ଆଇ.ଏଚ୍. ପୁରୁଷ ବିଶ୍ୱକପ୍ ହକି ଆୟୋଜନ ଦାୟିତ୍ୱ ଓଡ଼ିଶାକୁ ପୁଣି ମିଳିଛି ।

ଆମର ଗୌରବମୟ ଅତୀତ ସହ ବର୍ତ୍ତମାନର  ବିକାଶ, ରୂପାନ୍ତରଣ ତଥା ସଶକ୍ତିକରଣ ନିମନ୍ତେ ଆମର ପ୍ରଚେଷ୍ଟା ଆମକୁ ଅନ୍ୟମାନଙ୍କଠୁ ପୃଥକ୍ କରିପାରିଛି ।  ଆମ ସଂସ୍କୃତି, ପରମ୍ପରା, ଐତିହ୍ୟ ଏବଂ ଆମ ବ୍ୟବସ୍ଥିତ ଅଭିବୃଦ୍ଧି ସର୍ବଦା ଆମ ପାଇଁ  ପ୍ରେରଣାର ଉତ୍ସ ହୋଇ ରହିଛି । ଆସନ୍ତୁ, ଆଜିର ଦିନରେ ଏହି ଗୌରବମୟ ପରମ୍ପରା, ଯାହା ଆମର ମହାନ୍ ପୂର୍ବସୂରୀମାନଙ୍କ ନିଃସ୍ୱାର୍ଥପର ତ୍ୟାଗ ଏବଂ ଉତ୍ସର୍ଗର ପ୍ରତୀକ, ଏହାର ସଂରକ୍ଷଣ ଓ ସମୃଦ୍ଧି ନିମନ୍ତେ ସଂକଳ୍ପବଦ୍ଧ ହେବା । ଓଡ଼ିଶାକୁ ରୂପାନ୍ତରଣର ପରବର୍ତ୍ତୀ ପର୍ଯ୍ୟାୟକୁ ଉନ୍ନୀତ କରି ଏକ ନୂତନ ଓଡ଼ିଶା ଗଠନ ପାଇଁ ନିଜକୁ ପୁନଃ ଉତ୍ସର୍ଗ କରିବା ।

**ବନ୍ଦେ ଉତ୍କଳ ଜନନୀ ।**

# ଓଡ଼ିଶା ଦିବସ –୨୦୨୧ ପାଳନ ଅବସରରେ
# ମାନ୍ୟବର ମୁଖ୍ୟମନ୍ତ୍ରୀ
# ଶ୍ରୀ ନବୀନ ପଟ୍ଟନାୟକଙ୍କ
# ବାର୍ତ୍ତା



ଆଜି ପବିତ୍ର ଓଡ଼ିଶା ଦିବସ । ଏହି ଅବସରରେ ସାରା ଓଡ଼ିଶା ତଥା ଦେଶ ବିଦେଶରେ ରହୁଥିବା ସବୁ ଓଡ଼ିଆ ଭାଇଭଉଣୀ ଏବଂ ଆପଣମାନଙ୍କୁ ସମସ୍ତଙ୍କୁ ମୋର ଅଭିନନ୍ଦନ ଜଣାଉଛି ।

ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଖଲିକୋଟ ରାଜା ବାହାଦୁର ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ, ପଣ୍ଡିତ ଗୋଦାବରୀଶ ମିଶ୍ର, ଫକୀରମୋହନ ସେନାପତି, ଗଙ୍ଗାଧର ମେହେରଙ୍କ ପରି ବରପୁତ୍ରମାନଙ୍କ ତ୍ୟାଗ ଓ ସଂଗ୍ରାମ ଯୋଗୁଁ ସ୍ୱତନ୍ତ୍ର ଓଡ଼ିଶାର ସ୍ୱପ୍ନ ସଫଳ ହୋଇପାରିଥିଲା । ଏହି ଅବସରରେ ମୁଁ ସେମାନଙ୍କ ପ୍ରତି ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଓଡ଼ିଆ ଭାଷା, ସାହିତ୍ୟ, ନୃତ୍ୟ, ସଂଗୀତ ଓ କଳାକୁ ଯେଉଁମାନେ ସମୃଦ୍ଧ କରିଯାଇଛନ୍ତି, ସେମାନଙ୍କ ପ୍ରତି ମୋର ସମ୍ମାନ ଜଣାଉଛି ।

ଆମର ବରପୁତ୍ରମାନେ ଓଡ଼ିଆ ଜାତି ପାଇଁ ଅନେକ ସ୍ୱପ୍ନ ଦେଖିଥିଲେ । ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ସହିତ ବିକାଶ କ୍ଷେତ୍ରରେ ଓଡ଼ିଶା ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିବ ବୋଲି ସେମାନେ ଦୃଢ଼ ନିଶ୍ଚିତ ଥିଲେ ।

ସେତେବେଳେ ଭାଷାଭିତ୍ତିକ ରାଜ୍ୟ ଗଠନ ପାଇଁ ଓଡ଼ିଶା ସାରା ଦେଶକୁ ରାସ୍ତା ଦେଖାଇଥିଲା । ଆଜି ମଧ୍ୟ ଆମେ ଅନେକ କ୍ଷେତ୍ରରେ ଆଗୁଆ ହୋଇ ସାରା ଦେଶ ପାଇଁ ଆଦର୍ଶ ସୃଷ୍ଟି କରିପାରିଛୁ । ଆଜି ମହିଳା ସଶକ୍ତିକରଣ, ବିପର୍ଯ୍ୟୟ ପରିଚାଳନା, ଅନ୍ତର୍ଜାତୀୟ କ୍ରୀଡା ପ୍ରତିଯୋଗିତା ପରିଚାଳନା, ଗରିବ ଲୋକଙ୍କ ପାଇଁ କଲ୍ୟାଣ କାର୍ଯ୍ୟକ୍ରମ– ଏପରି ଅନେକ କ୍ଷେତ୍ରରେ ଆମେ ଦେଶ ପାଇଁ ମଡେଲ ହୋଇପାରିଛୁ । ଆଜି ବିଭିନ୍ନ କ୍ଷେତ୍ରରେ ଓଡ଼ିଆମାନଙ୍କ ସୁନାମ ଆମକୁ ଗର୍ବିତ କରୁଛି । ରାଜ୍ୟର ବିକାଶ ହାର ଜାତୀୟ ହାରଠାରୁ ଅଧିକ ରହିଛି । କୃଷି ଉତ୍ପାଦନରେ ସ୍ୱାବଲମ୍ବୀ ହୋଇ ଦେଶର ଖାଦ୍ୟ ଭଣ୍ଡାରକୁ ଖାଦ୍ୟ ଦେଇପାରୁଛୁ । ପୁଞ୍ଜି ବିନିଯୋଗରେ ଓଡ଼ିଶା ସାରା ଦେଶରେ ବହୁତ ଭଲ ସ୍ଥାନରେ ରହିଛି । ଶିକ୍ଷା, ସ୍ୱାସ୍ଥ୍ୟ ଓ ଭିତ୍ତିଭୂମି କ୍ଷେତ୍ରରେ ଆମର ଆଖିଦୃଶିଆ ଉନ୍ନତି ଆସିଛି । ପ୍ରଶାସନକୁ ଦକ୍ଷ, ସ୍ୱଚ୍ଛ ଓ ଉତ୍ତରଦାୟୀ କରିବା ପାଇଁ ୫'ଟି' ଓ 'ମୋ ସରକାର' ପରି କାର୍ଯ୍ୟକ୍ରମ ଦେଶରେ ଏକ ଆଦର୍ଶ ତଥା ସମ୍ବେଦନଶୀଳ  ମଡେଲ ସୃଷ୍ଟି କରିବାରେ ସଫଳ ହୋଇପାରିଛି ।

ଓଡ଼ିଶାର ବିକାଶ ପାଇଁ ମୋ ସରକାର ନିରନ୍ତର ଉଦ୍ୟମ ଜାରି ରଖିଛି । ତେବେ ବିକାଶ କେବଳ ଏକ ସରକାରୀ ଆଭିମୁଖ୍ୟ ହେବା ଉଚିତ ନୁହେଁ । ଜନସାଧାରଣ ଏବେ କେବଳ ଉପଭୋକ୍ତା ନୁହଁନ୍ତି, ସେମାନେ ବିକାଶର ଭାଗୀଦାର । ଆମର ପ୍ରକୃତ ବିକାଶ ପାଇଁ ବିକାଶ ପ୍ରକ୍ରିୟାକୁ ଏକ ଜନ ଆନ୍ଦୋଳନରେ ପରିଣତ କରିବାକୁ ହେବ । ମୁଁ ଚାହେଁ, ବିକାଶର ସବୁ ପ୍ରକ୍ରିୟାରେ ଆମର ଜନସାଧାରଣ ଭାଗୀଦାର ହୁଅନ୍ତୁ । ଆମର 'ମୋ ସ୍କୁଲ' ଓ 'ମୋ କଲେଜ' ପରି କାର୍ଯ୍ୟକ୍ରମ ଏ ଦିଗରେ ଏକ ସଫଳ ଉଦ୍ୟମ । ଆଜି ଆମର ୫ ଲକ୍ଷ ପୁରାତନ ଛାତ୍ରଛାତ୍ରୀ ସେମାନଙ୍କ ସ୍କୁଲର ବିକାଶ ଦିଗରେ ସହଯୋଗ ପାଇଁ ଆଗେଇ ଆସିଛନ୍ତି । ଏହା କିଛି କମ୍ କଥା ନୁହେଁ । ଏହିଭଳି ଚିନ୍ତାଧାରା ନେଇ ଆମେ କାମ କଲେ ଓଡ଼ିଶା ନିଶ୍ଚୟ ଆଗରେ ରହିବ ।

୨୦୩୬ରେ ଆମେ ସ୍ୱତନ୍ତ୍ର ଓଡ଼ିଶା ଗଠନର ୧୦୦ ବର୍ଷ ପାଳନ କରିବୁ । ସେତେବେଳେ ଓଡ଼ିଶାକୁ ସବୁ କ୍ଷେତ୍ରରେ ସାରା ଦେଶ ଓ ସାରା ବିଶ୍ୱରେ ଏକ ବିକଶିତ ଓ ଆଦର୍ଶ ରାଜ୍ୟ ଭାବରେ ପରିଣତ କରିବା ଆମର ଲକ୍ଷ୍ୟ ହେବା ଉଚିତ । ତେବେ ଏଥିପାଇଁ ଆମକୁ ସବୁ କ୍ଷେତ୍ରରେ ବିଶ୍ୱସ୍ତରୀୟ ଚିନ୍ତାଧାରା ନେଇ ଆଗକୁ ବଢିବାକୁ ହେବ । ତା'ହେଲେ ଆମର ନୂଆ ଓଡ଼ିଶା, ସଶକ୍ତ ଓଡ଼ିଶାର ସ୍ୱପ୍ନ ବାସ୍ତବ ରୂପ ନେଇପାରିବ ।

ଗତ ଦୁଇ ବର୍ଷ ହେଲା ଆମେ ସମସ୍ତେ ଏକ ଅସାଧାରଣ ସମୟ ଦେଇ ଗତି କରୁଛୁ । ଆପଣମାନଙ୍କ ସମସ୍ତଙ୍କ ସହଯୋଗରେ ଆମେ ଏ ପର୍ଯ୍ୟନ୍ତ କରୋନାର ସଫଳ ମୁକାବିଲା କରିପାରିଛୁ । ତେବେ ଏବେ ପୁଣି ଥରେ କରୋନାର ଦ୍ୱିତୀୟ ସଂକ୍ରମଣର ଆଶଙ୍କା ସୃଷ୍ଟି ହୋଇଛି । ତେଣୁ ସମସ୍ତଙ୍କୁ ମୋର ନିବେଦନ, ଆପଣମାନେ କରୋନାର ସବୁ ନିୟମକୁ ପାଳନ କରନ୍ତୁ । ଆଜି ପର୍ଯ୍ୟନ୍ତ ଆମେ ଏହି ମୁକାବିଲାରେ ସଫଳ ହୋଇଛୁ । ଆଗକୁ ମଧ୍ୟ କରୋନାକୁ ଦୂର କରିବାରେ ଆମେ ସଫଳ ହେବୁ, ଏହା ମୋର ଦୃଢ଼ ବିଶ୍ୱାସ ।

**ବନ୍ଦେ ଉତ୍କଳ ଜନନୀ ।**

# ଓଡ଼ିଶା ଦିବସ -୨୦୨୧ ପାଳନ ଅବସରରେ
# ମାନ୍ୟବର ଜଳ ସମ୍ପଦ,
# ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ
# ଶ୍ରୀ ରଘୁନନ୍ଦନ ଦାସଙ୍କ
# ବାର୍ତ୍ତା



ପ୍ରିୟ ଭାଇ ଓ ଭଉଣୀମାନେ,

ପବିତ୍ର ଓଡ଼ିଶା ଦିବସ ପାଳନର ଏହି ଶୁଭ ଅବସରରେ ମୁଁ ଆପଣମାନଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

୧୯୩୬ ମସିହା ଅପ୍ରେଲ ୧ ତାରିଖ ଓଡ଼ିଶା ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ । ଏହିଦିନ ଓଡ଼ିଶା ସ୍ୱତନ୍ତ୍ର ଭାଷାଭିତ୍ତିକ ପ୍ରଦେଶ ଭାବେ ପରିଚିତି ଲାଭ କରିଥିଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଓଡ଼ିଶାର ପରିଚିତିକୁ ସୁଦୃଢ଼ କରିବା ପାଇଁ ଆମର ଯେଉଁ ପୂର୍ବସୂରୀମାନେ ଆନ୍ଦୋଳନରେ ଝାସ ଦେଇଥିଲେ, ସେହି ବନ୍ଦନୀୟ ମହାମନୀଷୀମାନଙ୍କ ମଧ୍ୟରେ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ରାଜା ହରିହର ମର୍ଦ୍ଦରାଜ, ବ୍ୟାସକବି ଫକୀରମୋହନ ସେନାପତି, ସ୍ୱଭାବ କବି ଗଙ୍ଗାଧର ମେହେର, କବିବର ରାଧାନାଥ ରାୟ, କର୍ମବୀର ଗୌରୀଶଙ୍କର ରାୟ, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଓ ଆଚାର୍ଯ୍ୟ ହରିହର ଦାସଙ୍କ ପରି ଆହୁରି ଅନେକ ନମସ୍ୟଙ୍କ ଅବଦାନକୁ ଏହି ଅବସରରେ ଆମେ ସ୍ମରଣ କରୁଛୁ । ସେମାନଙ୍କର ଅସୀମ ତ୍ୟାଗ, ଅଧ୍ୟବସାୟ, ନିଷ୍ଠା ଓ ଜାତୀୟତାର ସୁଫଳ ହେଉଛି ଆମର ବହୁ କଷ୍ଟଲବ୍ଧ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ।

ଓଡ଼ିଶାର ଗୌରବମୟ ଇତିହାସ ସର୍ବଦା ଆମ ପାଇଁ ସ୍ମରଣୀୟ ଓ ପ୍ରେରଣାଦାୟକ ହୋଇଛି । ଓଡ଼ିଆମାନଙ୍କର ବୀରତ୍ୱ, ପରିଶ୍ରମ ଓ ସଂସ୍କୃତିସଂପନ୍ନ ସର୍ବଜନବିଦିତ । ଦିନ ଥିଲା, ପ୍ରାଚୀନ କଳିଙ୍ଗର ଭୌଗୋଳିକ ପରିସୀମା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଓଡ଼ିଶାର ଶିଳ୍ପୀମାନଙ୍କର ନିପୁଣ କଳାକାରିଗରୀ କୌଶଳ ଏବଂ ବଣିକମାନଙ୍କର ସମୃଦ୍ଧ ନୌବାଣିଜ୍ୟ ପରମ୍ପରା ପ୍ରାଚୀନ ଓଡ଼ିଶାକୁ ପରିପୁଷ୍ଟ କରିଥିଲା । ଆଜି ଓଡ଼ିଶାର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ ସାର୍ବଜନୀନ ଧର୍ମଧାରାକୁ ଅନୁପ୍ରାଣିତ କରିଛନ୍ତି । ଆମ ରାଜ୍ୟର ସବୁଜିମା ପରିପୂର୍ଣ୍ଣ

ବନାନୀ, ପର୍ବତ, ନଦନଦୀ, ମନ୍ଦିର, ପର୍ଯ୍ୟଟନ ବିଭବ, ପର୍ଯ୍ୟାପ୍ତ ଖଣିଜ ସଂପଦ ଓ ସୁଦୀର୍ଘ ବେଳାଭୂମି ସମସ୍ତଙ୍କୁ ଆକୃଷ୍ଟ କରିଛି । ଓଡ଼ିଶୀ ନୃତ୍ୟ-ସଂଗୀତ, ହସ୍ତତନ୍ତ ଓ ତାରକସି କାରୁକଳା ସମଗ୍ର ବିଶ୍ୱକୁ ଚମତ୍କୃତ କରିଛି । ଭାରତର ସାମାଜିକ-ସାଂସ୍କୃତିକ-ଅର୍ଥନୈତିକ ମହାସ୍ରୋତକୁ ଓଡ଼ିଶାର ଅବଦାନ ଅତୁଳନୀୟ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ଆନ୍ଦୋଳନ ସମୟରେ ଆମ ପୂର୍ବପୁରୁଷମାନେ ଦୁଇଟି ଆହ୍ୱାନର ସମ୍ମୁଖୀନ ହୋଇଥିଲେ । ଓଡ଼ିଆଙ୍କର ଆତ୍ମ ପରିଚିତିର ପ୍ରତିଷ୍ଠା ଓ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି । ଆଜି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ୮ ଦଶନ୍ଧି ପରେ ଆମର ଆତ୍ମ ପରିଚିତି ଶକ୍ତିଶାଳୀ ଓ ସମୃଦ୍ଧ ହୋଇଛି । ଆମ ରାଜ୍ୟର ବିଭିନ୍ନ କ୍ଷେତ୍ରରେ ବ୍ୟାପକ ଉନ୍ନତି ସାଧିତ ହୋଇଛି । ସବୁ କ୍ଷେତ୍ରରେ ରାଜ୍ୟର ପ୍ରତିଷ୍ଠା ଓ ପରିଚିତି ବଢ଼ିଛି ।

ପ୍ରାକୃତିକ ବିପର୍ଯ୍ୟୟ ଓଡ଼ିଶାର ଚିର ସହଚର । ଏହାର ମୁକାବିଲା କ୍ଷେତ୍ରରେ ଆମର ଦକ୍ଷତା ଆଜି ଅନ୍ତର୍ଜାତୀୟ ସ୍ତରରେ ସ୍ୱୀକୃତି ଲାଭ କରିଛି । ସଂପ୍ରତି ଗତ ଏକ ବର୍ଷ ହେଲା ସାରା ବିଶ୍ୱ ଏକ ଅଭୂତପୂର୍ବ ସଙ୍କଟ ମଧ୍ୟ ଦେଇ ଗତି କରୁଛି । ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ସମୟୋପଯୋଗୀ ପଦକ୍ଷେପ, ଆମର ବିପର୍ଯ୍ୟୟ ପ୍ରସ୍ତୁତି ଓ ଜନସାଧାରଣଙ୍କ ସହଯୋଗ ଯୋଗୁଁ ଆମେ ଅସାଧାରଣ କୋଭିଡ-୧୯ ମହାମାରୀକୁ ସଫଳତାର ସହିତ ମୁକାବିଲା କରିପାରିଛୁ । ରାଜ୍ୟ ସରକାରଙ୍କ କୋଭିଡ଼ ଟିକାକରଣ କାର୍ଯ୍ୟକ୍ରମ ଆଶାତୀତ ସଫଳତା ହାସଲ କରିଛି । କିନ୍ତୁ ଏବେବି କରୋନା ସଂପୂର୍ଣ୍ଣ ଦୂରେଇ ଯାଇନି । ଏଣୁ ମାସ୍କ ପିନ୍ଧିବା, ସାମାଜିକ ଦୂରତ୍ୱ ରଖିବା ସହ ରାଜ୍ୟ ସରକାର ଜାରି କରିଥିବା କୋଭିଡ଼ ମାର୍ଗଦର୍ଶିକା ଓ ନିୟମକୁ କଡାକଡି ଅନୁପାଳନ କରିବାକୁ ମୁଁ ସମସ୍ତଙ୍କୁ ନିବେଦନ କରୁଛି ।

ଏହା ଆମ ପାଇଁ ଆଶ୍ୱାସନାର କଥା ଯେ, କରୋନା ମହାମାରୀର ପ୍ରଭାବ ସତ୍ତ୍ୱେ ଓଡ଼ିଶାର ଆର୍ଥିକ ସ୍ଥିତି ଦେଶର ଅନ୍ୟ ରାଜ୍ୟମାନଙ୍କଠାରୁ ଭଲ ସ୍ଥିତିରେ ରହିଛି । ମହାମାରୀ ସତ୍ତ୍ୱେ ଓଡ଼ିଶା ଦେଶର ଏକ ପ୍ରମୁଖ ପୁଞ୍ଜି ନିବେଶ କ୍ଷେତ୍ର ହୋଇପାରିଛି । ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ବଳିଷ୍ଠ ନେତୃତ୍ୱରେ ରାଜ୍ୟରେ ସ୍ୱାସ୍ଥ୍ୟ ସେବା, ଶିକ୍ଷା, କୃଷି, ଶିଳ୍ପ, ଜଳସେଚନ, ମହିଳା ସଶକ୍ତିକରଣ, କ୍ରୀଡା, ସାମାଜିକ ନିରାପତ୍ତା ଆଦି ବିଭିନ୍ନ କ୍ଷେତ୍ରରେ ବିକାଶ ପ୍ରତି ଗୁରୁତ୍ୱ ଦିଆଯାଉଛି । ରାଜ୍ୟ ସରକାର ରାଜ୍ୟର ଐତିହ୍ୟ ସଂରକ୍ଷଣ ଏବଂ ବିକାଶକୁ ସର୍ବୋଚ୍ଚ ପ୍ରାଥମିକତା ଦେଇଛନ୍ତି । ସାରା ବିଶ୍ୱରେ ଆମ ସଂସ୍କୃତିର ପ୍ରସାର ପାଇଁ ଆମେ ସମସ୍ତେ ଏକାଠି କାମ କରିବା ପାଇଁ ଆହ୍ୱାନ ରହିଛି । ସାଂସ୍କୃତିକ ଐତିହ୍ୟ ଓ ପର୍ଯ୍ୟଟନସ୍ଥଳୀ ନିକଟରେ ଉତ୍ତମ ସୁବିଧାସୁଯୋଗର ବିକାଶ ସାରା ବିଶ୍ୱର ବହୁ ତୀର୍ଥଯାତ୍ରୀ ଓ ପର୍ଯ୍ୟଟକ ଆଗମନକୁ ନିଶ୍ଚିତ କରିବା ସଙ୍ଗେ ସଙ୍ଗେ ଆମ ସଂସ୍କୃତିର ବିକାଶ ସହ ଅର୍ଥନୀତିକୁ ସମୃଦ୍ଧ କରିବ । ଆମର ଯୋଗ୍ୟ, ଦକ୍ଷ ଓ କୁଶଳୀ ମାନବ ସମ୍ବଳ 'ସ୍କିଲ୍‌ଡ ଇନ୍ ଓଡ଼ିଶା' ବ୍ରାଣ୍ଡ ଭାବେ ବିଶ୍ୱରେ ଆଦୃତ ହୋଇଛି । ସବୁ କ୍ଷେତ୍ରରେ ଉନ୍ନତି ପାଇଁ ଭିତ୍ତିଭୂମିର ବିକାଶ ଉପରେ ପ୍ରାଥମିକତା ଆମ ପାଇଁ ଅନେକ ନୂତନ ସମ୍ଭାବନା ଆଣିଦେଇଛି ।

ଆମ ଓଡ଼ିଆ ଭାଷା ଏବଂ ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟ ମାନ୍ୟତା ମିଳିଛି, ଯାହା ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ଗୌରବର କଥା । ଦିନ ଥିଲା, ପୁରୀ ଜିଲ୍ଲା ସତ୍ୟବାଦୀର ବକୁଳ ବନ ବିଦ୍ୟାଳୟ ଶିକ୍ଷା କ୍ଷେତ୍ରରେ ଏକ ଆଦର୍ଶ ପୀଠ

ଭାବେ ପ୍ରସିଦ୍ଧି ଲାଭ କରିଥିଲା । ୩ ବର୍ଷ ପୂର୍ବେ ମାନ୍ୟବର ମୁଖ୍ୟମନ୍ତ୍ରୀ ଏହି ବକୁଳ ବନ ବିଦ୍ୟାଳୟ ନିକଟରେ ଓଡ଼ିଆ ବିଶ୍ୱବିଦ୍ୟାଳୟ ସ୍ଥାପନ ପାଇଁ ଯେଉଁ ଯୁଗାନ୍ତକାରୀ ନିଷ୍ପତ୍ତି ନେଇଥିଲେ, ଆଜି ଏହାକୁ ଫଳପ୍ରସୂ କରିବା ପାଇଁ ନିକଟରେ ଏହାର ଗଠନ ଡିଜାଇନ୍‌କୁ ଅନୁମୋଦନ କରାଯାଇଛି । ଏହି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲେ ଆମ ଓଡ଼ିଆ ଭାଷାର ଉନ୍ନତି ସହିତ ଓ ପଞ୍ଚସଖାଙ୍କ ପ୍ରତି ଏହା ହେବ ପ୍ରକୃଷ୍ଟ ଶ୍ରଦ୍ଧାଞ୍ଜଳି ।

ନିକଟରେ ଆମେ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ୧୦୫ ତମ ଜନ୍ମବାର୍ଷିକୀ ପାଳନ କରିଛେ । ଦେଶର ସ୍ୱାଧୀନତା ସଂଗ୍ରାମଠାରୁ ଆରମ୍ଭ କରି ଓଡ଼ିଶାର ପ୍ରଗତିରେ ବିଜୁବାବୁଙ୍କ ଅବଦାନ, ତାଙ୍କର ଓଡ଼ିଶାର ବିକାଶ ପାଇଁ ସ୍ୱପ୍ନ, ସାଧନା, ଅନନ୍ୟ ସ୍ମୃତି ଓ କୀର୍ତ୍ତି ଚିରକାଳ ସମୁଜ୍ଜ୍ୱଳ ହୋଇ ରହିଛି । ତାଙ୍କର ଆଦର୍ଶ ଓ ଚିନ୍ତାଧାରାକୁ ପାଥେୟ କରି ଆଜି ଆମର ପ୍ରିୟ ମୁଖ୍ୟମନ୍ତ୍ରୀ ଲୋକମାନଙ୍କୁ ସର୍ବାଗ୍ରେ ରଖି ଓଡ଼ିଶାର ସାମଗ୍ରିକ ଉନ୍ନତି ପାଇଁ ଯେପରି ଗୋଟିକ ପରେ ଗୋଟିଏ ପାହାଚ ଅତିକ୍ରମ କରି ଆମ ରାଜ୍ୟକୁ ବିକାଶର ଶୀର୍ଷତର ସୋପାନରେ ପହଁଚାଇବାରେ ପ୍ରୟାସ କରିଚାଲିଛନ୍ତି, ତାହା ଅତ୍ୟନ୍ତ ପ୍ରଶଂସନୀୟ ।

ସେହିପରି ଏ ବର୍ଷ ଆମେ ଜାତିର ପିତା ମହାତ୍ମା ଗାନ୍ଧୀଙ୍କର ଓଡ଼ିଶାକୁ ପ୍ରଥମ ଆଗମନର ଶତବାର୍ଷିକୀ ପାଳନ କରୁଛୁ । ଓଡ଼ିଶାକୁ ଗାନ୍ଧିଜୀ ପ୍ରଥମେ ୧୯୨୧ ମସିହା ମାର୍ଚ୍ଚ ୨୩ ତାରିଖରେ ଓ ୧୯୪୬ ମସିହା ମଧ୍ୟରେ ୮ ଥର ଓଡ଼ିଶା ଆସିଥିଲେ । ଓଡ଼ିଶା ପ୍ରତି ତାଙ୍କର ଥିଲା ଗଭୀର ଶ୍ରଦ୍ଧା, ସହାନୁଭୂତି ଏବଂ ଆନ୍ତରିକତା । ଗାନ୍ଧିଜୀ ଓଡ଼ିଆମାନଙ୍କର ସ୍ୱାଭିମାନ ଓ ସ୍ୱାର୍ଥରକ୍ଷା ପାଇଁ ବ୍ରତୀ ଥିଲେ । ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶ ଗଠନ ପାଇଁ ସେ ସମ୍ବେଦନଶୀଳ ଥିଲେ । ଓଡ଼ିଶା ଥିଲା ତାଙ୍କର ସ୍ୱାଧୀନ ଭାରତ ନିର୍ମାଣର ପ୍ରମୁଖ ପ୍ରୟୋଗଶାଳା । ଆଜି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ୮୫ ବର୍ଷ ପୂର୍ତ୍ତି ଓ ଗାନ୍ଧିଜୀଙ୍କ ପ୍ରଥମ ଓଡ଼ିଶା ଆଗମନର ୧୦୦ ବର୍ଷ ପୂର୍ତ୍ତି ପାଳନ ପରିପ୍ରେକ୍ଷୀରେ ଏହି ମହାପୁରୁଷଙ୍କ ପ୍ରତି ଆମେ ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛୁ ।

କରୋନା ମହାମାରୀକୁ ମୁକାବିଲା କରି ଏକ ସଶକ୍ତ ଓ ସମୃଦ୍ଧ ଓଡ଼ିଶା ଗଠନରେ ଭାଗିଦାରୀ ହୋଇ ସ୍ୱତନ୍ତ୍ର ଓଡ଼ିଶା ଗଠନରେ ବରପୁତ୍ରମାନଙ୍କର ସ୍ୱପ୍ନକୁ ସାକାର କରିବାକୁ ମୁଁ ସମସ୍ତଙ୍କୁ ଆହ୍ୱାନ କରୁଛି ।

**ବନ୍ଦେ ଉତ୍କଳ ଜନନୀ ।**

# ସମ୍ପାଦକୀୟ



ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ସକାଶେ ଜନ ଆନ୍ଦୋଳନ, ବହୁ ମନୀଷୀ ଓ ଚିନ୍ତାନାୟକମାନଙ୍କର ଅବିରତ ପ୍ରଚେଷ୍ଟା ଓ ଦେଶ ଜାତିପ୍ରୀତିର ଫଳଶ୍ରୁତିସ୍ୱରୂପ ୧୯୩୬ ମସିହା ଅପ୍ରେଲ ପହିଲାରେ ଭାଷାଭିତ୍ତିରେ ଗଢି ଉଠିଥିଲା ଦେଶର ପ୍ରଥମ ରାଜ୍ୟ ଓଡ଼ିଶା । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିବା ଯୋଗଜନ୍ମା ମନୀଷୀଗଣଙ୍କ ମଧ୍ୟରେ ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ବୀର ସୁରେନ୍ଦ୍ର ସାଏ, ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ବୈକୁଣ୍ଠନାଥ ଦେ, ପଣ୍ଡିତ ନୀଳକଣ୍ଠ ଦାସ, ବ୍ୟାସକବି ଫକୀର ମୋହନ, କବିବର ରାଧାନାଥ ରାୟ, ଗଙ୍ଗାଧର ମେହେର, ମା' ରମାଦେବୀଙ୍କ ପରି ଅସଂଖ୍ୟ ଓଡ଼ିଆ ପ୍ରାଣ ଓ ଯୁଗପୁରୁଷଙ୍କୁ ଉତ୍କଳ ଦିବସ ଉପଲକ୍ଷେ ବିନମ୍ର ଶ୍ରଦ୍ଧାଞ୍ଜଳି ଜଣାଉଛୁ ।

ଦିନ ଥିଲା ପ୍ରାଚୀନ ଓଡ଼ିଶାର ସୀମା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା । ଓଡ଼ିଶାର ସାହସୀ ବଣିକ ଜାତି ଜାଭା, ସୁମାତ୍ରା, ବାଲି ପ୍ରଭୃତି ସ୍ଥାନକୁ ନୌଯାତ୍ରା କରି ସେଠାରେ ବାଣିଜ୍ୟ ସହିତ ଏ ରାଜ୍ୟକୁ ସମୃଦ୍ଧଶାଳୀ କରିଥିଲେ । 'କଳିଙ୍ଗାଃ ସାହସିକାଃ' ରୂପେ ପରିଚିତ ବୀର ଓ ଦୁର୍ଦ୍ଧର୍ଷ ଜାତି ଓଡ଼ିଆମାନେ ସମଗ୍ର ଦେଶରେ ବିଭିନ୍ନ କ୍ଷେତ୍ରରେ ସୁନାମ ଅର୍ଜନ କରିଥିଲେ । ଓଡ଼ିଶାର କଳା, ସଂସ୍କୃତି, ଐତିହ୍ୟ, ଭାସ୍କର୍ଯ୍ୟ ଏବଂ ସାହିତ୍ୟର ଉନ୍ନତି ଚରମ ସୀମାରେ ଉପନୀତ ହୋଇଥିଲା । ମାତ୍ର କାଳଚକ୍ର ତଳେ ସେହି ଗୌରବମୟ ଐତିହ୍ୟ ପେଷି ହୋଇଯାଇଥିଲା ।

ଓଡ଼ିଶା ଥିଲା ଶେଷ ପ୍ରଦେଶ, ଯାହା ୧୮୦୩ ମସିହାରେ ବ୍ରିଟିଶ ଶାସନାଧୀନ ହୋଇଥିଲା । କିନ୍ତୁ ଏହା ପ୍ରଥମ ପ୍ରଦେଶ ଥିଲା, ଯେଉଁଠି ୧୮୧୭ ମସିହା ପାଇକ ବିଦ୍ରୋହ ରୂପକ ଭାରତୀୟ ଜାତୀୟତାବାଦୀ ଆନ୍ଦୋଳନର ସୂତ୍ରପାତ ଘଟିଥିଲା । ଏହି ଆନ୍ଦୋଳନ ସାରା ଦେଶରେ ଜାତୀୟ ସଚେତନତାର ମଞ୍ଜି ବୁଣିବାରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲା । ବ୍ରିଟିଶ ଶାସକ ଏହି ଓଡ଼ିଶା ଭୂଖଣ୍ଡକୁ ସ୍ୱାର୍ଥଭିତ୍ତିରେ ଭାଗ ଭାଗ କରି ବିଭିନ୍ନ ପ୍ରଦେଶ

ଅଧୀନରେ ରଖିବା ସହ ଏହି ଭୂଖଣ୍ଡକୁ ଦୁର୍ବଳ କରିଦେବାକୁ ଚକ୍ରାନ୍ତ କରିଥିଲେ । ତେବେ ସେ ଯାହାହେଉ, ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡିକୁ ଏକତ୍ରିତ କରି ଗୋଟିଏ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ଦାବି ଜୋର୍ ଧରିଥିଲା । ଊନବିଂଶ ଶତାବ୍ଦୀର ଶେଷ ଆଡକୁ ଏହି ଓଡ଼ିଆ ଆନ୍ଦୋଳନ ତୀବ୍ରତର ହୋଇଥିଲା । ବହୁ ବିଶିଷ୍ଟ ନେତୃବୃନ୍ଦଙ୍କ ଅକ୍ଳାନ୍ତ ପରିଶ୍ରମ ଯୋଗୁଁ ୧୯୩୬ ମସିହା ଅପ୍ରେଲ ପହିଲାରେ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ସ୍ୱପ୍ନ ସାକାର ହୋଇଥିଲା ।

ଉଭୟ ଦକ୍ଷ ମାନବ ସମ୍ବଳ ଏବଂ ପ୍ରାକୃତିକ ସମ୍ବଳରେ ଭରା ଆମର ଏ ରାଜ୍ୟ ଓଡ଼ିଶା । ଓଡ଼ିଶାର ସମୃଦ୍ଧ ଐତିହାସିକ ଓ ସାଂସ୍କୃତିକ ପରମ୍ପରା ଏହାର ସର୍ବାଙ୍ଗୀନ ବିକାଶ ନିମନ୍ତେ ଉପଯୁକ୍ତ ଭିତ୍ତିଭୂମି ଯୋଗାଇ ଦେଇଥାଏ । ଏହାର ଅନୁକୂଳତମ ଜଳବାୟୁ, ଉର୍ବର ମୃତ୍ତିକା, ଖଣିଜ ସମ୍ପଦ, ସାମୁଦ୍ରିକ ବେଳାଭୂମି ଏବଂ ପରିଶ୍ରମୀ ଜନଗଣ ଏହି ପ୍ରଦେଶର ବିକାଶ ନିମନ୍ତେ ଯଥେଷ୍ଟ ଅବଦାନ ରଖିଥାନ୍ତି । ବିଗତ ଦୁଇ ଦଶନ୍ଧି ମଧ୍ୟରେ ଓଡ଼ିଶା ଏହାର ଗୌରବ ବଜାୟ ରଖିବା ସହ ବିଭିନ୍ନ କ୍ଷେତ୍ରରେ ଅନ୍ୟ ପ୍ରଦେଶଠାରୁ ଆଗରେ ରହିଛି ।

ଓଡ଼ିଶା ଦିବସ ପାଳନର ଏହି ପବିତ୍ର ଅବସରରେ ଆମେ ଉତ୍କଳମାତାର ସେବାରେ ନିଜକୁ ନିୟୋଜିତ କରିପାରିଲେ ଏହା ହିଁ ହେବ ଆମ ପୂର୍ବସୂରୀମାନଙ୍କ ପ୍ରତି ଯଥାର୍ଥ ଶ୍ରଦ୍ଧାଞ୍ଜଳି ଓ ଉକ୍ତ ଦିବସ ପାଳନର ଯଥାର୍ଥତା । ଆସନ୍ତୁ, ଗର୍ବିତ ଓଡ଼ିଆଭାବେ ଆମେ ଓଡ଼ିଶା ମାଟିର ସେବାରେ ସମୟ ଦେଇ ଏହାକୁ ଏକ ଶ୍ରେଷ୍ଠ, ସମୃଦ୍ଧ ଓ ଶାନ୍ତିପ୍ରିୟ ରାଜ୍ୟ ରୂପେ ଗଢ଼ି ତୋଳିବା ।

**ବନ୍ଦେ ଉତ୍କଳ ଜନନୀ ।**

ଲେଲିନ୍ ମହାନ୍ତି

ସମ୍ପାଦକ

# ନୈସର୍ଗିକ ସୌନ୍ଦର୍ଯ୍ୟର ପରିଭାଷା : ଓଡ଼ିଶା



ଏହି ରାଜ୍ୟର ଅସାଧାରଣ ଲୋକମାନଙ୍କର ଅଖଣ୍ଡ ଇତିହାସର ବାର୍ତ୍ତା ଖ୍ରୀଷ୍ଟପୂର୍ବ ବହୁ ଶତାବ୍ଦୀ ଧରି ପ୍ରବହମାନ ହୋଇଆସୁଛି । ଏହି ଗୌରବୋଜ୍ଜ୍ୱଳ ଇତିହାସର ସ୍ୱାକ୍ଷର ଅନେକ କୀର୍ତ୍ତିରାଜିରେ ପ୍ରତିଫଳିତ ହେଉଛି ଏବଂ ସମୟ ଅତିକ୍ରାନ୍ତ ହେବା ସହିତ ରାଜ୍ୟର ଅଧିକାଂଶ ଭାଗରେ ଉତ୍ଖନନ ଦ୍ୱାରା ଏଭଳି ଅନେକ ସ୍ଥାନ ଲୋକଲୋଚନକୁ ଆସିପାରିଛି । ଏସବୁ କୀର୍ତ୍ତିରାଜି ଯେକୌଣସି ମାନର ଏକ ସମୃଦ୍ଧ ସଭ୍ୟତାର ଅବସ୍ଥିତି ସମ୍ପର୍କରେ ଆମ୍ଭମାନଙ୍କୁ ଅବଗତ କରାଏ । ଏଭଳି ଉନ୍ନତ ଓ ବର୍ଣ୍ଣିଳ ସଂସ୍କୃତି କ୍ୱଚିତ୍ ପରିଦୃଷ୍ଟ ହୁଏ । ଧର୍ମ ଓ ଦର୍ଶନ ଆଦିବାସୀ ଓ ଆର୍ଯ୍ୟ ଧର୍ମ, ବୁଦ୍ଧ ଓ ଜୈନ ଧର୍ମ, ଇସ୍‌ଲାମ ଓ ଖ୍ରୀଷ୍ଟଧର୍ମ ଆମ ଇତିହାସରେ ଏସବୁ ରହି ଆସିଛି ଏବଂ ଆଜି ପର୍ଯ୍ୟନ୍ତ ଏଗୁଡ଼ିକ ଏକତ୍ରିତ ରହି ଏ ମାଟିର ଲୋକମାନଙ୍କର ଧର୍ମୀୟ ସହିଷ୍ଣୁତା ବିଷୟରେ ପ୍ରମାଣିତ କରୁଛି । କଳା ଓ ସ୍ଥାପତ୍ୟ କ୍ଷେତ୍ରରେ ମନ୍ଦିରଗୁଡ଼ିକ ମଧ୍ୟରେ ଶତାବ୍ଦୀ ଶତାବ୍ଦୀର ଇତିହାସ ବଞ୍ଚି ରହିଛି ଏବଂ ଏଯାବତ୍ ଏଗୁଡ଼ିକ ପ୍ରତି ରୂପ ଭିତରେ ବଞ୍ଚି ରହିଛି, ଯାହାକି ଏହି ପୁରାତନ କଳାର ପୃଷ୍ଠପୋଷକମାନଙ୍କର ବଂଶଧରମାନଙ୍କୁ ଜୀବିକା ନିର୍ବାହ ପାଇଁ ପଥ ପ୍ରଦର୍ଶନ କରୁଛି ।

ସର୍ବ ଭାରତୀୟ ସଂସ୍କୃତିର ମୁଖ୍ୟସ୍ରୋତ ମଧ୍ୟରେ ଶତାବ୍ଦୀ ଶତାବ୍ଦୀ ଧରି ଓଡ଼ିଶା ତା'ର ସ୍ୱକୀୟ ସାଂସ୍କୃତିକ ପରିଚୟ ବଞ୍ଚାଇ ରଖିପାରିଛି । ଏହାର ସାମୂହିକ ପ୍ରଥା ଓ ରୀତିନୀତିଗୁଡ଼ିକ କୃଷି ପଞ୍ଜିକା ଉପରେ ପର୍ଯ୍ୟବସିତ ପର୍ବପର୍ବାଣିର ଏକ ଲମ୍ବା ସୂଚୀ ମଧ୍ୟରେ ପରିପ୍ରକାଶ ହୋଇଛି । ଏଠାରେ ଈଶ୍ୱର ମାନବୀୟ ଏବଂ ସେମାନେ ଜଗନ୍ନାଥ, ଲିଙ୍ଗରାଜ ଭଳି ବୃହତ୍ ମନ୍ଦିରରେ ରୁହନ୍ତୁ ବା କ୍ଷୁଦ୍ର ପୀଠରେ ରହିଥାଆନ୍ତୁ, ସେମାନେ ପର୍ବପର୍ବାଣିରେ ଭକ୍ତମାନଙ୍କୁ ଭେଟିବାକୁ ମନ୍ଦିରରୁ ବାହାରି ଆସନ୍ତି । ଏଠାରେ ଥିବା ବହୁ ସଂଖ୍ୟାରେ ମନ୍ଦିର ସର୍ବସାଧାରଣଙ୍କର ଧର୍ମୀୟ ଭାବନାର ସଂକେତ ଦିଏ, ଯେଉଁମାନେ କି ଏବେ ବି

ପ୍ରତ୍ୟେକ ନୂତନ ବସତିରେ ସ୍ୱେଚ୍ଛାକୃତ ଭାବେ ଛୋଟ ଛୋଟ ମନ୍ଦିର ତୋଳାଇବାରେ ଅହରହ ଉଦ୍ୟମରତ ଶିଳ୍ପୀମାନେ ଘରେ ଏବଂ ମନ୍ଦିରମାନଙ୍କରେ ପର୍ବପର୍ବାଣି ଦିନରେ ଆବଶ୍ୟକ ପଡୁଥିବା ସାଜସଜ୍ଜା ନିମିତ୍ତ ଉପକରଣଗୁଡ଼ିକୁ ତିଆରି କରିବାରେ ବ୍ୟସ୍ତ ରୁହନ୍ତି, ଯାହାକି ସେମାନଙ୍କୁ ବଞ୍ଚିବାର ମାଧ୍ୟମ ଯୋଗାଇ ଦେବା ସଙ୍ଗେ ସଙ୍ଗେ ସେମାନଙ୍କୁ କଳାତ୍ମକ କାର୍ଯ୍ୟ କରିବା ପାଇଁ ସୁଯୋଗ ଯୋଗାଇ ଦିଏ । ସେମାନଙ୍କ ଦ୍ୱାରା ପ୍ରସ୍ତୁତ ବାନ୍ଧ ଲୁଗା ବା ଚାନ୍ଦୁଆ କାମ, ଟେରାକୋଟା, ଲାଖ, ପିତ୍ତଳ, ତାରକସୀ ଗହଣା ସାମଗ୍ରୀ ଅଥବା ପଟ୍ଟଚିତ୍ରରେ ଦେବତା ଏଗୁଡ଼ିକ ଓଡ଼ିଶା ଲୋକମାନଙ୍କ ଦୈନନ୍ଦିନ ଜୀବନକୁ କଳାତ୍ମକ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଦେଶର ଅନ୍ୟ ସ୍ଥାନରେ ଏପରିକି ବିଦେଶରେ ବ୍ୟବସାୟ ବାଣିଜ୍ୟ କରିବାରେ ମାର୍ଗ ପ୍ରଦର୍ଶନ କରେ । ନୌବାଣିଜ୍ୟରେ ଏକଦା ସମୃଦ୍ଧି ଲାଭ କରିଥିବା ଏହି ରାଜ୍ୟ ଏ କଥାର ପ୍ରମାଣ ଦିଏ ।

ତାଳପତ୍ର ପୋଥି ଏବଂ ମନ୍ଦିର ପାତ୍ରରେ ପ୍ରସ୍ତର ଖୋଦେଇରେ ପ୍ରଦର୍ଶିତ ହୋଇଥିବା ବିଭିନ୍ନ ମନୋରଞ୍ଜନ ଯଥା– ସଂଗୀତ, ନୃତ୍ୟ, ନାଟକ ଏବଂ ସାହିତ୍ୟ ଉତ୍କର୍ଷତାର ଉଚ୍ଚକୋଟୀର ପରମ୍ପରାର ପ୍ରମାଣ ଦିଏ । ପୂର୍ବରୁ ପ୍ରଚଳିତ ଲୋକକଳା ଯଥା– ସଂଗୀତ, ଗୀତ, ନୃତ୍ୟ, ନାଟକ ପରବର୍ତ୍ତୀ ପର୍ଯ୍ୟାୟରେ ଶାସ୍ତ୍ରୀୟ ସଂଗୀତ, ଗୀତ, ନୃତ୍ୟ, ନାଟକ ଏବଂ ସାହିତ୍ୟକୁ ପରିବର୍ତ୍ତିତ ହେଲା ଏବଂ ଏଗୁଡ଼ିକ ଏବେ ମଧ୍ୟ କାଳର କରାଳ ଗତି ଦେଇ ତିଷ୍ଠି ରହିଛି ଏବଂ ସ୍ୱାଧୀନୋତ୍ତର କାଳରେ ଅଧିକ ପରିପୁଷ୍ଟ ଓ ଉନ୍ନତ ହୋଇଛି । ଏହା କହିଲେ ଅତିରଞ୍ଜିତ ହେବନାହିଁ ଯେ ଓଡ଼ିଆ ଲୋକଙ୍କ ଜୀବନର ପ୍ରତ୍ୟେକ ସ୍ତର ଅତ୍ୟଧିକ ଭାବେ ଉଚ୍ଚକୋଟୀର କଳାତ୍ମକ ସମ୍ବେଦନଶୀଳତାର ପରିଚୟ ଦେଉଥିଲା ।

ଓଡ଼ିଶା ହେଉଛି ଏକ ଉନ୍ନତ ଏବଂ ବିବିଧ କଳାତ୍ମକ କାର୍ଯ୍ୟଶୈଳୀର ରାଜ୍ୟ । ଏହାର କଳା ସଂସ୍କୃତି ଏକ ସୁଦୀର୍ଘ ଐତିହାସିକ ପ୍ରକ୍ରିୟାର ପରିଣାମ, ଯେଉଁଥିରେ ଆଧ୍ୟାତ୍ମିକ, ଦାର୍ଶନିକ ଏବଂ ମାନବବାଦୀ ଭାବଧାରା ସମ୍ମିଳିତ ହୋଇ ଏକ ସାଂସ୍କୃତିକ ଓ ସଭ୍ୟ ସମାଜର ସର୍ବଶ୍ରେଷ୍ଠ ଫଳ ପ୍ରଦାନ କରିଛି । ଓଡ଼ିଶାର ସାଂସ୍କୃତିକ ଐତିହ୍ୟ ଏହାର ବହୁବିଧ କଳା ଜରିଆରେ ପ୍ରସ୍ଫୁଟିତ ହୋଇଛି । ଲୋକମାନଙ୍କର ସାମାଜିକ ଓ ଧାର୍ମିକ କାର୍ଯ୍ୟକଳାପରେ ସଂସ୍କୃତି ନୂତନ ଉଦ୍ଦୀପନା ଆଣେ । ଏହା ଦୈନନ୍ଦିନ ଜୀବନରେ ପ୍ରେରଣାର ଅନ୍ତଃସ୍ରୋତ ଭାବେ କାମ କରେ ଏବଂ ମାନବୀୟ ସମ୍ପର୍କ ଓ ବିଶ୍ୱବ୍ୟାପୀ ଐକ୍ୟ ସ୍ଥାପନ କରିବାରେ ଏକ ଶକ୍ତିଶାଳୀ ସେତୁ ରୂପେ କାର୍ଯ୍ୟ କରେ ।

ଚିତ୍ରକଳା, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ହସ୍ତକଳା, ସଂଗୀତ ଏବଂ ନୃତ୍ୟ କ୍ଷେତ୍ରରେ ଓଡ଼ିଶାର ଏକ ସ୍ୱତନ୍ତ୍ର ପରମ୍ପରା ରହିଛି । ଓଡ଼ିଶା ଚିତ୍ରକଳାର ୩ ଗୋଟି ସ୍ରୋତ ରହିଛି, ଯାହାକି ସାମଗ୍ରିକଭାବେ ଏହାର ସ୍ୱତନ୍ତ୍ର ଦିଗ ପ୍ରଦର୍ଶିତ କରାଏ । ଏଗୁଡ଼ିକ ହେଉଛି –ଜନଜାତି, ଲୋକକଳା ଏବଂ ଶାସ୍ତ୍ରୀୟ । ଏହି ୩ ଗୋଟି ସ୍ରୋତ ମଧ୍ୟରେ ନିୟମିତ ଭାବେ ଚିନ୍ତାଧାରାର ଆଦାନ ପ୍ରଦାନ ହୋଇଥାଏ ଏବଂ ଏହାଦ୍ୱାରା ଓଡ଼ିଶୀ କଳାର ଭଣ୍ଡାର ଋଦ୍ଧିମନ୍ତ ହୁଏ ।

## ଝୋଟି, ଚିତା, ମୁରୁଜ

ଓଡ଼ିଶାର ଲୋକକଳା ସାମାଜିକ ଏବଂ ଧର୍ମୀୟ କାର୍ଯ୍ୟକଳାପ ଉପରେ ପର୍ଯ୍ୟବସିତ । ମାର୍ଗଶିର ମାସରେ ମହିଳାମାନେ ମା'ଲକ୍ଷ୍ମୀଙ୍କୁ ପୂଜା କରନ୍ତି । ଏହା ହେଉଛି ଫସଲ ଅମଳର ଋତୁ ଯେତେବେଳେ କି ଶସ୍ୟ ଅମଳ ହୋଇ ସଂରକ୍ଷିତ ରହେ । ଏହି ପବିତ୍ର ଅବସରରେ ମାଟିକାନ୍ଥ ଓ ଚଟାଣ ଉପରେ ଚାଉଳ ବଟା ବା ପିଠଉରେ ଚିତା ପଡ଼େ । ଏଗୁଡ଼ିକୁ ଝୋଟି ବା ଚିତା ବୋଲି କୁହାଯାଏ । ଏହା କେବଳ ଗୃହର ସାଜସଜ୍ଜା ନିମନ୍ତେ କରାଯାଇନଥାଏ ବରଂ ବସ୍ତୁବାଦ ଓ ରହସ୍ୟବାଦ ମଧ୍ୟରେ ସମ୍ପର୍କ ସ୍ଥାପନ କରି ଏହା ବସ୍ତୁତଃ ସାଙ୍କେତିକ ଓ ଅର୍ଥପୂର୍ଣ୍ଣ ହୋଇଥାଏ । ଲୋକ ଚିତ୍ରକଳା ପରମ୍ପରା ସେହି ପ୍ରାଚୀନ ସତେଜତାକୁ ନେଇ ଆଜି ଯାଏ ବଞ୍ଚି ରହିଛି । ଗ୍ରାମୀଣ ମହିଳାମାନେ ବର୍ଷ ତମାମ ସେମାନଙ୍କର ମନୋବାଞ୍ଛା ପୂରଣ ସକାଶେ ନାନା ପ୍ରକାର କର୍ମକର୍ମାଣୀ ପାଳନ କରନ୍ତି । ପ୍ରତ୍ୟେକ ପର୍ବ ପାଇଁ ଏକ ନିର୍ଦ୍ଦିଷ୍ଟ ଚିତା ବା ମୁରୁଜ ଅଙ୍କାଯାଏ ।

ଉଦାହରଣ ସ୍ୱରୂପ – ଲକ୍ଷ୍ମୀପୂଜାରେ ଏକ ଧାନ ବା ଚାଉଳ କେଣ୍ଡାର ଚିତ୍ର ପିରାମିଡ୍ ଭାବେ ଗୃହ ଚଟାଣ ବା କାନ୍ଥରେ ଅଙ୍କାଯାଏ । ଦୁର୍ଗାପୂଜା ସମୟରେ କାନ୍ଥରେ ଧଳା ବୁନ୍ଦା ଉପରେ ନାଲି ବୁନ୍ଦା ଚିତ୍ରିତ କରାଯାଏ । ନାଲି ଧଳା ରଙ୍ଗର ମିଶ୍ରଣ ଶିବ ଓ ଶକ୍ତି ପୂଜାକୁ ଦର୍ଶାଇ ଥାଏ । ଝୋଟି ବା ଚିତା ଅଙ୍କନ କଲାବେଳେ ଆଙ୍ଗୁଠିଗୁଡ଼ିକୁ ଚାଉଳ ବଟା ଭିତରେ ବୁଡ଼ାଇ କାନ୍ଥ ବା ଚଟାଣ ଉପରେ ସୂକ୍ଷ୍ମ ଭାବେ ନୂଆ ନୂଆ ଢାଞ୍ଚା ପ୍ରସ୍ତୁତ କରାଯାଏ । ବେଳେବେଳେ ଏକ ଛୋଟ ବାଡ଼ିର ଅଗ୍ରଭାଗରେ ଛୋଟ କପଡ଼ା ବାନ୍ଧି ଏକ ପ୍ରକାର ବ୍ରସ୍ ତିଆରି କରାଯାଏ । ଧଳା ଚାଉଳ ବଟାରେ ଏହାକୁ ବୁଡ଼ାଯାଇ କାନ୍ଥ ଉପରେ ଝୋଟି ପଡ଼େ । ହାତମୁଠା ଚାଳନା ଦ୍ୱାରା ପିଠଉ ସିଞ୍ଚନ କରି ଏକ ପ୍ରକାର ସୂକ୍ଷ୍ମ ଚିତା କାନ୍ଥ ଉପରେ ଅଙ୍କାଯାଏ, ଯାହାକି ଧାନକେଣ୍ଡା ଭଳି ପ୍ରତୀୟମାନ ହୁଏ । ବିଭିନ୍ନ ପବିତ୍ର କାର୍ଯ୍ୟ ସମ୍ପୂର୍ଣ୍ଣ କରାଯିବାବେଳେ ଚାଉଳ ରଖିବା ସ୍ଥାନ, ଘର ଠାକୁରଙ୍କ ରହିବା ସ୍ଥାନ (ବେଦୀ), ଦ୍ୱାରବନ୍ଧ ଏବଂ ବିବାହ ବେଳେ ମାଟି ଦୀପ ରହିବା ସ୍ଥାନ ପ୍ରଭୃତିରେ ଚିତା ଅଙ୍କନ କରାଯାଏ ।

ଭିନ୍ନ ଭିନ୍ନ ରଙ୍ଗର ଗୁଣ୍ଡ ବ୍ୟବହାର କରି ମୁରୁଜ ଅଙ୍କାଯାଏ । ପଥରକୁ ଚୂର୍ଣ୍ଣ କରି ଧଳା ରଙ୍ଗ ମିଳେ, ଶୁଷ୍କ ପତ୍ରରୁ ସବୁଜ ରଙ୍ଗର ଗୁଣ୍ଡ ମିଳେ, ପୋଡ଼ା ଷଢ଼େଇରୁ କଳା ରଙ୍ଗ ମିଳେ, ହଳଦୀ କିମ୍ବା ଗେଣ୍ଡୁ ଫୁଲ ପାଖୁଡ଼ାରୁ ହଳଦିଆ ରଙ୍ଗ ମିଳେ ଏବଂ ଇଟା ବା ନାଲିମାଟିରୁ ନାଲି ରଙ୍ଗ ମିଳିଥାଏ । ସାଧାରଣତଃ ପବିତ୍ର କାର୍ଯ୍ୟ କରାଯିବା ବେଳେ ମଣ୍ଡଳ ତିଆରି କରାଯିବା ପାଇଁ ମୁରୁଜର ଆବଶ୍ୟକତା ପଡ଼ିଥାଏ । ପବିତ୍ର କାର୍ତ୍ତିକ ମାସରେ ହିନ୍ଦୁନାରୀମାନେ ଉପବାସ ବ୍ରତ ରଖି ତୁଳସୀ ଚଉରା ନିକଟରେ ମୁରୁଜର ବିଭିନ୍ନ ଆକାରର ଡ଼ିଜାଇନ୍ ପ୍ରସ୍ତୁତ କରନ୍ତି । ମୁରୁଜ ପକାଇବା ପାଇଁ ଅନେକ କୌଶଳ ଓ ଅଭ୍ୟାସର ଆବଶ୍ୟକତା ପଡ଼େ । ପ୍ରାୟତଃ ମହିଳାମାନେ ନିଜର ଅନ୍ତର୍ଜାତ କୌଶଳ ଦ୍ୱାରା ମୁରୁଜକୁ ନିଜର ବୃଦ୍ଧାଙ୍ଗୁଠି ଓ ବିଶି ଆଙ୍ଗୁଠିରେ ମୁରୁଜ ଧରି ସୂକ୍ଷ୍ମାତି ସୂକ୍ଷ୍ମଭାବେ ଚଟାଣ ଉପରେ ସେଗୁଡ଼ିକୁ ପକାଇ ବିଭିନ୍ନ ରେଖା ଓ ଆକୃତି ସୃଷ୍ଟି କରନ୍ତି, ଯାହାକି ଅତ୍ୟନ୍ତ ମନଲୋଭା ଦେଖାଯାଏ ।

ଓଡ଼ିଶାର ନିପଟ ମଫସଲ ଲୋକେ ପ୍ରାୟତଃ ସେମାନଙ୍କ ଶରୀର ଉପରେ ଚିତା କୁଟାଇଥାଆନ୍ତି । ଚିତାକୁଟାକୁ କୁଟେଇ ଚିତା ମଧ୍ୟ କୁହାଯାଏ ଏବଂ ଛୁଞ୍ଚିରେ କଳାରଙ୍ଗ ବ୍ୟବହାର କରି ଚର୍ମ ଉପରେ ଫୁଟାଇ ଫୁଟାଇ ଚିତା କୁଟାଯାଏ । ସ୍ତ୍ରୀ ଲୋକ ଶରୀରରେ ଚିତାକୁଟାକୁ ପବିତ୍ରତା ଭାବେ ଗ୍ରହଣ କରିଥାନ୍ତି । କେତେକ ବିଶ୍ୱାସ କରନ୍ତି ଯେ ମୃତ୍ୟୁର ଦେବତା ଯମରାଜଙ୍କ ଦଣ୍ଡ ବିରୁଦ୍ଧରେ ଏହା ଏକ କବଚ ଭଳି । ଏହାଦ୍ୱାରା ଆତ୍ମାର ମୋକ୍ଷପ୍ରାପ୍ତି ଘଟିଥାଏ ବୋଲି ମଧ୍ୟ କୁହାଯାଏ ।

**ଆଦିବାସୀ ଚିତ୍ରକଳା**

ଓଡ଼ିଶାର ଏକ ସମୃଦ୍ଧ ଆଦିବାସୀ ସଂସ୍କୃତି ରହିଛି । ସଉରା, କନ୍ଧ ଏବଂ ସାନ୍ତାଳମାନେ ସେମାନଙ୍କ ଗୃହକୁ ବିଭିନ୍ନ ପ୍ରକାର ଫୁଲ, ପକ୍ଷୀ ଓ ଜ୍ୟାମିତିକ ଡ଼ିଜାଇନ୍‌ରେ ସଜାନ୍ତି । ସଉରା ଚିତ୍ରକଳା ଧର୍ମୀୟ ବିଶ୍ୱାସ ଦ୍ୱାରା ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଭୂତପ୍ରେତ ଓ କ୍ଷୁଦ୍ର ଦେବତାମାନଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଏହି ଚିତ୍ରକଳା ଅଭିପ୍ରେତ । ପଶୁବଳି ସମୟରେ ସଉରାମାନେ ସେମାନଙ୍କ କାନ୍ଥରେ ଅଙ୍କନ କରନ୍ତି । ଏହି ଚିତ୍ରକଳା ବିଷୟବସ୍ତୁ ସାଧାରଣତଃ ସ୍ୱପ୍ନ ଉପରେ ଆଧାରିତ । ଅନେକ ପ୍ରକାରର ବସ୍ତୁ ଯେମିତିକି ପାନିଆଠାରୁ ଆରମ୍ଭ କରି ସାଇକେଲ ପର୍ଯ୍ୟନ୍ତ ଆଧୁନିକ ସଉରା ଚିତ୍ରକଳାରେ ସ୍ଥାନିତ ହୋଇଥାଏ । କନ୍ଧମାନଙ୍କ ଚିତ୍ରକଳାରେ ଜ୍ୟାମିତିକ ସ୍ୱରୂପ ଦେଖିବାକୁ ମିଳେ । ସାନ୍ତାଳମାନେ ସେମାନଙ୍କ ଗୃହକୁ ଆଳଙ୍କାରିକ ଭାବେ ଚିତ୍ରିତ କରିଥାଆନ୍ତି ।

**ପ୍ରସ୍ତର କଳା**

ପଶ୍ଚିମାଞ୍ଚଳର ଘଞ୍ଚ ଜଙ୍ଗଲ ଅଞ୍ଚଳରେ ଚିତ୍ରିତ ପ୍ରସ୍ତର ଆଶ୍ରୟସ୍ଥଳୀ ଦେଖିବାକୁ ମିଳେ । ସମ୍ବଲପୁର ଜିଲ୍ଲାର ଉଲପଗଡ଼ ଓ ବିକ୍ରମଖୋଲ, ସୁନ୍ଦରଗଡ଼ ଜିଲ୍ଲାର ମାଣିକମାଡ଼ା ଓ ଉଷାକୋଠି, କଳାହାଣ୍ଡି ଜିଲ୍ଲାର ଗୁଡ଼ହାଣ୍ଡି ଓ ଯୋଗୀମଠ ସ୍ଥିତ ପ୍ରସ୍ତର ଆଶ୍ରୟସ୍ଥଳୀ ଏକ ପ୍ରାଚୀନ

ସଂସ୍କୃତିର ଆବିଷ୍କାର କରିବାର ଆନନ୍ଦ ପ୍ରଦାନ କରେ, ଯାହାକି ସମଗ୍ର ପୂର୍ବ ଭାରତରେ ବିରଳ । ଏସବୁ ଅଞ୍ଚଳରେ ପ୍ରାଗ୍-ଐତିହାସିକ ଚିତ୍ର ଥିବା ପ୍ରାକୃତିକ ପ୍ରସ୍ତର ଖଣ୍ଡ ଦେଖିବାକୁ ମିଳେ । କେନ୍ଦୁଝର ଜିଲ୍ଲାର ସିତାବିଞ୍ଜିଠାରେ ରାବଣ ଛତା ପ୍ରସ୍ତର ଏକ ଉଚ୍ଚକୋଟୀର ଚିତ୍ରକଳାର ନିଦର୍ଶନ । ଏଠାରେ ଏକ ରାଜା ଗୋଟିଏ ସୁସଜ୍ଜିତ ହସ୍ତୀ ଉପରେ ଆରୋହଣ ଶୋଭାଯାତ୍ରାର ଦୃଶ୍ୟ ପରିଦୃଷ୍ଟ ହୁଏ । ଅଶ୍ୱାରୋହୀ ଏବଂ ସୈନିକମାନେ ଦଣ୍ଡ ଓ ରଣପତାକା ଧରି ଯାଉଥିବାବେଳେ ଏକ ମହିଳା ସେବିକା ସେମାନଙ୍କ ପଛେ ପଛେ ଯାଉଥିବାର ଦେଖାଯାଏ । ଏହି ଚିତ୍ରକଳା ଅଜନ୍ତା ଭିତ୍ତିଚିତ୍ରର ସ୍ମୃତିଚାରଣ କରେ । ପ୍ରାକୃତିକ ଗୁମ୍ଫାରେ ଥିବା ଏହି ପ୍ରସ୍ତର ଚିତ୍ରକଳା ତାଳଗଛର ଏକ ବାହୁଙ୍ଗାର ତନ୍ତୁମୟ ପଛପଟକୁ ଛେଚି ଏକ ବ୍ରସ ଭଳି ଦ୍ରବ୍ୟ ଦ୍ୱାରା ରଙ୍ଗ କରାଯାଉଛି । ଏଭଳି ଚିତ୍ରକଳା ବିଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ପ୍ରକାର ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ ଅଧିକାଂଶ ପ୍ରସ୍ତର ଆଶ୍ରୟସ୍ଥଳୀରେ ଚିତ୍ରକଳାଗୁଡ଼ିକ ରେଖାଙ୍କିତ । ମାତ୍ର ମାନିକମାଡ଼ାରେ ଚିତ୍ରକଳାଗୁଡ଼ିକ ଅଧିକ ଛବିଳ ଓ ବହୁବିଧ । ଏଠାରେ ଚିତ୍ରକଳାଗୁଡ଼ିକରେ ଅନେକ ଥର ରଙ୍ଗ ବୋଳାଯାଇଛି ଓ ମୋଟା ଆକାରରେ ଆଚ୍ଛାଦିତ ହୋଇଛି । ଅନ୍ୟ ପକ୍ଷରେ ଆଉ କିଛି ଚିତ୍ରକଳା ଅତି ସାଧାରଣ ଭାବେ ଅଙ୍କିତ ହୋଇଛି । ଯୋଗୀମଠଠାରେ ଚିତ୍ରକଳାଗୁଡ଼ିକ ସ୍ୱଷ୍ଟଭାବେ ଢ଼େଉଆ (ଗେରୁ) ରେଖାରେ ପରିପ୍ରକାଶ ପାଉଛି । ପୃଷ୍ଠଭାଗ ପ୍ରାଚୀର ଏବଂ ଛାତ ସବୁ ଚିତ୍ରକଳା ଦ୍ୱାରା ଆଚ୍ଛାଦିତ ହୋଇଛି । ପ୍ରାଚୀର ଉପରେ ଚିତ୍ରଗୁଡ଼ିକ ଅନୁକ୍ରମ ଓ ଆନୁଭୂମିକ ଭାବେ ଆଙ୍କି ହୋଇଥିବା ବେଳେ ଛାତତଳେ ନିର୍ଦ୍ଦିଷ୍ଟଭାବେ କୌଣସି ସୂତ୍ର ଗ୍ରହଣ କରାଯାଇ ନାହିଁ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଚିତ୍ରକଳାଗୁଡ଼ିକ କ୍ଷୁଦ୍ର ଜ୍ୟାମିତିକ ଓ ଫୁଲ ଡ଼ିଜାଇନଠାରୁ ଆରମ୍ଭ କରି ବୃହତ୍ ହରିଣ, ଗବାଦିପଶୁ, ହରିଣ ଓ ସମ୍ବର ପ୍ରଭୃତି ଜୀବଙ୍କୁ ଧାରଣ କରିଛି । ଯେଉଁଠାରେ ମନୁଷ୍ୟ ସମ୍ବନ୍ଧୀୟ ଚିତ୍ର ରହିଛି, ସେଗୁଡ଼ିକ ସେମାନଙ୍କର ପଶୁ ଶିକାର, ପଶୁପାଳନ, ଲଢ଼େଇ ଓ ନୃତ୍ୟ ଆଦି ଦୃଶ୍ୟ ପ୍ରକାଶ କରୁଛି ।

ପ୍ରସ୍ତର ଚିତ୍ରକରମାନେ ରଙ୍ଗ କରିବା ନିମନ୍ତେ ବିଭିନ୍ନ ପ୍ରକାର ପଦାର୍ଥ ବ୍ୟବହାର କରିଥାଆନ୍ତି । ନାଲି ଓ ବାଦାମୀ ରଙ୍ଗ ପାଇଁ ସେମାନେ ଲୌହ କଳଙ୍କ ବ୍ୟବହାର କରୁଥିବା ବେଳେ ଚୂନରୁ ସେମାନେ ଧଳା ଓ ତମ୍ବା ପଦାର୍ଥରୁ ସବୁଜ ରଙ୍ଗ ପାଆନ୍ତି । ଏହି ରଙ୍ଗଗୁଡ଼ିକ ପ୍ରାୟତଃ ପ୍ରସ୍ତର ଆଶ୍ରୟସ୍ଥଳୀ ନିକଟରେ ମିଳେ । ଏହି ଚିତ୍ରକଳାଗୁଡ଼ିକ ଆଦିମ ମାନବ ଦ୍ୱାରା କରାଯାଇଛି । ଯେଉଁମାନେକି ମଧ୍ୟ ଭାରତ ଓ ପଶ୍ଚିମ ଓଡ଼ିଶା ଆଦିବାସୀମାନଙ୍କର ପୂର୍ବପୁରୁଷ ଥିଲେ । ଏହି ପ୍ରସ୍ତର ଚିତ୍ରକଳାର ପରମ୍ପରା ଏବେ ଯାଏଁ ଆଦିବାସୀମାନଙ୍କ ପ୍ରାଚୀର ଚିତ୍ରରେ ପରିଦୃଷ୍ଟ ହୁଏ । କୋରାପୁଟ ଓ ଗଞ୍ଜାମ ଜିଲ୍ଲାରେ ସଉରା ସତେଜତାକୁ ଏବେ ମଧ୍ୟ ବଜାୟ ରଖିଛି ।

**ମନ୍ଦିର ଚିତ୍ରକଳା**

ମନ୍ଦିରଗୁଡ଼ିକରେ ଓଡ଼ିଶୀ ଶୈଳୀର ଚିତ୍ରସବୁ ଦେଖିବାକୁ ମିଳେ । ସେଗୁଡ଼ିକ ଧର୍ମୀୟ ବିଷୟବସ୍ତୁକୁ ଅବତାରଣା କରେ । ସାଙ୍କେତିକ, ପୌରାଣିକ ଓ ଐତିହାସିକ ବିଷୟବସ୍ତୁ ଏହିସବୁ ଚିତ୍ରକଳାର ମୂଳକଥା । ଐତିହାସିକ ଘଟଣାର ଲିପିବଦ୍ଧ, ପୌରାଣିକ କଥାର ବର୍ଣ୍ଣନା ଏବଂ ଧାର୍ମିକ ଭାବନାର ପ୍ରଚାର ନିମନ୍ତେ ଏହି ସବୁ ଚିତ୍ର ବ୍ୟବହୃତ ହୋଇଥାଏ । ପୁରୀର ଜଗନ୍ନାଥ ମନ୍ଦିର ପ୍ରାଚୀର ଚିତ୍ର ପରମ୍ପରାକୁ ଅନୁସରଣ କରେ । ଜଗନ୍ନାଥ ମନ୍ଦିରର ଜଗମୋହନରେ '' କାଞ୍ଚି ବିଜୟ'' ଚିତ୍ର ଓ ଲକ୍ଷ୍ମୀ ମନ୍ଦିରର ଜଗମୋହନରେ ''ବୁଦ୍ଧ ବିଜୟ'' ଚିତ୍ର ଦ୍ୱୟ ଅତ୍ୟନ୍ତ ଉଚ୍ଚକୋଟୀର ଚିତ୍ର । ଜଗନ୍ନାଥ ମନ୍ଦିରର ଖମ୍ବ ସମ୍ବଳିତ ଭିତର କକ୍ଷରେ ଥିବା ପ୍ରାଚୀର ଓ ଛାତତଳେ ଅନେକ ପ୍ରାଚୀର ଚିତ୍ର ରହିଛି । ଜୟଦେବଙ୍କ 'ଦଶାବତାର'ରେ ବର୍ଣ୍ଣିତ ବିଷ୍ଣୁଙ୍କ ଦଶଗୋଟି ଅବତାର ମଧ୍ୟ ଏଠାରେ ଶୋଭା ପାଉଛି । କୃଷ୍ଣଙ୍କ ବିଭିନ୍ନ ଲୀଳା ମଧ୍ୟ ଏହି କାନ୍ଥଗୁଡ଼ିକରେ ପରିଦୃଷ୍ଟ ହେଉଛି । ପୃଥିବୀ ସୃଷ୍ଟି ସମୟରେ କ୍ଷୀରସାଗରରେ ବିଷ୍ଣୁଙ୍କ ଅନନ୍ତ ଶୟନ ଏବଂ ବିଷ୍ଣୁଙ୍କ ନାଭିରୁ ଉତ୍ପନ୍ନ ପଦ୍ମ ଉପରେ ଉପବେଶନ କରିଥିବା ବ୍ରହ୍ମା ମଧ୍ୟ ଏକ ପ୍ରସିଦ୍ଧ ଚିତ୍ର ଯାହାକି ଜଗନ୍ନାଥ ମନ୍ଦିରର ପରିସର

ମଧ୍ୟରେ ଦେଖିବାକୁ ମିଳେ । ଏକ ଭାସମାନ ବରପତ୍ର ଉପରେ ବିଶ୍ରାମ ନେଉଥିବା ଏବଂ ତାଙ୍କ ପାଦାଙ୍ଗୁଳିକୁ ପାଟିରେ ପୂରାଇଥିବା ଚିତ୍ରଟି ହେଉଛି ଅନ୍ୟ ଏକ ଜଣାଶୁଣା ଚିତ୍ରକଳା । 'କାଞ୍ଚି ବିଜୟ' ଜଗନ୍ନାଥ ମନ୍ଦିରର ଆଉ ଏକ ସୁନ୍ଦର ଚିତ୍ର, ଯେଉଁଥିରେ ଭଗବାନ ଜଗନ୍ନାଥ ଓ ବଳଭଦ୍ର ଘୋଡ଼ାରେ ଚଢ଼ି ଯୁଦ୍ଧକ୍ଷେତ୍ରକୁ ଯାଉଥିବା ବେଳେ ମାଣିକ ଗଉଡୁଣୀଠାରୁ ଦହି ଖାଇବା ପାଇଁ ବାଟରେ ଅଟକିଥିଲେ ।

ଏତଦ୍‌ବ୍ୟତୀତ ଓଡ଼ିଶାରେ ଆଉ ୨ ଗୋଟି ଚିତ୍ରକଳା ପରମ୍ପରା ରହିଛି ଯଥା– ଗଞ୍ଜାମ ବା ଦକ୍ଷିଣୀ ଧାରା ଓ ଚମ୍ପାମାଳା ଧାରା । ପୁରୀ ଶୈଳୀଟି ପୁରୀ ଏବଂ ଏହାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ପ୍ରତାପପୁର, ବଳପୁର ଓ ରଘୁରାଜପୁରରେ ଦେଖିବାକୁ ମିଳେ । ସେହିପରି ଚମ୍ପାମାଳା ଶୈଳୀ ସୋନପୁର ଓ ସମ୍ବଲପୁରଠାରେ ପ୍ରଚଳିତ । ଦକ୍ଷିଣୀ ପରମ୍ପରା ଘୁମୁସର, ଖଲ୍ଲିକୋଟ, ଧରାକୋଟ, ଖେମୁଣ୍ଡି, ପାରଳା, ଇଚ୍ଛାପୁର, ଟିକାଲି ଓ ମଞ୍ଜୁଷାରେ ଚାଲିଆସୁଛି । ପୁରୀ ଓ ଗଞ୍ଜାମ ଶୈଳୀର କଳାକୃତିରେ ସମାନତା ରହିଛି, ମାତ୍ର ଚମ୍ପାମାଳା ଶୈଳୀଟି ଭିନ୍ନ । ଏଥିରେ ଇଣ୍ଡୋନେସୀୟ ଚିତ୍ରକଳାର ବୈଶିଷ୍ଟ୍ୟ ରହିଛି ।

ଗଞ୍ଜାମ ଜିଲ୍ଲାର ଜୟନ୍ତଗଡ଼ସ୍ଥିତ ବାସୁଦେବ ମନ୍ଦିର ଏବଂ ବୁଗୁଡ଼ାସ୍ଥିତ ବିରଞ୍ଚିନାରାୟଣ ମନ୍ଦିରର ପ୍ରାଚୀର ଚିତ୍ର ଅଷ୍ଟାଦଶ ଶତାବ୍ଦୀର ବୋଲି ଜଣାଯାଏ । ବିରଞ୍ଚିନାରାୟଣ ମନ୍ଦିରର ଚିତ୍ରକଳା ପ୍ରାଚୀର ଚିତ୍ରକଳା ଇତିହାସରେ ଏକ ମାଇଲଖୁଣ୍ଟ ସଦୃଶ୍ୟ । ଏଥିରେ ମୁଖ୍ୟତଃ ରାମାୟଣର କଥାବସ୍ତୁ, କୃଷ୍ଣଲୀଳାର ଦୃଶ୍ୟ ଏବଂ ଦଶାବତାର ପ୍ରଦର୍ଶିତ ହୋଇଛି । କିନ୍ତୁ ଏଥିରେ ସବୁଠାରୁ ମୁଖ୍ୟ ବିଷୟ ହେଉଛି ଲକ୍ଷ୍ମଣ ଓ ଜାମ୍ବବାନ, ରାବଣ, ଚିତ୍ରକୂଟରେ ରାମ ଓ ସୀତା ଏବଂ ରାମ–ରାବଣ ଯୁଦ୍ଧ । ଏହିସବୁ ଚିତ୍ରକଳାରେ ନାଟକୀୟ ତତ୍ତ୍ୱ ଅଧିକ ଭାବେ ରହିଛି ଏବଂ ମାନବୀୟ ଚିତ୍ର ଅତ୍ୟନ୍ତ ସୁଲଳିତ ଭାବେ ଚିତ୍ରିତ ହୋଇଛି । ଉଦାହରଣ ସ୍ୱରୂପ– ଚିତ୍ରକୂଟ ଚିତ୍ରରେ ରାମ ସୀତାଙ୍କ କପାଳରେ ସିନ୍ଦୂର ପିନ୍ଧାଉଥିବା ସମୟରେ ତାଙ୍କ ହାତର ମୁଦ୍ରା କଳାତ୍ମକଭାବେ ରୂପାୟିତ ହୋଇଛି । ବିରଞ୍ଚିନାରାୟଣ ମନ୍ଦିରରେ ପୁରୀ ଜଗନ୍ନାଥ ମନ୍ଦିରର ଏକ ଚିତ୍ର ମଧ୍ୟ ରହିଛି ।

ବୁଗୁଡ଼ାର ଜଗନ୍ନାଥ ମନ୍ଦିରରେ କୃଷ୍ଣଲୀଳା ଚିତ୍ର ସବୁ ରହିଛି । ସେଥିମଧ୍ୟରୁ ଅଳ୍ପ କେତେକ ଲୋକଲୋଚନକୁ ଆସିଛି, ଯାହାକି ବିରଞ୍ଚିନାରାୟଣ ମନ୍ଦିରର ଚିତ୍ରକଳା ସହ ତୁଳନୀୟ ହୋଇପାରିବ । ସେଗୁଡ଼ିକର ରଙ୍ଗ ସଂଯୋଜନାରୁ ଊନବିଂଶ ଶତାବ୍ଦୀର ହୋଇଥିବ ବୋଲି ଜଣାପଡ଼େ ।

ଧରାକୋଟରେ ଥିବା ଜଗନ୍ନାଥ ମନ୍ଦିରର ଭିତରପାର୍ଶ୍ୱ କାନ୍ଥଗୁଡ଼ିକ ଚିତ୍ରକଳାରେ ଭରପୂର । ବୃନ୍ଦାବନଚନ୍ଦ୍ର ମନ୍ଦିରର ଏବଂ ଦେବୀ ଖମ୍ବେଶ୍ୱରୀଙ୍କ ପୀଠରେ ମଧ୍ୟ ଅନେକ ସୁନ୍ଦର ଚିତ୍ରକଳା ରହିଛି । ଏହି ଚିତ୍ରକଳାର କଥାବସ୍ତୁ ହେଉଛି ରାମାୟଣ, ଦଶାବତାର ଓ ଦଶମହାବିଦ୍ୟା । ଚିତ୍ରକଳାର ରଙ୍ଗ ସଂଯୋଜନାରେ ଅଧିକ ଭାବେ ଗାଢ଼ ନୀଳ ଓ ଉଜ୍ଜ୍ୱଳ ପୀତ ରଙ୍ଗ ବ୍ୟବହୃତ ହୋଇଛି ଏବଂ ଏଥିରୁ ସେଗୁଡ଼ିକ ଊନବିଂଶ ଶତାବ୍ଦୀର ଶେଷ ଭାଗ ବା ବିଂଶ ଶତାବ୍ଦୀର ପ୍ରାରମ୍ଭ ସମୟରେ ହୋଇଥିବାର ଜଣାପଡ଼େ ।

ଓଡ଼ିଶାର ଅଧିକାଂଶ ମଠ ଓ ମନ୍ଦିରର ଚିତ୍ରକଳା ଊନବିଂଶ ଶତାବ୍ଦୀରେ ହୋଇଥିବାର ପ୍ରମାଣ ମିଳେ । ପୁରୀର ଏମାର ମଠ ଓ ବଡ଼ ଓଡ଼ିଆ ମଠ ଏବଂ ଓଡ଼ଗାଁର ରଘୁନାଥ ମନ୍ଦିରରେ ପ୍ରାଚୀର ଚିତ୍ରଗୁଡ଼ିକ ରହିଛି । ପୁରୀର ଗଙ୍ଗାମାତା ମଠ ଓ ଗୁଣ୍ଡିଚା ମନ୍ଦିର, ଚିକିଟାଗଡ଼ର ଚୈତନ୍ୟ ମଠ, ଜୟପୁରର ଶ୍ରୀକାଳୀକା ମନ୍ଦିର, ବେଲଗୁଣ୍ଠାର ଲକ୍ଷ୍ମୀନୃସିଂହ ମନ୍ଦିର, ବାଘମାରୀର ହଟକେଶ୍ୱର ଶିବ ମନ୍ଦିର, ଦିଗପହଣ୍ଡିର ରାଧାକାନ୍ତ ମଠ ଏବଂ ପାରଳାଖେମୁଣ୍ଡିର ରାଧାକୃଷ୍ଣ ମଠରେ ଥିବା ପ୍ରାଚୀର ଚିତ୍ରଗୁଡ଼ିକ ବିଂଶ ଶତାବ୍ଦୀର ଏବଂ ଏଗୁଡ଼ିକ ପ୍ରଗାଢ଼ଭାବେ ପ୍ରାଚୀନ ପରମ୍ପରା ବହନ କରେ ।

ଏହି ଚିତ୍ରଗୁଡ଼ିକ ବ୍ୟତୀତ ଅନ୍ୟ କେତେକ ପ୍ରାଚୀନ ଚିତ୍ରକଳା ସଂଗ୍ରହାଳୟଗୁଡ଼ିକରେ ସଂରକ୍ଷିତ ହୋଇରହିଛି । କଲିକତା ବିଶ୍ୱବିଦ୍ୟାଳୟର ଆଶୁତୋଷ ସଂଗ୍ରହାଳୟରେ ଏକ ଚିତ୍ରକଳା ରହିଛି । ଯେଉଁଥିରେ ଓଡ଼ିଶାର ଜଣେ ରାଜା ଏକ ମୁସଲମାନ ଦୂତଙ୍କୁ ପାଛୋଟି ନେଉଛନ୍ତି । ଏଥିରେ

ଛବିଗୁଡ଼ିକ ଯେଉଁଭଳି ଦର୍ଶାଯାଇଛି । ଏହା ବୁଗୁଡ଼ା ଶ୍ରେଣୀୟ କଳା ସହିତ ସମାନତା ଥିବାର ଜଣାପଡୁଛି । ଏହି ସଂଗ୍ରହାଳୟରେ ଜୟଦେବଙ୍କ 'ଗୀତଗୋବିନ୍ଦ' ଉପରେ ଏକ ଚିତ୍ରକଳା ମଧ୍ୟ ରହିଛି । ଯମୁନା ନଦୀ ତୀରରେ ଏକ ଜ୍ୟୋତ୍ସ୍ନାସିକ୍ତ ରାତିରେ ଗୋପୀମାନେ କଥୋପକଥନ ମୁଦ୍ରାରେ ଠିଆ ହୋଇଥିବାର ଦର୍ଶାଯାଇଛି । ବୃକ୍ଷରାଜି, ହରିଣ ଓ ମୟୂରମାନଙ୍କ ଉପସ୍ଥିତି ଏହାର ସାଙ୍ଗୀତିକ ଭାବକୁ ପରିବର୍ଦ୍ଧିତ କରିଛି । ଭିତ୍ତିଚିତ୍ର ଅପେକ୍ଷା ଏହି ଚିତ୍ରରେ ରେଖାଗୁଡ଼ିକ ଗତିଶୀଳ ଓ ମାଧୁର୍ଯ୍ୟପୂର୍ଣ୍ଣ ହୋଇଛି ଏବଂ ପଶୁପକ୍ଷୀମାନେ ଅଧିକ ପ୍ରାକୃତିକ ଓ ପ୍ରଭାବଶାଳୀ ହୋଇଛନ୍ତି ।

ପୂର୍ଣ୍ଣମାତ୍ରାରେ ଦେଖିଲେ ଓଡ଼ିଶାର ଚିତ୍ରକଳାର ସଂଯୋଜନା ଅତୀବ ସରଳ । ଭାରତର ସମସ୍ତ ପ୍ରାଚୀନ ଶ୍ରେଣୀର କଳା ପରି ଚିତ୍ରଗୁଡ଼ିକ ଏକ ସମତଳରେ ବ୍ୟବସ୍ଥିତ ହୋଇଛନ୍ତି । ଚିତ୍ରଗୁଡ଼ିକ ଅତି ସାଧାରଣ ଏବଂ ଏହା ଆଲୋକ ଛାୟା ପ୍ରଭାବ ବିରହିତ ଯାହାକି ଭ୍ରମ ସୃଷ୍ଟି କରେ । ଏଗୁଡ଼ିକ ଅଧିକାଂଶ ଏକ ନୂତନ ଶୈଳୀର ଚିତ୍ରକଳା । ପ୍ରାଚୀନ ଓଡ଼ିଶା ଚିତ୍ରକଳାରେ ପ୍ରକୃତିର ଆକର୍ଷଣ ସମ୍ପୂର୍ଣ୍ଣ ଭାବେ ଯଦିଓ ପ୍ରତିଫଳିତ ହୋଇନାହିଁ, ଏଥିରେ ଚିତ୍ରକରର ସାଦାସିଧା ଅନୁଭୂତି ଏବଂ ଆବେଗର ପରିପ୍ରକାଶ ଘଟିଛି ।

### ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ

ପ୍ରାଗ୍ ଐତିହାସିକ କାଳରୁ ଆରମ୍ଭ କରି ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରେ ମୁସଲମାନ ରାଜତ୍ୱ ଶେଷ ପର୍ଯ୍ୟନ୍ତ ଜଉଗଡ଼ଠାରେ ହୋଇଥିବା ଭୂଖନନ ଓଡ଼ିଶାରେ ଏକ ସମୃଦ୍ଧ ପ୍ରାଗ୍ ଐତିହାସିକ ସଭ୍ୟତା ଗଢ଼ି ଉଠିଥିବାର ପ୍ରମାଣ ଦିଏ । ଖ୍ରୀ.ପୂ. ପ୍ରଥମ ଶତାବ୍ଦୀରେ ନିର୍ମିତ ଖଣ୍ଡଗିରି ଓ ଉଦୟଗିରିଠାରେ ଗୁମ୍ଫାଗୁଡ଼ିକ ଓଡ଼ିଶାରେ ଗୁମ୍ଫା ସ୍ଥାପତ୍ୟର ବଳିଷ୍ଠ ପ୍ରମାଣ ଦିଏ । ସମ୍ରାଟ୍ ଖାରବେଳଙ୍କ ଆଦେଶ ଅନୁସାରେ ଜୈନ ମୁନିଙ୍କ ପାଇଁ ବଡ଼ ବଡ଼ ପ୍ରସ୍ତର ଖଣ୍ଡକୁ କଟାଯାଇ ଗୁମ୍ଫାଗୁଡ଼ିକ ନିର୍ମିତ କରାଯାଇଥିଲା । ଉଦୟଗିରିରେ ସମୁଦାୟ ୧୮ଟି ଗୁମ୍ଫା ଓ ଖଣ୍ଡଗିରିରେ ୧୫ ଗୋଟି ଗୁମ୍ଫା ରହିଛି । ଗୁମ୍ଫାଗୁଡ଼ିକରେ ସ୍ଥାପତ୍ୟର ଡ଼ିଜାଇନମାନ ରହିଛି । ଉଦୟଗିରିର ରାଣୀଗୁମ୍ଫା ଗୋଟିଏ ଦ୍ୱିତଳ ଢ଼ାଞ୍ଚା ଏବଂ ଏଥିରେ ଉଚ୍ଚକୋଟୀର କଳାତ୍ମକ ଭାସ୍କର୍ଯ୍ୟ ରହିଛି । ଗୁମ୍ଫାଗୁଡ଼ିକରେ ଏକ ବା ଏକାଧିକ କୋଠରି ରହିଛି ଏବଂ କେତେକ ଗୁମ୍ଫାର ସମ୍ମୁଖ ଭାଗରେ ସ୍ତମ୍ଭ ଥାଇ ବାରଣ୍ଡା ରହିଛି । ଭାରତୀୟ କଳାରେ ଖଣ୍ଡଗିରି ଓ ଉଦୟଗିରିର ଭାସ୍କର୍ଯ୍ୟ ଅନେକ ଗୁରୁତ୍ୱ ବହନ କରେ । ଏଗୁଡ଼ିକ ତତ୍କାଳୀନ ସମାଜର ନାନାବିଧ ଚିତ୍ର ପ୍ରଦାନ କରେ ଏବଂ ଭାରତର ପ୍ରସ୍ତର ଖୋଦେଇ ସ୍ଥାପତ୍ୟରେ ଏକ ଅଗ୍ରଣୀ ଭୂମିକା ନିର୍ବାହ କରେ ।

କଳା ଓ ସ୍ଥାପତ୍ୟର ବିକାଶ କ୍ଷେତ୍ରରେ ଜୈନଧର୍ମ ଭଳି ବୌଦ୍ଧଧର୍ମ ମଧ୍ୟ ପ୍ରେରଣା ଯୋଗାଇଥିଲା । ବୌଦ୍ଧ ଧର୍ମର ପ୍ରଚାର ପ୍ରସାର ନିମିତ୍ତ ସମ୍ରାଟ୍ ଅଶୋକ ସମସ୍ତ ଶାସନ କାଳରୁ ନିୟୋଜିତ କରିଥିଲେ । ଓଡ଼ିଶାର ମୁଖ୍ୟ ଶିଳାଲେଖ ମଧ୍ୟରୁ ଆମ୍ଭେମାନେ ଧଉଳି ଓ ଜଉଗଡ଼ଠାରେ ଦୁଇଗୋଟି ଲେଖା ଦେଖିବାକୁ ପାଉ । ରତ୍ନଗିରିଠାରେ ପ୍ରତ୍ନତାତ୍ତ୍ୱିକ ଉତ୍ଖନନ ପରେ ଗୋଟିଏ ମୁଖ୍ୟ ସ୍ତୁପ, ଦୁଇଟି ବିହାର ଓ ବୁଦ୍ଧ ମୂର୍ତ୍ତିଥାଇ ଆଠଗୋଟି ମନ୍ଦିରର ଅବଶେଷ ଲୋକଲୋଚନକୁ ଆସିପାରିଛି । ଲଳିତଗିରି, ଓଳାଶୁଣି, ଲଣ୍ଡା ଓ ପାରାଭାଡ଼ି ପର୍ବତରୁ କଳାତ୍ମକ ବିଭବ ଥିବା ବହୁ ସଂଖ୍ୟକ ବୁଦ୍ଧ ଓ ବୋଧିସତ୍ତ୍ୱ ମୂର୍ତ୍ତି ସଂଗୃହୀତ ହୋଇଛି । ବୋଧିସତ୍ତ୍ୱ ପଦ୍ମପାଣିଙ୍କର ଏକ ବୃହତ୍ ମୂର୍ତ୍ତି ଯାଜପୁରଠାରେ ଆବିଷ୍କାର କରାଯାଇଛି । ଏହାର ଉଚ୍ଚତା ୧୫' ୮'' । ବୌଦ୍ଧ, ଖିଚିଙ୍ଗ ଓ ସୋଲାମପୁରଠାରେ ମଧ୍ୟ ବୌଦ୍ଧ ଅବଶେଷ ଆବିଷ୍କୃତ ହୋଇଛି । ଦେଖାଯାଉଛି ଯେ ଲଳିତଗିରିର ଭାସ୍କର୍ଯ୍ୟ ଉପରେ ଗୁପ୍ତକଳା ପରମ୍ପରାର ଯଥେଷ୍ଟ ପ୍ରଭାବ ରହିଛି ।

### ମନ୍ଦିର ସ୍ଥାପତ୍ୟ

ମନ୍ଦିରଗୁଡ଼ିକ ଭିତରେ ଓଡ଼ିଶାର ସ୍ଥାପତ୍ୟର ସର୍ବୋତ୍ତମ ପରିପ୍ରକାଶ ଘଟିଥିଲା । ସେଥିମଧ୍ୟରୁ କେତେକ ଦେଶ ଭିତରେ ଥିବା ମନୋରମ ମନ୍ଦିରମାନଙ୍କ ଭିତରେ ଅନ୍ୟତମ । ଏହି ମନ୍ଦିର ମଧ୍ୟରୁ ୩ ଗୋଟି ବହୁତ ଖ୍ୟାତିଲାଭ କରିଛି – ଭୁବନେଶ୍ୱରସ୍ଥିତ ଲିଙ୍ଗରାଜ ମନ୍ଦିର

(୧୧ଶ ଶତାବ୍ଦୀ), ପୁରୀସ୍ଥିତ ଜଗନ୍ନାଥ ମନ୍ଦିର (୧୨ଶ ଶତାବ୍ଦୀ) ଏବଂ କୋଣାର୍କର ସୂର୍ଯ୍ୟ ମନ୍ଦିର (୧୩ଶ ଶତାବ୍ଦୀ) । ଏକ ସ୍ୱତନ୍ତ୍ର ଶୈଳୀର ସ୍ଥାପତ୍ୟ ଏହି ମନ୍ଦିରମାନଙ୍କରେ ଚରମ ସୋପାନରେ ପହଞ୍ଚିଛି, ଯାହାକି କଳିଙ୍ଗ ଶୈଳୀ ନାମରେ ଖ୍ୟାତ । ମନ୍ଦିର ନିର୍ମାଣର ଯୋଜନା, ଉତ୍ତୋଳନ ଓ ସୌନ୍ଦର୍ଯ୍ୟକରଣର ଧାରା ଅତ୍ୟନ୍ତ ଉଲ୍ଲେଖନୀୟ । ଏହି ପ୍ରକାର ମନ୍ଦିର ନିର୍ମାଣ ଶୈଳୀରେ ମୁଖ୍ୟତଃ ୨ଟି ଭାଗ ରହିଛି–ମୁଖ୍ୟ ମନ୍ଦିର ବା ପୀଠ ଏବଂ ସମ୍ମୁଖ ଦ୍ୱାର ମଣ୍ଡପ । ବିମାନ ବା ଦେଉଳ କୁହାଯାଉଥିବା ମୁଖ୍ୟ ମନ୍ଦିରରେ ଗର୍ଭଗୃହ ଥାଏ, ଯେଉଁଥିରେ ମୂର୍ତ୍ତି ସ୍ଥାପିତ ହୋଇଥାଆନ୍ତି ଏବଂ ସମ୍ମୁଖ ଭାଗକୁ ଜଗମୋହନ କୁହାଯାଏ, ଯେଉଁଠାରେ ଭକ୍ତମାନଙ୍କ ସମାଗମ ହୋଇଥାଏ । ବର୍ଗକ୍ଷେତ୍ରୀୟ ଭିତ୍ତିଭୂମି ଉପରେ ବକ୍ରାକାରରେ ଥିବା ଅତ୍ୟୁଚ୍ଚ ଚୂଡ଼ା ଉପରେ ନିର୍ମିତ ମୁଖ୍ୟ ଦେଉଳକୁ ରେଖା ଦେଉଳ କୁହାଯାଏ । ସମ୍ମୁଖ ଭାଗଟି ଆୟତକ୍ଷେତ୍ର ଭିତ୍ତି ଉପରେ ନିର୍ମିତ ଓ ଏହା ଏକ ପିଢ଼ ଦେଉଳ, ଏହାର ଛାତ ଉପରେ ପିଢ଼ଗୁଡ଼ିକ ଥାଏ ଯାହାକି ଆନୁଭୂମିକ ପ୍ଲାଟ୍‌ଫର୍ମ ରୂପେ ପଛକୁ ଗଡ଼ାଣିଆ ହୋଇ ରହିଥାଏ ଏବଂ ପୀରାମିଡ଼ ଭଳି ଅଧିସଂରଚନା ହୋଇଥାଏ । ଯଦିଓ ୨ଟି ଯାକ ମନ୍ଦିରର ୨ଟି ଭିନ୍ନ ସ୍ଥାପତ୍ୟକଳା ରହିଛି, ସେଗୁଡ଼ିକ ଏକ ଅକ୍ଷରେ ସ୍ଥାପିତ ଗୋଟିଏ ଧାଡ଼ିରେ ନିର୍ମିତ ହୋଇଛି ଏବଂ ସଂଯୋଗୀକୃତ ଭାବେ ଏକ ପୂର୍ଣ୍ଣାଙ୍ଗ ସ୍ୱରୂପ ପାଇଛି । ଏହି ପୁରାତନ ମନ୍ଦିର ନିର୍ମାଣ ଶୈଳୀର ଦ୍ୱିବିଧ ସଂରଚନା ଭୁବନେଶ୍ୱରର ପର୍ଶୁରାମେଶ୍ୱର ମନ୍ଦିର (୭ମ ଶତାବ୍ଦୀ)ରେ ଦେଖିବାକୁ ମିଳେ । ଭରତେଶ୍ୱର–ଲକ୍ଷ୍ମଣେଶ୍ୱର ଶ୍ରେଣୀର ପୁରାତନ ମନ୍ଦିରଗୁଡ଼ିକରେ ଭୂମିକୁ ସ୍ପର୍ଶ କରିଥିବା ବକ୍ରାକାର ଶିଖର ଓ ଖମ୍ବରେ ନିର୍ମିତ ଆୟତାକାର ଜଗମୋହନ ରହିଛି ।

ମନ୍ଦିର କାନ୍ଥ ଉପରେ ଥିବା ଭାସ୍କର୍ଯ୍ୟ ଏହାର ସାବଲୀଳତା ଓ ସୌନ୍ଦର୍ଯ୍ୟର ସ୍ୱାକ୍ଷର ବହନ କରେ । ଗଙ୍ଗ ରାଜତ୍ୱ କାଳରେ କଳିଙ୍ଗ ଶୈଳୀର ନିଖୁଣତା ଶୀର୍ଷ ସୋପାନରେ ପହଞ୍ଚିଥିଲା, ଯେତେବେଳେ କି ପୂଜାପଦ୍ଧତିର ପ୍ରଣାଳୀର ଆବଶ୍ୟକତାକୁ ମେଣ୍ଟାଇବା ନିମନ୍ତେ ଆଉ ୨ଟି ଅଧିକ ସଂରଚନା (ନିର୍ମାଣ) ପୂର୍ବରୁ ଥିବା ଦ୍ୱି–ଅଂଶୀୟ ମନ୍ଦିର ସହ ଯୋଗ କରାଯାଇଥିଲା । ସେଗୁଡ଼ିକ ଥିଲା – ନାଟମନ୍ଦିର ବା ନାଟ ମଣ୍ଡପ ଓ ଭୋଗମଣ୍ଡପ । ଲିଙ୍ଗରାଜ ଓ ଜଗନ୍ନାଥ ମନ୍ଦିରରେ ଏହି ୪ ଭାଗରେ ନିର୍ମିତ ହୋଇଥିବା ସଂରଚନା ଏକ ସରଳରେଖାରେ ଦଣ୍ଡାୟମାନ, ଯେଉଁଥିରେ ମୁଖ୍ୟପୀଠର ଶିଖର ଉପରେ ଗୁରୁତ୍ୱ ଦିଆଯାଉଛି । ମାତ୍ର ଭକ୍ତମାନେ ନାଟମନ୍ଦିର ଓ ଭୋଗମଣ୍ଡପକୁ ଛାଡ଼ି ଜଗମୋହନର ପାର୍ଶ୍ୱଦ୍ୱାର ଦେଇ ପ୍ରବେଶ କରିଥାଆନ୍ତି ।

୭ମ ଓ ୧୬ଶ ଶତାବ୍ଦୀ ମଧ୍ୟରେ ଓଡ଼ିଶାରେ ମନ୍ଦିର ନିର୍ମାଣ କାର୍ଯ୍ୟ ଅବିରତ ଭାବେ ଚାଲୁ ରହିଥିଲା । ଏହି ସମୟରେ ରାଜ୍ୟରେ ବିଭିନ୍ନ ଧାର୍ମିକ ସମ୍ପ୍ରଦାୟର ଶାସନ ଚାଲୁଥିବାରୁ ମନ୍ଦିର ତୋଳାରେ ସେମାନେ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ କଳାର ଆବଶ୍ୟକୀୟ ରୂପାନ୍ତରଣ ଆଣିଥିଲେ । ଭୁବନେଶ୍ୱରର ବୈତାଳ ମନ୍ଦିର ଓ ପ୍ରାଚୀ ଉପତ୍ୟକାରେ ଥିବା ଚଉରାଶୀର ବରାହୀ ମନ୍ଦିରରେ ଥିବା ଅର୍ଦ୍ଧସ୍ତମ୍ଭାକାର ବିଶିଷ୍ଟ ଛାତ ଏକ ଭିନ୍ନ ଶ୍ରେଣୀର ମନ୍ଦିରର ଆଭାସ ଦିଏ, ଯାହାକୁ ଶିଳ୍ପଶାସ୍ତ୍ରମାନଙ୍କରେ ଖାଖର ଶ୍ରେଣୀର ମନ୍ଦିର ଭାବେ ବର୍ଣ୍ଣନା କରାଯାଇଛି । ପ୍ରଥମ ମନ୍ଦିରଟିର ଉପର ପାର୍ଶ୍ୱ ଏକ ଓଲଟ ନୌକା ସଦୃଶ୍ୟ ହୋଇଥିବାବେଳେ ଦ୍ୱିତୀୟ ମନ୍ଦିର ଉପର ପାର୍ଶ୍ୱଟି ଖିଲାଣ ଛାତ ସଦୃଶ ହୋଇଛି । ଉଭୟ ମନ୍ଦିରରେ ଯଥାକ୍ରମେ ଚାମୁଣ୍ଡା ଓ ବରାହୀ ଦେବୀ ପୂଜିତ ହୁଅନ୍ତି । ଗର୍ଭଗୃହର ଭିତର ପାର୍ଶ୍ୱ ଛାୟାକୃତି ଓ ମନ୍ଦିର ଗାତ୍ରରେ ସ୍ଥାପିତ ହୋଇଥିବା କଳାକୃତି ଶକ୍ତି ଉପାସନାର ପ୍ରମାଣ ଦିଏ ।

ଏତଦ୍‌ବ୍ୟତୀତ ଅନ୍ୟ ଏକ ଶୈଳୀର ମନ୍ଦିର ରହିଛି, ଯାହାକି ସମଗ୍ର ଦେଶରେ ସମ୍ପୂର୍ଣ୍ଣ ଏକ ନୂତନ ଚିନ୍ତାଧାରାରେ ନିର୍ମାଣ କରାଯାଇଛି । ଏଗୁଡ଼ିକ ହେଲା ବୃତ୍ତାକାର ଛାତବିହୀନ ନିର୍ମାଣ ଯେଉଁଠାରେ ତନ୍ତ୍ରବିଦ୍ୟାର ଚଉଷଠୀ ଯୋଗିନୀ ଅବସ୍ଥାପିତ ହୋଇଛନ୍ତି । ସମଗ୍ର ଦେଶରେ ଥିବା ୫ ଗୋଟି ଯୋଗିନୀ ପୀଠ ମଧ୍ୟରୁ ୨ଗୋଟି ଓଡ଼ିଶାରେ ଅବସ୍ଥିତ । ତାହା ହେଲା ଭୁବନେଶ୍ୱର ନିକଟସ୍ଥ ହୀରାପୁର ଓ ବଲାଙ୍ଗୀର ଜିଲ୍ଲାର ଟିଟିଲାଗଡ଼ ସବ୍‌ଡ଼ିଭିଜନର ରାଣୀପୁର

ଝରିଆଲର ଚଉଷଠୀ ଯୋଗିନୀ ମନ୍ଦିରଦ୍ୱୟ । ଏହି ମନ୍ଦିର ଦ୍ୱୟର ମଧ୍ୟସ୍ଥଳରେ ଭୈରବ ମୂର୍ତ୍ତି ସ୍ଥାପିତ ହୋଇଥିବା ବେଳେ ଏହାର ୪ ପଟେ ଗୋଟିଏ ଗୋଟିଏ କାନ୍ଥଖୋଲରେ ଯୋଗିନୀମାନେ ସ୍ଥାନିତ ହୋଇଛନ୍ତି । ହୀରାପୁରଠାରେ ଯୋଗିନୀମାନଙ୍କର ମୂର୍ତ୍ତି ଅତ୍ୟନ୍ତ କଳାତ୍ମକ ଓ ସେମାନଙ୍କର କେଶସଜ୍ଜା ପ୍ରତ୍ୟେକ ପ୍ରତ୍ୟେକଙ୍କଠାରୁ ଭିନ୍ନ । ଏଠାରେ ଯୋଗିନୀମାନଙ୍କ ନିର୍ମାଣ ଅତୀବ ଚମତ୍କାର ଭାବେ ସମ୍ପାଦନ କରାଯାଇଛି ।

କଳିଙ୍ଗ ଶ୍ରେଣୀର ସ୍ଥାପତ୍ୟ ଯାହାକି ସବୁ ସମୟରେ ପ୍ରଚଳିତ ଥିଲା, ମୁଖ୍ୟତଃ ଏହା ଦଶମ ଓ ଏକାଦଶ ଶତାବ୍ଦୀରେ ସୋମବଂଶୀୟ ରାଜତ୍ୱ କାଳରେ ପୃଷ୍ଠପୋଷକତା ପାଇଁ ଅଧିକ ସମୃଦ୍ଧି ଲାଭ କରିଥିଲା । ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିର (୧୦ମ ଶତାବ୍ଦୀ) ଓଡ଼ିଶା ମନ୍ଦିର ସ୍ଥାପତ୍ୟର ଏକ ମଣି ରୂପେ ଗ୍ରହଣ କରାଯାଏ ଏବଂ ଭାରତବର୍ଷର ସବୁଠାରୁ ଅଧିକ ସୌନ୍ଦର୍ଯ୍ୟମୟୀ ମନ୍ଦିରମାନଙ୍କ ଭିତରେ ଏହା ଅନ୍ୟତମ । ସମ୍ମୁଖ ଭାଗରେ ଏକ ଅତି ସୁନ୍ଦର ମକର ତୋରଣ ଓ ରମଣୀୟ ପରିସର ମଧ୍ୟରେ ଠିଆ ହୋଇଥିବା ଏହି ମନ୍ଦିର ଉପରୁ ତଳ ପର୍ଯ୍ୟନ୍ତ ଅତି କମନୀୟ ଭାବେ ସଜ୍ଜିତ ହୋଇଛି । ରେଖା ଶିଖର, ଆଲୋକ ଓ ଛନ୍ଦୋମୟଭାବେ ଗଢ଼ି ଉଠିଥିବା ଏହି ମନ୍ଦିରଟି ସୌନ୍ଦର୍ଯ୍ୟରେ ଅପ୍ରତିଦ୍ୱନ୍ଦ୍ୱୀ । ପିଢ଼ ଦେଉଳର ସାମଞ୍ଜସ୍ୟ ଥିବା ଏହାର ଜଗମୋହନ ଉପରେ ଗୋଟିଏ କଳସ ସ୍ଥାପନ କରାଯାଇଛି । 'ରାଜାରାଣୀଆ' ନାମକ ଏକ ପ୍ରକାର ପ୍ରସ୍ତରରୁ ନାମିତ ହୋଇଥିବା ରାଜାରାଣୀ ମନ୍ଦିରଟି (୧୧ଶ ଶତାବ୍ଦୀ) ପରବର୍ତ୍ତୀ ସୋମବଂଶୀ କାଳ ସ୍ଥାପତ୍ୟର ଏକ ସୁନ୍ଦର ନିଦର୍ଶନ । ବିସ୍ତୀର୍ଣ୍ଣ ସବୁଜ କ୍ଷେତର ଏକ ମନୋରମ ପରିବେଶ ମଧ୍ୟରେ ଅବସ୍ଥିତ ଏହି ମନ୍ଦିରର ନିର୍ମାଣ ଶୈଳୀରେ ମାଧୁର୍ଯ୍ୟ ଓ ଲାବଣ୍ୟ, କାଳାକୃତି ଓ ଅଳଙ୍କରଣ ରହିଛି । ମନ୍ଦିର ଚାରିପଟେ ଥିବା କ୍ଷୁଦ୍ରକାୟ ମନ୍ଦିର ପୁଞ୍ଜ ଖଜୁରାହୋ ମନ୍ଦିରର ସ୍ମୃତିଚାରଣ କରେ । ବ୍ରହ୍ମେଶ୍ୱର ମନ୍ଦିର (୧୧ଶ ଶତାବ୍ଦୀ) ଓଡ଼ିଶୀ ଶୈଳୀ ବୈଶିଷ୍ଟ୍ୟର ନିରବଚ୍ଛିନ୍ନ ଧାରା । ଭୁବନେଶ୍ୱରସ୍ଥିତ ବିଶାଳ ଲିଙ୍ଗରାଜ ମନ୍ଦିର (୧୧ଶ ଶତାବ୍ଦୀ) ଓଡ଼ିଶା ସ୍ଥାପତ୍ୟର ନିଚ୍ଛକ ପ୍ରତିଫଳନ । ମନ୍ଦିର ସ୍ଥାପତ୍ୟର ସମସ୍ତ ବୈଶିଷ୍ଟ୍ୟ ସମ୍ପୂର୍ଣ୍ଣଭାବେ ବିକଶିତ ଓ ନିଖୁଣ ଭାବେ ନିଷ୍ପାଦିତ ହୋଇଥିବା ଏହି ମନ୍ଦିର ଭାରତର ସର୍ବୋତ୍ତମ ମନ୍ଦିରମାନଙ୍କ ମଧ୍ୟରେ ଅନ୍ୟତମ । ଜଗମୋହନ, ନାଟମନ୍ଦିର, ଭୋଗମଣ୍ଡପ, ୪୫ ମିଟର ଉଚ୍ଚତା ବିଶିଷ୍ଟ ଶିଖର ଥାଇ ଏହି ବିଶାଳ ମନ୍ଦିର ଚତୁଃପାର୍ଶ୍ୱରେ ଅନେକ କ୍ଷୁଦ୍ରକାୟ ମନ୍ଦିର ରହିଛି । ଏସବୁ ମନ୍ଦିରର ମହତ୍ତ୍ୱ ଓ ଗରିମା ବୃଦ୍ଧି କରୁଛି । ଭୁବନେଶ୍ୱରରେ ବିଭିନ୍ନ ଶ୍ରେଣୀର ବହୁ ସଂଖ୍ୟକ ମନ୍ଦିର ରହିଛି, ଯାହାକୁ ଆମେ ମନ୍ଦିରର ଏକ ପ୍ରକୃତ ସଂଗ୍ରହାଳୟ କହିପାରିବା ।

ପୁରୀଠାରେ ଥିବା ଜଗନ୍ନାଥ ମନ୍ଦିର ଓଡ଼ିଶାର ପୂର୍ବ ଗଙ୍ଗରାଜାମାନଙ୍କର ଏକ କୀର୍ତ୍ତି । ଏକ ଉଚ୍ଚ ପ୍ଲାଟ୍‌ଫର୍ମରେ ଦଣ୍ଡାୟମାନ ଏହି ବିଶାଳକାୟ ସୌଧ ସିଂହଦ୍ୱାର ପର୍ଯ୍ୟନ୍ତ ୨୨ଟି ପାବଚ୍ଛ ଦ୍ୱାରା ସଂଯୁକ୍ତ । ପ୍ରାଚୀନ ମନ୍ଦିର ସ୍ଥାପତ୍ୟର ପୁଞ୍ଜିଭୂତ ଅନୁଭୂତିର ଫଳ ଏଠାରେ ପରିପ୍ରକାଶ ପାଇଛି । ସମସ୍ତ ମୁଖ୍ୟ ମନ୍ଦିରଟି ମୋଟା ଅସ୍ତରଣ ଦ୍ୱାରା ଆଚ୍ଛାଦିତ ହୋଇଥିବାରୁ ଏହା 'ହ୍ୱାଇଟ୍ ପାଗୋଡ଼ା' ନାମରେ ଖ୍ୟାତ । ପ୍ରସ୍ତର ଖୋଦେଇ କାରୁକାର୍ଯ୍ୟ ଲୋକଲୋଚନକୁ ଆଣିବା ପାଇଁ ଇତିମଧ୍ୟରେ ଭାରତୀୟ ପ୍ରତ୍ନତାତ୍ତ୍ୱିକ ସଂସ୍ଥା ଦ୍ୱାରା ଏହି ଆସ୍ତରଣକୁ ହଟାଇ (ଛଡ଼ାଇ) ଦିଆଯାଇଛି ।

ଗଙ୍ଗ କଳାଚାତୁରୀର ସର୍ବୋତ୍କୃଷ୍ଟ ନିଦର୍ଶନ ତଥା ଭାରତୀୟ ହିନ୍ଦୁ ସ୍ଥାପତ୍ୟର ସର୍ବବୃହତ୍ କୀର୍ତ୍ତି ହେଉଛି କୋଣାର୍କର ସୂର୍ଯ୍ୟ ମନ୍ଦିର ଯାହାକୁ ଅଶ୍ୱଚାଳିତ ରଥ ଭାବେ ପରିକଳ୍ପନା କରାଯାଇଛି । ଏହି ରଥରେ ୨୪ଟି ଚକ୍ର ଓ ୭ଟି ଅଶ୍ୱ ରହିଛି । ଏହି ରଥର ଚକ୍ରଗୁଡ଼ିକ କଳାର ଶେଷ ସୋପାନରେ ପହଞ୍ଚିଛି । ବିଶାଳକାୟ ଆକୃତି ସତ୍ତ୍ୱେ ମନ୍ଦିରଟି ନିଖୁଣ ଓ ସମାନୁପାତିକ ଭାବେ ନିର୍ମିତ ହୋଇଛି । ଏହାର କାରିଗରୀ ପାଇଁ ଏହା ବିଶ୍ୱରେ ପ୍ରସିଦ୍ଧି ଲାଭ କରିଛି । ରବୀନ୍ଦ୍ରନାଥ ଟାଗୋର କୋଣାର୍କ ଉପରେ କହିଛନ୍ତି – ''ଏଠାରେ ମଣିଷର ଭାଷା ପ୍ରସ୍ତରର–ଭାଷା ଦ୍ୱାରା ପରାଜିତ ହୋଇଛି ।''

### ମନ୍ଦିର ଭାସ୍କର୍ଯ୍ୟ

ମନ୍ଦିର ଭାସ୍କର୍ଯ୍ୟ ମୋଟାମୋଟି ଭାବେ ୨ ଭାଗରେ ବିଭକ୍ତ, ଗୋଟିଏ ହେଉଛି ପୂଜାର୍ଚ୍ଚନା ପାଇଁ ନିର୍ମିତ ମୂର୍ତ୍ତି ଓ ଅନ୍ୟଟି ହେଲା ବିଭିନ୍ନ ବିଷୟ ସମ୍ବଳିତ ସୁଶୋଭିତ କାରୁକାର୍ଯ୍ୟ । ପ୍ରଥମ ବିଭାଗରେ ଶିବ ମନ୍ଦିରର ବାହାର କାନ୍ଥରେ ଥିବା ଗଣେଶ, କାର୍ତ୍ତିକେୟ ଓ ଦୁର୍ଗାଙ୍କ ମୂର୍ତ୍ତି, ବିଷ୍ଣୁ ମନ୍ଦିରର ବାହ୍ୟପାର୍ଶ୍ୱରେ ଥିବା ବରାହ, ତ୍ରିବିକ୍ରମ, ନୃସିଂହ ଏବଂ ଦଶାବତାର, ନିର୍ଦ୍ଦିଷ୍ଟ କୋଣରେ ଥିବା ଦଶଦିଗପାଳ, ସ୍ଥିରୀକୃତ ସ୍ଥାନରେ ଥିବା ଦିଗଚାରିଣୀ ଏବଂ ବେତାଳଗଣ ଓ ପ୍ରାୟ ସମସ୍ତ ମନ୍ଦିରର ସମ୍ମୁଖ ଭାଗ ଦ୍ୱାରବନ୍ଧ ଉପରେ ଧାଡ଼ିରେ ରହିଥିବା ଅଷ୍ଟଗ୍ରହ ବା ନବଗ୍ରହ ଏବଂ ଏହି ନବଗ୍ରହଙ୍କ ଧାଡ଼ି ଉପରେ ଥିବା ଗଜଲକ୍ଷ୍ମୀ । ଏତଦ୍‌ବ୍ୟତୀତ ଦେବାଦେବୀଗଣ ଏବଂ ଧାର୍ମିକ ଉପାଖ୍ୟାନମାନ ଚିତ୍ରଣ ଏକ ଧର୍ମୀୟ ବାତାବରଣ ସୃଷ୍ଟି କରିବାରେ ସହାୟକ ହୁଅନ୍ତି । ଯଦିଓ ଗୋଟିଏ ମନ୍ଦିରରେ ପୂଜା ପାଉଥିବା ମୂର୍ତ୍ତିଗୁଡ଼ିକ ଅଧିକ ସଂଖ୍ୟାରେ ଥାଆନ୍ତି, ସେମାନେ ଗୋଟିଏ ଧର୍ମଧାରା ମଧ୍ୟରେ ସୀମିତ ନ'ଥାନ୍ତି । ଅର୍ଦ୍ଧନାରୀଶ୍ୱର ଏବଂ ଗନ୍ଧରାଡ଼ିର ହରିହର ମୂର୍ତ୍ତି ଧର୍ମୀୟ ସମନ୍ୱୟର ପ୍ରତିଫଳନ କରେ । ସ୍ଥପତିମାନଙ୍କର ଉଚ୍ଚକୋଟୀର ପରିକଳ୍ପନା ଥିଲା ଏବଂ ସବୁ ପ୍ରକାର ଚିନ୍ତାଧାରାର ଭୈରବ ଓ ଦୁର୍ଗା ମୂର୍ତ୍ତି ମନ୍ଦିରମାନଙ୍କରେ ଦେଖିବାକୁ ମିଳେ ।

ସୁଶୋଭିତ ସ୍ଥାପତ୍ୟଗୁଡ଼ିକ ଭିତରେ ପୁରୁଷ ଓ ନାରୀ ପ୍ରତିମୂର୍ତ୍ତି, କାମୋଦ୍ଦୀପକ ଦୃଶ୍ୟ, ଗନ୍ଧର୍ବ, ନାଗ, ପକ୍ଷ, କିନ୍ନର, ପୁରାଣ ବର୍ଣ୍ଣିତ ଅଦ୍ଭୁତ ପ୍ରାଣୀ, ପ୍ରହେଳିକାମୟ ଛବି, ସାମରିକ, ଓ ରାଜଦରବାର ସମ୍ବନ୍ଧୀୟ ଦୃଶ୍ୟ, ଧର୍ମନିରପେକ୍ଷ ଚିତ୍ର, ଲୋକକଥା ଓ କାହାଣୀ, ମୋଡ଼ା କାଗଜରେ ରହିଥିବା ନାମ ତାଲିକା, ପୁଷ୍ପ ଓ ଜ୍ୟାମିତିକ ଚିତ୍ର, ଚୈତ୍ୟ ତୋରଣ, ପଦ୍ମ ପଦକ, ବୃକ୍ଷଲତା ଓ ଅନ୍ୟାନ୍ୟ ବିଭୂଷିତ ଡ଼ିଜାଇନ ଆଦି ଦେଖିବାକୁ ମିଳେ ।

ଓଡ଼ିଶା ମନ୍ଦିର ଭାସ୍କର୍ଯ୍ୟର କେତେକ ସୂକ୍ଷ୍ମ ଚାରୁକଳା ମୁକ୍ତେଶ୍ୱର, ରାଜାରାଣୀ ଓ ଲିଙ୍ଗରାଜ ମନ୍ଦିରରେ ପରିଦୃଷ୍ଟ ହୁଏ । ମନ୍ଦିର କାନ୍ଥଗୁଡ଼ିକ ଯୌବନ ସୁଲଭ ଚିତ୍ରଗୁଡ଼ିକୁ ଅତ୍ୟନ୍ତ ନିଖୁଣ ଭାବେ ଚିତ୍ରିତ କରାଯାଇଛି । ନିହାଣ ମୁନରେ ଖୋଦେଇ ହୋଇ ପ୍ରକାଶ ପାଉଥିବା ସେମାନଙ୍କର ସ୍ମିତହାସ୍ୟ ସମୟର ପ୍ରବହମାନ ଗତି ଓ ଅବକ୍ଷୟର ଧାରାକୁ ପରାସ୍ତ କରିଛି । ମନ୍ଦିର କଳାର ଏକ ମହତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ ହେଉଛି ମନ୍ଦିରର ବାହାର ପାର୍ଶ୍ୱରେ ଚିତ୍ରିତ ହୋଇଥିବା କାମୋଦ୍ଦୀପକ ଭାସ୍କର୍ଯ୍ୟ, ଯାହାକି ଦର୍ଶାଉଛି ଯେ ଧର୍ମ କେବେହେଲେ ସାଧାରଣ ଜୀବନଠାରୁ ଅଲଗା ହୋଇ ପାରିବ ନାହିଁ । ଏହାର ଅର୍ଥ ମଧ୍ୟ ହେଉଛି ଜୀବନ ହେଉଛି ମାୟା ମୋହର ଗନ୍ତାଘର ଏବଂ କାମନା ଆତ୍ମମାନଙ୍କୁ ଜୀବନ ଓ ମୃତ୍ୟୁ ଚକ୍ର ମଧ୍ୟରେ ବାନ୍ଧି ରଖିଛି । ସଙ୍ଗୀତ ଓ ନୃତ୍ୟରତା ମହିଳାମାନେ ମଧ୍ୟ ମନ୍ଦିର କଳାରେ ସ୍ଥାନ ପାଇଛନ୍ତି ଓ ସେଗୁଡ଼ିକର ସ୍ଥାପତ୍ୟକଳାର ମାନ ଅତି ଉଚ୍ଚକୋଟୀର । ବୃହତ୍‌କାୟ ହସ୍ତୀ, ଅଶ୍ୱ ଓ ସିଂହ କୋଣାର୍କ ମନ୍ଦିର ପରିସରରେ ମଧ୍ୟ ବହୁଳଭାବେ ଦେଖିବାକୁ ମିଳେ ।

### ଅନ୍ୟାନ୍ୟ ଭାସ୍କର୍ଯ୍ୟ

ଏତଦ୍‌ବ୍ୟତୀତ ଓଡ଼ିଶାର ଚାରିଆଡ଼େ ବହୁ ସଂଖ୍ୟକ ଭାସ୍କର୍ଯ୍ୟର ଭଣ୍ଡାର ବିକ୍ଷିପ୍ତଭାବେ ରହିଛି । ଏକ ବିରାଟ ପ୍ରସ୍ତରରୁ ଖୋଦିତ ହୋଇ ଅଧା ବାହାରି ଆସିଥିବା ଏକ ହସ୍ତୀର ମୂର୍ତ୍ତି ରହିଛି, ଯେଉଁଠାରେ ଅଶୋକ ତାଙ୍କର ଶିଳାଲେଖମାନ ଲେଖାଇଥିଲେ । ପୁରୀର ଜଗନ୍ନାଥ ମନ୍ଦିରର ପ୍ରାଙ୍ଗଣରେ କଳା ଗ୍ରାନାଇଟ୍‌ରେ ନିର୍ମିତ ଏକ ବିଶାଳକାୟ ନୃସିଂହଙ୍କ ମୂର୍ତ୍ତି ସ୍ଥାନିତ ହୋଇଛି । ସୁନ୍ଦର କଳାକୌଶଳରେ ନିର୍ମିତ ଏହି ଚମତ୍କାର ମୂର୍ତ୍ତିଟି ଭଗବାନଙ୍କର ଭୟଙ୍କର ମୁଦ୍ରାକୁ ପରିପ୍ରକାଶ କରୁଛି । ସିଂହଦ୍ୱାର ଓଡ଼ିଶା କଳା ଓ ସ୍ଥାପତ୍ୟର ଏକ ମହତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ । ମନ୍ଦିରର ଦ୍ୱାରଦେଶରେ ସିଂହମାନେ ସ୍ଥାପିତ ହୋଇଛନ୍ତି ଯେଉଁଥିପାଇଁ ମନ୍ଦିରର ଦ୍ୱାରକୁ ସିଂହଦ୍ୱାର ବୋଲି କୁହାଯାଉଛି । ସିଂହମାନେ ସ୍ୱାଭାବିକ ଭାବେ ନିର୍ମାଣ ହୋଇନାହାନ୍ତି । ସେମାନଙ୍କର ବଡ଼ ତୀକ୍ଷ୍ଣ ନାସା ଓ ମୋଟା ନିଶ ରହିଛି । ଅନ୍ୟତ୍ର ହସ୍ତୀ ଉପରେ ସିଂହ ବସିଥିବାର ଦେଖାଯାଏ ଏବଂ ଏହା ବିଷୟ ଉପରେ ଜୀବାତ୍ମାର ବିଜୟ

ବୋଲି ପ୍ରତୀକାତ୍ମକ ଭାବେ ଦର୍ଶାଯାଇଛି । ଏହିପରି ଏହା ପ୍ରମାଣିତ କରୁଛି ଯେ ଓଡ଼ିଶାର ମୁଖ୍ୟ ମନ୍ଦିରଗୁଡ଼ିକ ଭାରତର ଅନ୍ୟ କୌଣସି ମନ୍ଦିରଠାରୁ ଉଚ୍ଚମାନର ମହତ୍ୱ ପ୍ରତିପାଦନ କରେ ଏବଂ ଏଗୁଡ଼ିକ ଅତୁଳନୀୟ । ଓଡ଼ିଶୀୟ ଭାସ୍କର୍ଯ୍ୟର ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟ ଓ ସୌନ୍ଦର୍ଯ୍ୟ କୁତ୍ରାପି ଦେଖିବାକୁ ମିଳେ ନାହିଁ ।

**ହସ୍ତଶିଳ୍ପ**

ଓଡ଼ିଶା ତା'ର ହସ୍ତଶିଳ୍ପ ପାଇଁ ପ୍ରସିଦ୍ଧ, ଯାହା ତା'ର କାରିଗରମାନଙ୍କର ସୃଜନଶୀଳତା ଓ କୌଶଳକୁ ପ୍ରଦର୍ଶନ କରେ । ଓଡ଼ିଶାର ପିତ୍ତଳ କାମ, ରୂପାକାମ, ଟେରାକୋଟା ସାମଗ୍ରୀ ଓ ଚାନ୍ଦୁଆ କାମ ଇତ୍ୟାଦି ତା'ର କଳାତ୍ମକ ଉତ୍କର୍ଷତାର ପ୍ରମାଣ ଦିଏ ।

**କଂସା ପିତ୍ତଳ କାମ**

ପିତ୍ତଳ ଓ କଂସା ବାସନ ଉପରେ ସୂକ୍ଷ୍ମ ଖୋଦେଇ, ବ୍ରୋଞ୍ଜ ଚୁଡ଼ି ଓ ପାତ୍ର ଓଡ଼ିଶା କଳାର ଗୁରୁତ୍ୱପୂର୍ଣ୍ଣ ଦିଗ । ଧାତୁ ନିର୍ମିତ ଦ୍ରବ୍ୟ ବିଶେଷକରି ପିତ୍ତଳ ଜିନିଷ ଓଡ଼ିଶାର ଘରେ ଘରେ ମର୍ଯ୍ୟାଦାର ସହ ସ୍ଥାନ ପାଏ । ଠାକୁର ପୂଜା କଲାବେଳେ ସୁନ୍ଦର ସୁନ୍ଦର ଦୀପ ଓ ଦୀପରୁଖା ବ୍ୟବହୃତ ହୁଏ । ଅଧିକାଂଶ ଘରେ ଧାନ ଚାଉଳ ମାପିବା ପାଇଁ ପିତ୍ତଳ ନିର୍ମିତ ମାଣ ବ୍ୟବହାର କରାଯାଏ । କାରିଗରମାନେ ପିତ୍ତଳରେ ହାତୀଘୋଡ଼ା ତିଆରି କରନ୍ତି ଓ ସେଗୁଡ଼ିକୁ ସୂକ୍ଷ୍ମ ଡ଼ିଜାଇନ୍‌ରେ ସଜ୍ଜିତ କରନ୍ତି । ପାନ ଖାଉଥିବା ଲୋକମାନଙ୍କ ପାଇଁ ତିଆରି ହୋଇଥିବା ପିତ୍ତଳ ଦାନି ଉଭୟ ଦରକାରୀ ଓ ଶୋଭାବର୍ଦ୍ଧକ ହୋଇଥାଏ । ପିତ୍ତଳ ଓ କଂସାରେ ନିର୍ମିତ ଘରକରଣା ସାମଗ୍ରୀ ଓ ବାସନ ବିଭିନ୍ନ ଆକାର ଓ ଆକୃତିର ହୋଇଥାଏ । ଓଡ଼ିଶାର ପିତ୍ତଳ ସାମଗ୍ରୀ କାରିଗରମାନଙ୍କର କଳାକୌଶଳ ଓ ନୂତନ ସାମଗ୍ରୀ ସୃଷ୍ଟି ନିମନ୍ତେ ସେମାନଙ୍କର ଆଗ୍ରହକୁ ପ୍ରତିପାଦିତ କରେ ।

**ରୂପା ଓ ତାରକସୀ କାମ**

ଓଡ଼ିଶାର ରୂପାକାମ ସର୍ବତ୍ର ଖ୍ୟାତିଲାଭ କରିଛି । ବିଶେଷକରି ଏହାର ତାରକସୀ କାମ କଳାତ୍ମକ ଉତ୍କର୍ଷତାର ନୂତନ ଉଦାହରଣ ସୃଷ୍ଟି କରିଛି, ଯାହା ଭାରତର ଅନ୍ୟ ସ୍ଥାନମାନଙ୍କରେ ଦେଖିବାକୁ ବିରଳ । ଅତ୍ୟନ୍ତ ନମନୀୟ ହୋଇଥିବା ରୂପାତାରକୁ ଖୁବ୍ ସୂକ୍ଷ୍ମ ଡ଼ିଜାଇନ୍‌ରେ ପରିବର୍ତ୍ତିତ କରାଯାଇଥାଏ । ବିଭିନ୍ନ ପ୍ରକାରର ପଶୁପକ୍ଷୀ, ସିନ୍ଦୂର ଫରୁଆ ଭଳି ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀଗୁଡ଼ିକ ମଧ୍ୟ ରୂପା ତାରରେ ନିର୍ମିତ ହୁଏ । ତାରକସୀ ଗହଣା ବିଶେଷତଃ ବକ୍ଷସ୍ଥଳ ବସ୍ତ୍ର ଆବୃତ କରିବା ପାଇଁ ପିନ୍ ଭଳି ଏକ ପ୍ରକାର ଅଳଙ୍କାର ଓ କାନଫୁଲ ଆଦି ଭାରତୀୟ ମହିଳାମାନଙ୍କ ମଧ୍ୟରେ ଖୁବ୍ ପ୍ରସିଦ୍ଧ । ରୂପା କାମରେ ମହାଭାରତର ଦୃଶ୍ୟ ମଧ୍ୟ ଚିତ୍ରଣ କରାଯାଏ । ଅର୍ଜୁନଙ୍କ ରଥକୁ ଶ୍ରୀକୃଷ୍ଣ ସାରଥୀଭାବେ ଚାଳନା କରିବା ଦୃଶ୍ୟଟି ରୂପାକାମ ମଧ୍ୟରେ ଅତୀବ ଆକର୍ଷଣୀୟ । ରଥ ଚକଗୁଡ଼ିକର କାମ ଏତେ ଟିକିନିଖିଭାବେ କରାଯାଇଛି ଯେ ଦର୍ଶକ ଏହାକୁ ଦେଖି ବିମୁଗ୍ଧ ହୁଏ । ରଥର ସୌନ୍ଦର୍ଯ୍ୟ, ଅଶ୍ୱମାନଙ୍କର ଗର୍ବିତ ଠାଣୀ ଓ ଜୀବନ୍ତ ଛବି ଏହି ରୌପ୍ୟ ସାମଗ୍ରୀର ଗରିମା (ମର୍ଯ୍ୟାଦା) ବୃଦ୍ଧି କରେ ।

**ଟେରାକୋଟା ଓ ମୃଣ୍ମୟ ସାମଗ୍ରୀ**

ଓଡ଼ିଶାର କୁମ୍ଭକାରମାନେ ଏବେ ମଧ୍ୟ ବିଭିନ୍ନ ଧାର୍ମିକ ଓ ସାମାଜିକ କାର୍ଯ୍ୟକ୍ରମ ପାଇଁ ମାଟିରେ ତିଆରି ପାତ୍ର ଗଢ଼ନ୍ତି । ସେଗୁଡ଼ିକ ବିଭିନ୍ନ ଆକାର ଓ ଆକୃତିର ହୋଇଥାଏ ଓ ତାହା ଉପରେ ମାଛ, ଫୁଲ ଓ ଜ୍ୟାମିତିକ ନକ୍‌ସା ଆଦି ଅଙ୍କାଯାଇଥାଏ । ଧାର୍ମିକ ପର୍ବପର୍ବାଣି ସମୟରେ ସ୍ଥାନୀୟ ଲୋକଙ୍କ ଚାହିଦା ପୂରଣ ନିମନ୍ତେ ଟେରାକୋଟା ହାତୀ ଓ ଘୋଡ଼ା ତିଆରି କରାଯାଇଥାଏ । ରୋଗ ଓ ବିପଦରୁ ରକ୍ଷା ପାଇବା ସକାଶେ ସେଗୁଡ଼ିକୁ ଗ୍ରାମଦେବତୀଙ୍କ ନିକଟରେ ଅର୍ପଣ କରାଯାଏ । ଆକାରରେ ଏଗୁଡ଼ିକ ୬ ଇଞ୍ଚରୁ ୩ ଫୁଟ୍ ପର୍ଯ୍ୟନ୍ତ ହୋଇଥାଏ । କୁମ୍ଭାର ମଧ୍ୟ ମାଟି ତିଆରି ଖେଳନା ଓ ମଣିଷର ଆକର୍ଷଣୀୟ ମୂର୍ତ୍ତି ତିଆରି କରେ । ସେଗୁଡ଼ିକ ଜୀବନ୍ତ ପ୍ରାଣୀର ଆବଶ୍ୟକୀୟ ଗୁଣ ବହନ କରନ୍ତି । ଟେରାକୋଟା କଣ୍ଢେଇ ଓଡ଼ିଶାର ପ୍ରତ୍ୟେକ ସ୍ଥାନରେ ତିଆରି ହୁଏ । କଣ୍ଢେଇଗୁଡ଼ିକ ସାଧାସିଧା ଶୈଳୀରେ ତିଆରି ହୁଅନ୍ତି ଓ ସ୍ଥାନୀୟ ଅଞ୍ଚଳର ବିଶେଷତା ଥାଏ ।

### ସବାଇ ଘାସ ଓ ବେତ କାମ

ମହିଳା ଗୋଷ୍ଠୀ ଦ୍ୱାରା ସବାଇ ଘାସରେ ବାସ୍କେଟ୍, ହାତପଙ୍ଖା ଓ ଟେବୁଲ୍‌ମ୍ୟାଟ୍ ବୁଣାଯାଏ । ସବାଇ ଘାସରୁ ସପ ମଧ୍ୟ ତିଆରି କରାଯାଏ । ଏସବୁ ସାମଗ୍ରୀର ଚାହିଦା ଏବେ ବଢ଼ିଯାଇଛି ଏବଂ ଏଥିରୁ ଏହାର ସୌନ୍ଦର୍ଯ୍ୟ, ଉପଯୋଗିତା ଓ ଦୀର୍ଘସ୍ଥାୟିତ୍ୱ ପ୍ରମାଣିତ ହୁଏ । ବାସ୍କେଟ୍ ଓ ଅନ୍ୟାନ୍ୟ ଆସବାବପତ୍ର ବେତରେ ମଧ୍ୟ ବୁଣାଯାଇଥାଏ ।

### ଚାନ୍ଦୁଆ କାମ

ପିପିଲିର ଦର୍ଜୀମାନଙ୍କ ଦ୍ୱାରା ପ୍ରସ୍ତୁତ କରାଯାଉଥିବା ଚାନ୍ଦୁଆ କାମର ଅନେକ ଚାହିଦା ରହିଛି । ପର୍ବପର୍ବାଣିରେ ବ୍ୟବହାର କରିବା ପାଇଁ ଚାନ୍ଦୁଆରେ ବହୁତ ବଡ଼ ଆକାରର ଛତାମାନ ତିଆରି କରାଯାଏ । ବଗିଚାରେ ବିସ୍ତୃତ ପ୍ରାନ୍ତରରେ ଏହି ଛତାଗୁଡ଼ିକ ବ୍ୟବହୃତ ହୁଏ, ଯାହାକି କୌଣସି ସମାବେଶର ମାଧୁର୍ଯ୍ୟ ଓ ମହତ୍ୱ ବଢ଼ାଇଥାଏ । ଚାନ୍ଦୁଆରୁ ହୃଦୟାକୃତି ପଙ୍ଖା, ଛୋଟବଡ଼ ଛତ୍ରୀ ଏବଂ କାନ୍ଥ ଝାଲର ମଧ୍ୟ ପ୍ରସ୍ତୁତ କରାଯାଏ । ଦର୍ଜୀମାନେ ଗାଢ଼ ରଙ୍ଗର କପଡ଼ାରୁ ପଶୁ, ପକ୍ଷୀ, ପୁଷ୍ପ ଓ ଜ୍ୟାମିତିକ ଡ଼ିଜାଇନ୍‌ର ଛବି ସବୁ କାଟି ବାହାର କରନ୍ତି ଏବଂ ଏଗୁଡ଼ିକ ଅନ୍ୟ ଖଣ୍ଡେ କପଡ଼ା ଉପରେ ରଖି ସମାନୁପାତିକ ଭାବେ ମିଶାଇ ସିଲେଇ କରିଦିଅନ୍ତି, ଯାହାକି ଅତ୍ୟନ୍ତ ମନଲୋଭା ଦେଖାଯାଏ । ଉଜ୍ଜ୍ୱଳ ହଳଦିଆ, ଧଳା, ସବୁଜ ନୀଳ, ନାଲି ଓ କଳା ରଙ୍ଗକୁ ସୁସଙ୍ଗତ ଭାବେ ପ୍ରସ୍ତୁତ କରାଯାଏ, ଯାହା ଦର୍ଶକର ଆଖିକୁ ଚମକାଇ ଦିଏ ଓ ଧର୍ମୀୟ ପରିବେଶକୁ ଅଧିକ ଆକର୍ଷଣୀୟ କରେ । ଚାନ୍ଦୁଆ ଡ଼ିଜାଇନ୍‌ର ବିଭିନ୍ନ ଆକାର ଓ ଆକୃତିର ବ୍ୟାଗ୍ ମଧ୍ୟ ତିଆରି କରାଯାଏ । ଚାନ୍ଦୁଆ ଛତା ଓ ''ତରାସ'' (ମୁନିଆ ବାଡ଼ି ଉପରେ ଆଶ୍ରା କରି ଠିଆ ହୋଇଥିବା ହୃଦୟାକୃତି କାଷ୍ଠ ସଂରଚନା ଉପରେ ଆବୃତ କରିଥିବା ଚାନ୍ଦୁଆ କାମ) ଧର୍ମୀୟ ଶୋଭାଯାତ୍ରାକୁ ଅଧିକ ରଙ୍ଗୀନ୍ କରି ଗଢ଼ିତୋଳେ । ବିବାହ ଉତ୍ସବଗୁଡ଼ିକରେ ମଞ୍ଚ ଉପରେ ସଜ୍ଜା ହୋଇଥିବା ବଡ଼ ବଡ଼ ଚାନ୍ଦୁଆ ଛତ୍ରୀ ଦର୍ଶକମାନଙ୍କ ମନହରଣ କରେ । ମନ୍ଦିରମାନଙ୍କରେ ଦିଅଁମାନଙ୍କ ଉପରେ ଧୂଳି ନ ପଡ଼ିବା ପାଇଁ ଛତ୍ରୀସବୁ ଝୁଲାଯାଇଥାଏ ।

### ଶିଙ୍ଗ କାମ

ଗୋରୁଗାଈମାନଙ୍କ ଶିଙ୍ଗରୁ ବିଭିନ୍ନ ପ୍ରକାର ଜିନିଷ ଯଥା– ପାନିଆ, ଫୁଲଦାନୀ ଓ ପେନ୍‌ଷ୍ଟାଣ୍ଡ୍ ଆଦି ତିଆରି କରିବାରେ ଓଡ଼ିଶାର କାରିଗରମାନେ ନିପୁଣ । ଶିଙ୍ଗକୁ ପ୍ରଥମେ ଘଷି ଚିକ୍କଣ କରାଯାଏ ଓ ପରେ ସେଗୁଡ଼ିକୁ ବିଭିନ୍ନ ରୂପ ଦିଆଯାଏ । ଶିଙ୍ଗରେ ବଗ, ବଡ଼ ଚିଙ୍ଗୁଡ଼ି, କଙ୍କଡ଼ା ବିଛା ଓ ପକ୍ଷୀ ଇତ୍ୟାଦି ଅତ୍ୟନ୍ତ ନିପୁଣତାର ସହ ପ୍ରସ୍ତୁତ କରାଯାଏ । ସେଗୁଡ଼ିକର ପୃଷ୍ଠଭାଗ ଅତ୍ୟନ୍ତ କଳା ଅଥଚ ଚିକ୍କଣିଆ ଦେଖାଯାଏ । କଳାପ୍ରେମୀମାନଙ୍କର ଏହା ଦୃଷ୍ଟି ଆକର୍ଷଣ କରେ ।

### ଶାଢ଼ି ଓ ଅନ୍ୟାନ୍ୟ ବୟନ ସାମଗ୍ରୀ

ଓଡ଼ିଶା ହସ୍ତଶିଳ୍ପରେ ହସ୍ତତନ୍ତ ଶାଢ଼ି ସମ୍ଭବତଃ ସବୁଠାରୁ ଅଧିକ ଜନପ୍ରିୟ ସାମଗ୍ରୀ । ସମସ୍ତଙ୍କ ରୁଚିକୁ ନେଇ ଓ ଆର୍ଥିକ ସ୍ଥିତିକୁ ସୁହାଇଲା ଭଳି ବିଭିନ୍ନ ପ୍ରକାର ରଙ୍ଗ ଓ ଡ଼ିଜାଇନ୍‌ର ଶାଢ଼ି ମିଳେ । ସାଧାରଣତଃ ଘରୋଇ କିମ୍ବା ସମବାୟ ନିଗମ ମାଧ୍ୟମରେ ସମ୍ବଲପୁର ଜିଲ୍ଲାର ଗ୍ରାମୀଣ ଲୋକେ ତନ୍ତରେ ଶାଢ଼ି ବୁଣନ୍ତି । ସମ୍ବଲପୁର ସୂତା ଶାଢ଼ିର ସାବଲୀଳତା ଓ ଧଡ଼ି ଓ ଆଞ୍ଚଲ୍‌ର ନିର୍ଦ୍ଦିଷ୍ଟ ସ୍ୱତନ୍ତ୍ରତା ରହିଛି । ମାଛ, ଶଙ୍ଖ ଓ ଫୁଲ ଡ଼ିଜାଇନ୍‌ର ଚିତ୍ର ଶାଢ଼ି ଉପରେ ବୁଣାଯାଇଥାଏ । ଧଡ଼ି ଓ ଆଞ୍ଚଲ୍‌କୁ ଆକର୍ଷଣୀୟ କରିବା ପାଇଁ କେବେ କେବେ ପଶୁପକ୍ଷୀମାନଙ୍କ ଡ଼ିଜାଇନ୍ ମଧ୍ୟ ବୁଣାଯାଏ । ସ୍ଥାନୀୟ କଞ୍ଚାମାଲକୁ ବ୍ୟବହାର କରି ଗ୍ରାମୀଣ କାରିଗରମାନେ ସିଲ୍କ ଶାଢ଼ି ମଧ୍ୟ ପ୍ରସ୍ତୁତ କରନ୍ତି । ଖଣ୍ଡୁଆ ପାଟରେ ଅଧିକ ଆକର୍ଷଣୀୟ ଡ଼ିଜାଇନ୍ ଓ ମସୃଣତା ରହିଛି । ବାପ୍ତା ଶାଢ଼ିରେ ଉଭୟ ସୂତା ଓ ସିଲ୍କ୍ ବ୍ୟବହାର କରାଯାଏ । ବ୍ରହ୍ମପୁରୀ ପାଟ ଶାଢ଼ିକୁ ସମ୍ଭ୍ରାନ୍ତ ଓ ଆଧୁନିକ ମହିଳାମାନେ ପରିଧାନ କରନ୍ତି । ଶାଢ଼ିଗୁଡ଼ିକ ପ୍ରସ୍ତୁତ ହେଉଥିବା ସ୍ଥାନର ନାମ, ସୂତା ରିଲ୍‌ର ଗୁଣବତ୍ତା ଏବଂ ବୁଣାଯାଇଥିବା ଡ଼ିଜାଇନ୍‌ର କୌଶଳ

ଉପରେ ନାମିତ ହୋଇଥାଏ । ଓଡ଼ିଶାର ହାତବୁଣା ବେଡ୍‌ସିଟ୍, ବେଡ଼ କଭର୍, ଟେବୁଲ୍ କ୍ଲଥ୍, ପରଦା ଓ ଡ୍ରେସ୍ କପଡ଼ା ମଧ୍ୟ ସମଗ୍ର ଭାରତରେ ଆଦୃତି ଲାଭ କରିଛି ।

**ପଟ୍ଟଚିତ୍ର**

ଓଡ଼ିଶାର ପୁରୀ, ରଘୁରାଜପୁର ଓ ଦଣ୍ଡସାହି ଅଞ୍ଚଳର କୁଶଳୀ ପାରମ୍ପରିକ ଚିତ୍ରକରମାନେ ଲୋକକଳା ପଟ୍ଟଚିତ୍ର ତିଆରି କରନ୍ତି । ପଟ୍ଟଚିତ୍ର ଶବ୍ଦଟି ସଂସ୍କୃତ ଶବ୍ଦ ପଟ୍ଟ (ରଙ୍ଗ କରାଯାଉଥିବା ଖଣ୍ଡେ କପଡ଼ା ବା ପ୍ଲେଟ୍) ଓ ଚିତ୍ର (ଡ୍ରଇଁ ବା ଛବି)ରୁ ଉଦ୍ଧୃତ କରାଯାଇଛି । ପୁରୀ ଜିଲ୍ଲାର ପୁରୀ, ରଘୁରାଜପୁର ଓ ଦଣ୍ଡସାହିର ଚିତ୍ରକରମାନେ ଏକ ଦେଶୀୟ ଚିତ୍ରକଳା ମତବାଦ ଶ୍ରେଣୀର, ଯାହା ବହୁ ପୂର୍ବରୁ ଆରମ୍ଭ ହୋଇଥିଲା । ଏହି ପ୍ରାଚୀନ ପରମ୍ପରାଟି ଏବେ ମଧ୍ୟ ଚିତ୍ରକର ଓ ସେମାନଙ୍କ ମହିଳା ଗୋଷ୍ଠୀ ଦ୍ୱାରା ଚଳି ଆସୁଛି । ସୁନ୍ଦର ଭାବେ ତିଆରି ହୋଇଥିବା ଏହି ପଟ୍ଟଚିତ୍ରଗୁଡ଼ିକରେ ଲୋକକଳା ଓ ଆଧୁନିକ କଳାର ମୌଳିକ ଉପାଦାନ ଭରି ରହିଛି । ବାର୍ଷିକ ରଥଯାତ୍ରା ପାଳନରୁ ହିଁ ପଟ୍ଟଚିତ୍ରର ଜନ୍ମ । ଓଡ଼ିଶାର ଆକର୍ଷଣୀୟ ପର୍ବପର୍ବାଣି ମଧ୍ୟରୁ ଏହା ଅନ୍ୟତମ । ଯେତେବେଳେ ପ୍ରଭୁ ଜଗନ୍ନାଥ ବଡ଼ଭାଇ ବଳଭଦ୍ର ଓ ଭଉଣୀ ସୁଭଦ୍ରାଙ୍କ ସହିତ ମନ୍ଦିର ଛାଡ଼ି ଭକ୍ତମାନଙ୍କ ଗହଣକୁ ଚାଲି ଆସନ୍ତି, ଜାତି, ଧର୍ମ ବର୍ଣ୍ଣ ନିର୍ବିଶେଷରେ ଯେକୌଣସି ଲୋକ ପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରି ଆଶୀର୍ବାଦ ଲାଭ କରେ । ମାତ୍ର ଏହି ଯାତ୍ରା ପୂର୍ବରୁ ସ୍ନାନ ପୂର୍ଣ୍ଣିମାଠାରୁ ତିନି ଠାକୁର ଘୋଡ଼ାଇ ହୋଇ ରହିଥାଆନ୍ତି । ଅଣବସର ସମୟରେ ଯେତେବେଳେ ତିନିଠାକୁର ନିଭୃତ କକ୍ଷରେ ବିଶ୍ରାମ ନିଅନ୍ତି, ମନ୍ଦିର ଚିତ୍ରକରଙ୍କ ଦ୍ୱାର ନିର୍ମିତ ସ୍ୱତନ୍ତ୍ର ବସ୍ତ୍ର ଉପରେ ପଟ୍ଟଚିତ୍ର ତିଆରି ପଟିଦିଅଁ ମନ୍ଦିର ଗର୍ଭଗୃହରେ ଟଙ୍ଗାଇ ଦିଆଯାଏ ଓ ଭକ୍ତମାନେ ସେମାନଙ୍କୁ ଦର୍ଶନ କରନ୍ତି । ଏହି ରୀତିନୀତିରୁ ଆରମ୍ଭ ହୋଇଥିବା ପଟ୍ଟଚିତ୍ର ପରମ୍ପରା ବିଗତ ବର୍ଷଗୁଡ଼ିକରେ ଏକ ସ୍ୱତନ୍ତ୍ର ଶୈଳୀର ଚିତ୍ରକଳା ରୂପେ ମାନ୍ୟତା ଲାଭ କରିଛି । ଜଗନ୍ନାଥ ମହାପାତ୍ର, ଶ୍ରୀ ଅନନ୍ତ ମହାରଣା ଓ ଅନ୍ୟମାନଙ୍କ ପରି ଚିତ୍ରକାରଙ୍କ କ୍ରମାଗତ ପ୍ରଚେଷ୍ଟା ଯୋଗୁଁ ଏହି କଳା ଜନାଦୃତି ଲାଭ କରିଛି ।

**ବାଲୁକା କଳା**

ଲୋକମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି ତଥା ଉତ୍ସାହ ଆଣିବା ଉଦ୍ଦେଶ୍ୟରେ କେବଳ ବାଲି ସାହାଯ୍ୟରେ ଏକ ଅସ୍ଥାୟୀ କଳା ଭାବେ ବାଲୁକା କଳା ଆଦୃତ ହୋଇଛି । ଅନେକ ଦେଶରେ ବାଲୁକା କଳା ଏକ ଜନପ୍ରିୟ ବୃତ୍ତିଗତ କଳା ଭାବେ ଗଣା ହେଉଛି । ଜନସଚେତନତା ସୃଷ୍ଟି କରିବା ନିମନ୍ତେ ବିଭିନ୍ନ ଘଟଣାବଳୀ, ସାଧାରଣରେ ଆଗ୍ରହ ଥିବା କଥାବସ୍ତୁ ଓ ପ୍ରାକୃତିକ ଦୈବୀପାକ ଇତ୍ୟାଦି ବିଷୟ ବାଲୁକା କଳାରେ ପ୍ରଦର୍ଶିତ ହୋଇଥାଏ । ଏବେ ବାଲୁକା କଳା ପ୍ରତିଯୋଗିତା ଓ ଉତ୍ସବମାନ ଉଭୟ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ଅନୁଷ୍ଠିତ ହେଉଛି । ଆମ ରାଜ୍ୟ ପୁରୀର ସୁଦର୍ଶନ ପଟ୍ଟନାୟକ ଜଣେ ଖ୍ୟାତିସମ୍ପନ୍ନ ବାଲୁକା କଳାର ଶିଳ୍ପୀ ଭାବେ ପରିଚିତ । ତାଙ୍କୁ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ବିଭିନ୍ନ ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ କରାଯାଇଛି ।

**ପ୍ରସ୍ତର ଓ କାଷ୍ଠ ଖୋଦେଇ କଳା**

ପ୍ରସ୍ତର ଖୋଦେଇ ଓଡ଼ିଶାର ଏକ ପ୍ରାଚୀନ କଳା । ମନ୍ଦିର ନିର୍ମାଣ ଶୈଳୀରେ ଓଡ଼ିଶାର କାରିଗରମାନେ ଏକଦା ଉତ୍କର୍ଷତାର ଶୀର୍ଷରେ ପହଞ୍ଚିଥିଲେ । ଆଜି ସେମାନଙ୍କର ବଂଶଧରମାନେ ସେମାନଙ୍କର ପ୍ରସ୍ତର ଖୋଦେଇ ମାଧ୍ୟମରେ ଭାସ୍କର୍ଯ୍ୟ ପରମ୍ପରାକୁ ଉଜ୍ଜୀବିତ ରଖିଛନ୍ତି । ଖୋଦେଇ ମାଧ୍ୟମରେ ପ୍ରସ୍ତୁତ ବସ୍ତୁଗୁଡ଼ିକ ହେଉଛି ମନ୍ଦିରର ପ୍ରତିକୃତି, ଦେବାଦେବୀଙ୍କର ମୂର୍ତ୍ତି, କୋଣାର୍କ ଚକ୍ର ଓ ଘୋଡ଼ା, ଅଳସକନ୍ୟା, ଶାଳଭଞ୍ଜିକା, ସୁରସୁନ୍ଦରୀ, ଆଲେଖିକା ଇତ୍ୟାଦି ଭଳି କ୍ଷୁଦ୍ର ପ୍ରସ୍ତର ମୂର୍ତ୍ତି, ଯାହାକି ଘର ସଜାଇବାର ମୁଖ୍ୟ ଉପକରଣ । ସେହିପରି ଓଡ଼ିଶାର କାଷ୍ଠ ଖୋଦେଇ କଳା ମଧ୍ୟ ବେଶ୍ ଲୋକପ୍ରିୟ । ଅନ୍ୟ ରାଜ୍ୟର କଳାକୃତିଠାରୁ ଏଗୁଡ଼ିକ ସମ୍ପୂର୍ଣ୍ଣ ଭିନ୍ନ, ଯେହେତୁ ସେଗୁଡ଼ିକ ଉପରେ କୌଣସି ପ୍ରକାର ରଙ୍ଗ ବା ଲାଖି ପ୍ରଲେପ ନଦେଇ କେବଳ ପଲିସ୍ କରି ଚିକ୍କଣ ଓ ଉଜ୍ଜ୍ୱଳ କରାଯାଇଥାଏ ।

ଏତଦ୍‌ବ୍ୟତୀତ କାଗଜ ମଣ୍ଡରୁ ବିଭିନ୍ନ ସାମଗ୍ରୀ, ସୋଲପୀଠ କାମ, ଲାଖ କାମ, ଜରି କାମ, କାଚମାଳି, କପଡ଼ା ହାର, କର୍ପୂର ମାଳ, ଝୋଟ କାର୍ପେଟ୍, ମଶିଣା ଏବଂ ପୁରୀ ଓ ଗୋପାଳପୁରର ଶାମୁକାରେ ନିର୍ମିତ ବିଭିନ୍ନ ପ୍ରକାର ହସ୍ତଶିଳ୍ପ ଓଡ଼ିଶାରେ ଦେଖିବାକୁ ମିଳେ ।

**ଓଡ଼ିଶୀ ସଂଗୀତ**

ଓଡ଼ିଶାର ଏକ ଗୌରବମୟ ସଂଗୀତ ପରମ୍ପରା ରହିଛି । ପ୍ରାଚୀନ ମନ୍ଦିର ଗାତ୍ରରେ ଖୋଦେଇ ହେଇଥିବା ନର୍ତ୍ତକ ଓ ସଂଗୀତଜ୍ଞମାନଙ୍କ ମୂର୍ତ୍ତିସବୁ ଓଡ଼ିଶାର ସମୃଦ୍ଧ ସାଙ୍ଗୀତିକ ଐତିହ୍ୟକୁ ପରିପ୍ରକାଶ କରେ । ଓଡ଼ିଶାର ସନ୍ଥକବିମାନେ ଗୀତି-କବିତା ସଂଯୋଜନା କରିଥିଲେ, ଯାହାକୁ ଗାନ କରାଯାଇପାରିବ । ବିଭିନ୍ନ ସ୍ଥାନରେ ଧାର୍ମିକ ଭାବନାର ପ୍ରଚାର କରିବା ନିମନ୍ତେ ଗାୟକମାନେ ସାଧାରଣତଃ ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଯାଉଥିଲେ । ଗୀତି କବିତା କିଭଳି ଗାୟନ କରାଯିବ ସେ ବିଷୟରେ କବିମାନେ ନିର୍ଦ୍ଦିଷ୍ଟ ପଦ୍ଧତି ନିର୍ଦ୍ଧାରଣ କରୁଥିଲେ, ଅର୍ଥାତ୍ କେଉଁ ରାଗ ଓ କେଉଁ ତାଳରେ ଗୀତଟି ଗାୟନ କରାଯିବ ।

ଏକାଦଶ ଶତାବ୍ଦୀ ବେଳକୁ ଓଡ଼ିଶାରେ ପ୍ରଚଳିତ ତ୍ରିସ୍ୱରୀ, ଚତୁଃସ୍ୱରୀ ଓ ପଞ୍ଚସ୍ୱରୀ ଆଦି ଲୋକଗୀତ ଶାସ୍ତ୍ରୀୟ ପଦ୍ଧତିକୁ ପରିବର୍ତ୍ତିତ ହୋଇଥିଲା । ଓଡ଼ିଶୀ ସଂଗୀତ ହେଉଛି ଏକ ଶାସ୍ତ୍ରୀୟ ସଂଗୀତ, ଯାହାକି ହିନ୍ଦୁସ୍ତାନୀ ଓ କର୍ଣ୍ଣାଟକୀ ସଙ୍ଗୀତର ସମସ୍ତ ଉପାଦାନ ଯେମିତିକି ରାଗ ଓ ତାଳକୁ ଧାରଣ କରେ । ଜୟଦେବ ହେଉଛନ୍ତି ଓଡ଼ିଶାର ପ୍ରଥମ କବି ଯିଏକି ଗୀତକୁ ଗାୟନ କରିବା ପାଇଁ ରଚନା କରିଥିଲେ ଏବଂ ଗୀତର ଶବ୍ଦ ସବୁ ସାଙ୍ଗୀତିକ ଥିଲା । ସେ କାଳରେ ପ୍ରଚଳିତ ଶାସ୍ତ୍ରୀୟ ରାଗ ଅନୁସାରେ ତାଙ୍କ ରଚିତ ଗୀତଗୁଡ଼ିକୁ କିଭଳି ଭାବେ ଗାୟନ କରାଯିବ, ସେ ବିଷୟରେ ଜୟଦେବ ଧାରଣା ଦେଇଥିଲେ ।

ଏଥି ପୂର୍ବରୁ ଥିବା ଛାନ୍ଦ ପରମ୍ପରାର ସାଙ୍ଗୀତିକ ଧାରା ଅତ୍ୟନ୍ତ ସରଳ ଥିଲା । ଓଡ଼ିଶାରେ ସଙ୍ଗୀତ ସମ୍ପର୍କିତ ଗ୍ରନ୍ଥ ଲେଖକ ବା ସଂକଳନ ଷୋଡ଼ଶ ଶତାବ୍ଦୀରୁ ଆରମ୍ଭ ହେଲା । ସେଗୁଡ଼ିକ ହେଲା ସଙ୍ଗୀତାର୍ଣ୍ଣୋଭ ଚନ୍ଦ୍ରିକା, ଗୀତ ପ୍ରକାଶ, ସଂଗୀତ କଳ୍ପଲତା ଓ ନାଟ୍ୟ ମନୋରମା । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଦୁଇଟି ପୁସ୍ତକ ଯଥା - ସଂଗୀତ ସରଣୀ ଓ ସଙ୍ଗୀତ ନାରାୟଣ ମଧ୍ୟ ରଚନା କରାଯାଇଥିଲା ।

**ପୂର୍ବ-ଉଲ୍ଲିଖିତ ପୁସ୍ତକଗୁଡ଼ିକରେ ବର୍ଣ୍ଣନା ଅନୁଯାୟୀ**

୪ ଗୋଟି ଶ୍ରେଣୀର ସଙ୍ଗୀତ ଯଥା- ଧ୍ରୁବପଦ, ଚିତ୍ରପଦ, ଚିତ୍ରକଳା ଓ ପାଞ୍ଚାଳକୁ ସମାହାରରେ ଓଡ଼ିଶୀ ସଂଗୀତର ସୃଷ୍ଟି । ଧ୍ରୁବପଦ ହେଉଛି ପ୍ରଥମ ଧାଡ଼ି ବା ଧାଡ଼ି ସମୂହ, ଯାହାକୁ ବାରମ୍ବାର ଗାନ କରାଯିବ । ସଂଗୀତରେ ଚିତ୍ରର ବ୍ୟବହାରକୁ ଚିତ୍ରକଳା ବୋଲି କୁହାଯାଏ । ପ୍ରସିଦ୍ଧ ଓଡ଼ିଆ କବି କବିସୂର୍ଯ୍ୟ ବଳଦେବ ରଥ ଯେଉଁ ଗୀତି-କବିତା ଲେଖିଥିଲେ, ତାହା ଚିତ୍ରକଳାର ଶ୍ରେଷ୍ଠ ଉଦାହରଣ । ଚିତ୍ରପଦର ଅର୍ଥ ହେଉଛି ଅନୁପ୍ରାସ ଶୈଳୀରେ ଶବ୍ଦ ସଂଯୋଜନା କରିବା । ଏହିସବୁ ଶୈଳୀକୁ ଏକତ୍ର କରି ଓଡ଼ିଶୀ ସଂଗୀତ ସୃଷ୍ଟି କରାଯାଇଥିଲା । ଛାନ୍ଦ (ଅଳଙ୍କାର ବିଭାଗ) ଓଡ଼ିଶୀ ସଂଗୀତର ମୂଳପିଣ୍ଡ । ଛାନ୍ଦଗୁଡ଼ିକ ଭାବ (ବିଷୟ), କାଳ (ସମୟ) ଓ ସ୍ୱର (ଶୂନ) ଆଧାରରେ ସଂଯୋଜନା କରାଯାଇଥିଲା । ଚଉତିଶା ଓଡ଼ିଶୀ ଶୈଳୀର ମୌଳିକତା ପ୍ରତିପାଦନ କରେ । ପ୍ରତ୍ୟେକ ଧାଡ଼ିରେ ଆରମ୍ଭରେ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଓଡ଼ିଆ ବର୍ଣ୍ଣମାଳାର ସମସ୍ତ ଓଡ଼ିଶୀ ସଂଗୀତର ସ୍ୱତନ୍ତ୍ର ବୈଶିଷ୍ଟ୍ୟ ହେଉଛି ପଦୀ, ଯାହାକି ଶବ୍ଦଗୁଡ଼ିକର ସମାହାର ଓ ଏହା ଦ୍ରୁତ ତାଳରେ ଗାୟନ କରାଯାଏ । ଓଡ଼ିଶୀ ସଂଗୀତ ବିଭିନ୍ନ ତାଳ ଯେପରିକି ନବତାଳ, ଦଶତାଳ ବା ଏଗାର ତାଳରେ ଗାନ କରାଯାଇପାରିବ ।

ହିନ୍ଦୁସ୍ତାନୀ ଓ କର୍ଣ୍ଣାଟକ ସଂଗୀତର ରାଗଠାରୁ ଓଡ଼ିଶୀ ସଂଗୀତର ରାଗ ଭିନ୍ନ ଅଟେ । ମୁଖ୍ୟ ଓଡ଼ିଶୀ ରାଗଗୁଡ଼ିକ ହେଉଛି-କଲ୍ୟାଣ, ନଟ, ଶ୍ରୀଗୌଡ଼, ବାରାଦୀ, ପଞ୍ଚମ, ଧନଶ୍ରୀ, କର୍ଣ୍ଣାଟ, ଭୈରବୀ ଏବଂ ଶୋକବରାଡି ।

ହିନ୍ଦୁସ୍ତାନୀ ବା କର୍ଣ୍ଣାଟକୀ ଶୈଳୀ ସହ ତୁଳନା କଲେ ଆମେ ଦେଖୁ ଯେ ଓଡ଼ିଶୀ ସଂଗୀତର ବ୍ୟାକରଣ, ଅଳଙ୍କାର

ବା ସଂଯୋଜନାରେ କିଛି ବି କମ୍ ନାହିଁ । ଏଥିପାଇଁ ଆମେ ଓଡ଼ିଶାର ଶାସ୍ତ୍ରୀୟ ସଂଗୀତର କବି ଜୟଦେବଙ୍କ ନିକଟରେ ବହୁଭାବେ ଋଣୀ ।

ଆଧୁନିକ ସମୟରେ ଓଡ଼ିଶୀ ସଂଗୀତର ମହାନ୍ ବ୍ୟାଖ୍ୟାକାରମାନେ ହେଲେ– ସିଂହାରୀ ଶ୍ୟାମସୁନ୍ଦର କର, ମାର୍କଣ୍ଡେୟ ମହାପାତ୍ର, କାଶୀନାଥ ପୂଜାପଣ୍ଡା ଓ ବାଳକୃଷ୍ଣ ଦାଶ । ସୁନାମଧନ୍ୟ ଶାସ୍ତ୍ରୀୟ ସଂଗୀତକାରମାନଙ୍କ ମଧ୍ୟରେ ସୁନନ୍ଦା ପଟ୍ଟନାୟକ ଅନ୍ୟତମ ।

### ଓଡ଼ିଶାର ନୃତ୍ୟ

ଭାରତର ସମୃଦ୍ଧ ନୃତ୍ୟକଳାକୁ ଓଡ଼ିଶା ୨ ଗୋଟି ସ୍ୱତନ୍ତ୍ର ଭିନ୍ନ ଧରଣର ଶାସ୍ତ୍ରୀୟ ନୃତ୍ୟ ଛଉ ଓ ଓଡ଼ିଶୀ ପ୍ରଦାନ କରିଛି ।

### ଛଉ ନୃତ୍ୟ

ଛଉ ଏକ ପ୍ରାଚୀନ ନୃତ୍ୟ କଳା । ଏହାର ସୃଷ୍ଟି ଓଡ଼ିଆ ପାଇକ ଯୋଦ୍ଧାମାନଙ୍କ ନକଲି ଯୁଦ୍ଧ ଖେଳରୁ ଯେଉଁମାନେ କି ଦେଶୀୟ ସଂଗୀତ ବାଦ୍ୟଯନ୍ତ୍ରର ତାଳେ ତାଳେ ଲଢ଼େଇ ଅଭ୍ୟାସ କରୁଥିଲେ । ଆଜିକାଲିର ଉଚ୍ଚକୋଟୀର ଛଉ ନୃତ୍ୟ ଭରତ ମୁନିଙ୍କ 'ନାଟ୍ୟଶାସ୍ତ୍ର' ଓ ନନ୍ଦିକେଶ୍ୱରଙ୍କ 'ଅଭିନୟ ଦର୍ପଣ'ର ମୂଳତତ୍ତ୍ୱ ଉପରେ ପର୍ଯ୍ୟବସିତ । ଏହି ନୃତ୍ୟକଳା କ୍ରମଶଃ ଧର୍ମ ସହ ଜଡ଼ିତ ହେଲା । ଛଉ ନୃତ୍ୟ କରୁଥିବା ବ୍ୟକ୍ତି ତାଣ୍ଡବ ଶୈଳୀର ଇଷ୍ଟଦେବ ଶିବ ଓ ହାସ୍ୟ ଶୈଳୀର ଇଷ୍ଟଦେବୀ ପାର୍ବତୀଙ୍କୁ ପୂଜା କରିଥାନ୍ତି । ଛଉ ନୃତ୍ୟ କଲାବେଳେ ନର୍ତ୍ତକ ବିଶ୍ରାମ ସମୟରେ ଆଣ୍ଠୁଭାଙ୍ଗି ଗୋଡ଼ରେ ବର୍ଗାକାର ଆକୃତି ସୃଷ୍ଟି କରେ, ଦକ୍ଷିଣ ହସ୍ତ ଉପରକୁ ଟେକି ବାମ ହସ୍ତ ତଳ ଆଡ଼କୁ ଝୁଲାଇଲା ବେଳେ ଉଭୟ ପାର୍ଶ୍ୱର କହୁଣି ପାଖରେ ସମକୋଣ ସୃଷ୍ଟି ହୁଏ । ଛଉ ନର୍ତ୍ତକଟି ଚାଲିବାର ବିଭିନ୍ନ କଷ୍ଟକର ଶୈଳୀ, ଜଟିଳ ମୁଦ୍ରା ଓ ଗତି କରିବାର ଏକ ସ୍ୱତନ୍ତ୍ର ଢ଼ଙ୍ଗ ଅଭ୍ୟାସ କରିବାକୁ ପଡ଼େ । ଏହା ଏକ ପୁରୁଷୋଚିତ ନାଟ୍ୟକଳା ଏବଂ ଅତୀତରେ ଆବଶ୍ୟକ ବେଳେ ପୁରୁଷମାନେ ନାରୀ ଭୂମିକା ନିର୍ବାହ କରୁଥିଲେ । ଏବେ ନାରୀମାନେ ମଧ୍ୟ ଏହି ନୃତ୍ୟ ଉପରେ ପଟୁତା ହାସଲ କଲେଣି । ଷଢେଇକଳା ଛଉ ନୃତ୍ୟ ଶୈଳୀର ନୃତ୍ୟ ଶିଳ୍ପୀମାନେ ଯେଉଁ ଚରିତ୍ରର ଭୂମିକା ଚିତ୍ରଣ କରନ୍ତି, ସେମାନଙ୍କର ମୁଖମଣ୍ଡଳକୁ ସେହି ଚରିତ୍ରର ମୁଖା ଦ୍ୱାରା ଆବୃତ୍ତ କରିଥାଆନ୍ତି । ମାତ୍ର ମୟୂରଭଞ୍ଜ ଶୈଳୀରେ ମୁଖମଣ୍ଡଳ ମୁଖା ଦ୍ୱାରା ଆଚ୍ଛାଦିତ ହୋଇନଥାଏ । ଏଥିରେ ଭାବାବେଗ ମୁଖମଣ୍ଡଳରେ ପରିସ୍ଫୁଟ ନହୋଇ ଜଟିଳ ପଦଚାଳନା, ଘୂର୍ଣ୍ଣନ ଓ ଲମ୍ଫ ପ୍ରଦାନ ଦ୍ୱାରା ପ୍ରତିଫଳିତ ହୋଇଥାଏ । ସେଥିପାଇଁ ଭାବ ପ୍ରକାଶ ପାଇଁ ଅଣ୍ଟା, ପାଦ ଓ ଗୋଡ଼ର ବ୍ୟବହାର କରାଯାଏ ।

ନୃତ୍ୟଟି ସାଧାରଣତଃ ଏକ ମୁକ୍ତାକାଶ ଉଚ୍ଚ ମଞ୍ଚରେ ପରିବେଷିତ ହୁଏ । ମଞ୍ଚର ଗୋଟିଏ ପାର୍ଶ୍ୱରେ ବାଦ୍ୟକାରମାନେ ଦଣ୍ଡାୟମାନ ହୁଅନ୍ତି ଏବଂ ବୃହତ୍‌କାୟ ନଳ ସଦୃଶ୍ୟ ଡ୍ରମ୍ ଓ ଅନ୍ୟାନ୍ୟ ବାଦ୍ୟଯନ୍ତ୍ର ବଜାନ୍ତି । ଗ୍ରାମଗୁଡ଼ିକରେ ଚୈତ୍ର ମାସର ଶେଷ ଆଡ଼କୁ ଚୈତ୍ର ପର୍ବ ପାଳନ ଅବସରରେ ଛଉ ନୃତ୍ୟ ପରିବେଷଣ କରାଯାଏ । ରାମାୟଣ ଓ ମହାଭାରତର ଜଣାଶୁଣା କଥାବସ୍ତୁ ମଞ୍ଚରେ ଅଭିନୟ କରାଯାଏ । ସୁନ୍ଦର ବେଶ ପୋଷାକ, ପଗଡ଼ି ଓ ଅନ୍ୟାନ୍ୟ ଆବଶ୍ୟକୀୟ ଅଳଙ୍କାର ପ୍ରସ୍ତୁତ ହୁଏ । ଏକକ, ଦ୍ୱୈତ ଓ ଗୋଷ୍ଠୀଗତ ନୃତ୍ୟ ଅଭିନୀତ ହୁଏ । ଆଜିକାଲି ଛଉ ନୃତ୍ୟର ବିଷୟବସ୍ତୁକୁ ସମଗ୍ର ଜୀବଜଗତ ଓ ପ୍ରକୃତିର ଜଡ଼ବସ୍ତୁକୁ ନେଇ ପରିପୁଷ୍ଟ ହେଉଛି । ପ୍ରସିଦ୍ଧ ମୟୂର, ହଂସ ଓ ହରିଣ ନୃତ୍ୟ ଆଜି ବନ୍ୟଜନ୍ତୁଙ୍କ ବୈଭବ ଓ ଅରଣ୍ୟ ସମ୍ପଦର କମନୀୟତାକୁ ନେଇ ନୃତ୍ୟଶୈଳୀ ସୁନ୍ଦର ଭାବେ ପ୍ରସ୍ତୁତ କରାଯାଏ । ଓଡ଼ିଶାର ଉତ୍ତର-ପୂର୍ବ ପର୍ବତାଞ୍ଚଳର ସମୃଦ୍ଧ ଲୋକ ଓ ଆଦିବାସୀ ସଂସ୍କୃତି ଛଉ ନୃତ୍ୟକୁ ବହୁଳ ଭାବେ ପ୍ରଭାବିତ କରିଛି ।

### ପାଇକ ନୃତ୍ୟ

ପାଇକ ନୃତ୍ୟ ପ୍ରାଚୀନ ଓଡ଼ିଶାର ଏକ ପ୍ରକାର ସାମରିକ ନୃତ୍ୟକଳା । ପ୍ରାଚୀନ ଓଡ଼ିଆ ସାମରିକ ବାହିନୀର ମୁଖ୍ୟ ଯୋଦ୍ଧା ଶ୍ରେଣୀ ପାଇକମାନଙ୍କ ମଧ୍ୟରେ ଅଭ୍ୟାସ କରାଯାଉଥିବା ଏହି କଳାରେ ସୈନ୍ୟମାନଙ୍କର ଦୁର୍ଦ୍ଧର୍ଷ ଭାବ ପ୍ରକାଶ ପାଇଥାଏ । କୌତୁହଳର ବିଷୟ ହେଉଛି

ଯେ, ଏହି ଶବ୍ଦଟି ସଂସ୍କୃତ ଶବ୍ଦ 'ପଦାତିକ'ରୁ ଆନୀତ, ଯାହାର ଅର୍ଥ ହେଲା ''ପଦାତିକ ବାହିନୀ'' ।

ଓଡ଼ିଶାର ଏହି ଲୋକନୃତ୍ୟ ଖୋର୍ଦ୍ଧା ଓ ପୁରୀର ଅନେକ ପାଇକ ଗ୍ରାମରେ ପ୍ରଦର୍ଶନ କରାଯାଏ । ଦିନଯାକର କଠିନ ପରିଶ୍ରମ ପରେ ଏକ ସର୍ବସାଧାରଣ ଚଉତରାରେ ଲୋକମାନେ ଏକାଠି ହୁଅନ୍ତି । ପାଇକ ଆଖଡ଼ା ଏପରି ଏକ ସ୍ଥାନ, ଯେଉଁଠାରେ ସେମାନେ ଶାରୀରିକ ବ୍ୟାୟାମ ଅଭ୍ୟାସ କରିବା ସହିତ ଖଣ୍ଡା ଓ ଢ଼ାଲରେ ଲଢ଼େଇ କୌଶଳ ଶିକ୍ଷା କରନ୍ତି । ଡ୍ରମ୍ ବାଜିବା ସଙ୍ଗେ ସଙ୍ଗେ ସେମାନେ ଉଗ୍ର ସମର ନୃତ୍ୟ ପ୍ରଦର୍ଶନ କରନ୍ତି । ଆଗକୁ ଆସୁଥିବା ଏକ ଭୟଙ୍କର ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ରହିବା ପାଇଁ ନୃତ୍ୟଶିଳ୍ପୀମାନଙ୍କୁ ଏହା ଏକ ଆହ୍ୱାନ ସ୍ୱରୂପ । ଏହି ସମୟରେ ନର୍ତ୍ତକମାନଙ୍କ ପରାକ୍ରମ ଓ ଶାରୀରିକ ଉତ୍ତେଜନା ଖୁବ୍ ଉଚ୍ଚକୋଟୀର । ଦଶହରା ସମୟରେ ଓଡ଼ିଶାର ବିଭିନ୍ନ ଗ୍ରାମରେ ଭିନ୍ନ ଭିନ୍ନ ଦଳ ଖୁବ୍ ଉତ୍ସାହ ଉଦ୍ଦୀପନା ସହ ପାଇକ ନୃତ୍ୟ ପ୍ରଦର୍ଶନ କରିଥାଆନ୍ତି ।

### ସାମରିକ ନୃତ୍ୟ

ପ୍ରାଚୀନ ଓଡ଼ିଆ ପରମ୍ପରାରେ ନୃତ୍ୟ ଓ ସଂଗୀତକୁ ଚରମ ଆନନ୍ଦ ଅନ୍ୱେଷଣର ଏକ ମାଧ୍ୟମ ରୂପେ ଗ୍ରହଣ କରାଯିବା ସହିତ ବଦ୍‌ଗୁଣର ଉନ୍ମୋଚନ ଓ ସୁଗୁଣର ବିକାଶ ପାଇଁ ଏକ ପନ୍ଥା ଭାବେ ବଛାଯାଇଛି । ଲୋକ ପରମ୍ପରାରେ ଯୁଦ୍ଧ ବା ଶିକାରରେ ସଫଳତା, ପ୍ରକୃତି ଦେବତାଙ୍କୁ ଆବାହନ, ଶସ୍ୟ ଉତ୍ପାଦନ ଓ ତହିଁର ରକ୍ଷଣାବେକ୍ଷଣ, ବିବାହ ବା ଅନ୍ୟ କିଛି ସାମାଜିକ ଉତ୍ସବ ଓ ରୀତିନୀତି ପାଳନ ବେଳେ ସଂଗୀତ ଓ ନୃତ୍ୟ ବିନା କୌଣସି କାର୍ଯ୍ୟ ସମ୍ପୂର୍ଣ୍ଣ ହୁଏ ନାହିଁ । ବାସ୍ତବରେ ବିଶ୍ୱନିୟନ୍ତା ଭଗବାନଙ୍କ ନିକଟରେ ମଣିଷର ସମର୍ପଣ ଭାବ ଲୋକ ସଂସ୍କୃତିରେ ପରିସ୍ଫୁଟ ହୋଇଥାଏ । ଓଡ଼ିଶା ହେଉଛି ସମର ନୃତ୍ୟର ଏକ ବିଶାଳ ଗନ୍ତାଘର । ନୃତ୍ୟର ସ୍ୱତନ୍ତ୍ର ଚରିତ୍ର ରହିଛି ଓ ଅଙ୍ଗଚାଳନାର ବିବିଧତା ପ୍ରଶସ୍ତ ଓ ପ୍ରଭାବଶାଳୀ । ଏହା ପୁରୁଷ ସୁଲଭ ଶକ୍ତିକୁ ପ୍ରଦର୍ଶିତ କରେ । ଓଡ଼ିଶାର ସମର କଳା ଆଦିବାସୀ ଓ ଲୋକନୃତ୍ୟରୁ ଅନେକ କିଛି ଗ୍ରହଣ କରି ଏକ ସୁଲଳିତ ଭାବସୃଷ୍ଟି କରିଛି ।



### ଓଡ଼ିଶୀ ନୃତ୍ୟ

ଓଡ଼ିଶୀ ନୃତ୍ୟ ଓଡ଼ିଶାର ଏକ ଅନନ୍ୟ ଶାସ୍ତ୍ରୀୟ ନୃତ୍ୟ ଓ ଏହାର ମୂଳପିଣ୍ଡ ମନ୍ଦିରଗୁଡ଼ିକରେ ରହିଛି । ଓଡ଼ିଶୀ ନୃତ୍ୟର ବ୍ୟବହୃତ ତାଳ, ଭଙ୍ଗୀ ଓ ମୁଦ୍ରାଗୁଡ଼ିକର ନିଜସ୍ୱ ସ୍ୱତନ୍ତ୍ର ଶୈଳୀ ରହିଛି । ରାଧାକୃଷ୍ଣଙ୍କ ପ୍ରେମକଥାକୁ ନେଇ ଓଡ଼ିଶୀ ନୃତ୍ୟ ପରିପୁଷ୍ଟ ।

ଏହି ନୃତ୍ୟ ପରମ୍ପରା ଦେବଦାସୀମାନଙ୍କ ଦ୍ୱାରା ଚାଲି ଆସୁଥିଲା । ମନ୍ଦିରମାନଙ୍କରେ ଗୀତଗୋବିନ୍ଦର ପ୍ରଚଳନ ପୂର୍ବରୁ ଦେବଦାସୀମାନେ ସ୍ତୋତ୍ର ଆବୃତ୍ତି ଓ ତାଳର ମାତ୍ରା ଅନୁସାରେ ନୃତ୍ୟ କରୁଥିଲେ । କିନ୍ତୁ ଯେତେବେଳେ ଗୀତଗୋବିନ୍ଦ ମନ୍ଦିର ନୀତିରେ ସାମିଲ ହେଲା, ସେତେବେଳେ ବିଭିନ୍ନ ଭାବ ଓ ରସରେ ଦେବଦାସୀମାନେ ଅଭିନୟ ପରିବେଷଣ କଲେ ।

ଓଡ଼ିଶୀ ନୃତ୍ୟଶୈଳୀର ବିଭିନ୍ନ ବିଭାଗ ହେଉଛି 'ମଙ୍ଗଳା ଚରଣ', 'ବଟୁ ନୃତ୍ୟ' ବା 'ସ୍ଥାୟୀ ନାଟ', 'ପଲ୍ଲବୀ', 'ଅଭିନୟ' ଓ 'ମୋକ୍ଷ' । ମଙ୍ଗଳାଚରଣରେ, ନୃତ୍ୟାଙ୍ଗନା ନିଜକୁ ପ୍ରଭୁଙ୍କ ନିକଟରେ ସମର୍ପି ଦିଏ ଓ ତା'ର ପାଦ ମାଟି ଉପରେ ପକାଇ ନାଚୁଥିବାରୁ ଧରଣୀମାତାଙ୍କ ନିକଟରେ କ୍ଷମା ପ୍ରାର୍ଥନା କରେ । ସେ ତା'ର ନୃତ୍ୟଶୈଳୀରେ କୌଣସି ଭୁଲଭଟ୍‌କା ପାଇଁ ଦର୍ଶକମାନଙ୍କ ନିକଟରେ କ୍ଷମା ପ୍ରାର୍ଥନା କରେ ଏବଂ ଗୁରୁଙ୍କୁ ପ୍ରଣାମ କରେ । ବଟୁ ନୃତ୍ୟ ହେଉଛି ଶ୍ରେଷ୍ଠ ନୃତ୍ୟ । ବୀଣା, ଡ୍ରମ୍, ବଂଶୀ ଓ ଝାଞ୍ଜ ପ୍ରଭୃତି ବାଦ୍ୟଯନ୍ତ୍ର ବଜାଉଥିବା ବିଭିନ୍ନ ପ୍ରକାରର ଭାବଭଙ୍ଗୀ ପ୍ରକାଶ କରୁଥିବା ମୁଦ୍ରାରୁ ଆରମ୍ଭ ହୁଏ । 'ପଲ୍ଲବୀ' ଅତ୍ୟନ୍ତ କମନୀୟ ଓ ଗୀତମୟ । ଗୀତର ସ୍ୱରଟି କୌଣସି ରାଗ ଉପରେ ଆଧାରିତ ଏବଂ ଏହା ସରଗମ୍ ଓ ବୋଲ

ଅନୁସାରେ ଗାନ କରାଯାଏ । ଗୀତର ଅର୍ଥ ଓ ମିଜାଜ୍ ଦର୍ଶାଇବା ପାଇଁ ବିଭିନ୍ନ ମୁଦ୍ରା ଦ୍ୱାରା ଅଭିନୟରେ 'ରସ' ଓ ଭାବ ପ୍ରକାଶ ପାଇଥାଏ । ସାଧାରଣତଃ, ବନମାଳୀ, ଉପେନ୍ଦ୍ର ଭଞ୍ଜ, ବଳଦେବ ରଥ, ଗୋପାଳକୃଷ୍ଣ ଓ ଜୟଦେବଙ୍କ ଭଳି କବିମାନଙ୍କର ଗୀତସବୁ ବୋଲାଯାଏ । ମୋକ୍ଷ ନୃତ୍ୟ ହେଉଛି ଶେଷ ସୋପାନ, ଯାହା ପଦାଂଶର ତାଳ ଅନୁଯାୟୀ ପରିବେଷଣ କରାଯାଏ । ଏହା ଦ୍ରୁତ ଗତିରେ ପରିବେଷିତ ହୁଏ । ଯେତେବେଳେ ନୃତ୍ୟଶିଳ୍ପୀ ଆନନ୍ଦରେ ବିମୋହିତ ହୋଇଯାଏ, ସେତେବେଳେ ତା'ର ଆତ୍ମା ଦିବ୍ୟାତ୍ମାରେ ବିଲୀନ ହୋଇଯାଏ । ଈଶ୍ୱରଙ୍କର ନିକଟତର ହେବା ଓ ଆନନ୍ଦ ଅନୁଭୂତି ଲାଭ କରିବା ନିମିତ୍ତ ଓଡ଼ିଶୀ ନୃତ୍ୟ ହେଉଛି ଏକ ପ୍ରଚେଷ୍ଟା । ଓଡ଼ିଶୀକୁ ପ୍ରୋତ୍ସାହନ ଦେବା ପାଇଁ ନିକଟ ଅତୀତରେ ଅନେକ ଅନୁରାଗୀଙ୍କ ଦ୍ୱାରା ପ୍ରଶଂସନୀୟ ଉଦ୍ୟମ କରାଯାଇଥିଲା, ଯେଉଁମାନଙ୍କ ମଧ୍ୟରେ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକଙ୍କ ନାମ ସର୍ବାଗ୍ରେ ରହିବ । ଯେଉଁ ଗୁରୁମାନେ ଏହି ନୃତ୍ୟକଳାକୁ ଅନ୍ତର୍ଜାତୀୟ ସ୍ତରରେ ପ୍ରତିଷ୍ଠା କରାଇଥିଲେ, ସେମାନେ ହେଉଛନ୍ତି ପଦ୍ମଭୂଷଣ କେଳୁ ଚରଣ ମହାପାତ୍ର (କାଳିଦାସ ସମ୍ମାନ ପ୍ରାପ୍ତ), ପଦ୍ମଶ୍ରୀ ପଙ୍କଜ ଚରଣ ଦାସ ଏବଂ ଦେବ ପ୍ରସାଦ ଦାସ । ପ୍ରବୀଣ ଓଡ଼ିଶୀ ନୃତ୍ୟଶିଳ୍ପୀମାନଙ୍କ ମଧ୍ୟରେ ପ୍ରିୟପୂଜା ହେଜ୍‌ମାଦି, ପଦ୍ମଶ୍ରୀ ସଂଯୁକ୍ତା ପାଣିଗ୍ରାହୀ, ମିନତୀ ମିଶ୍ର, କୁମ୍‌କୁମ୍ ମହାନ୍ତି, ଉପାଲି ଅପରାଜିତା, ସଙ୍ଗୀତା ଦାସ ପ୍ରମୁଖ ଅନ୍ୟତମ ।

### ଚଇତି ଘୋଡ଼ା ନାଚ

ଚଇତ୍ର (ମାର୍ଚ୍ଚ – ଏପ୍ରିଲ୍) ମାସର ପୂର୍ଣ୍ଣିମା ଦିନ ବିଶେଷ କରି କୈବର୍ତ୍ତ ସମ୍ପ୍ରଦାୟମାନଙ୍କ ଦ୍ୱାରା ପରିବେଷିତ କରାଯାଉଥିବା ଚଇତି ଘୋଡ଼ା ନାଚ ହେଉଛି ଓଡ଼ିଶାର ଅନେକ ଆକର୍ଷଣୀୟ ଲୋକନୃତ୍ୟ ମଧ୍ୟରୁ ଅନ୍ୟତମ । କଥିତ ଅଛି ଯେ, ବନବାସରେ ଥିବା ବେଳେ ସରଜୁ ନଦୀ ପାରି କରାଇବାରେ ସାହାଯ୍ୟ କରିଥିବା ନାଉରିଆକୁ ପ୍ରଭୁ ରାମଚନ୍ଦ୍ର ପୁରସ୍କାର ସ୍ୱରୂପ ଏକ ଘୋଡ଼ା ପ୍ରଦାନ କରିଥିଲେ । ସେହିଦିନଠାରୁ କୈବର୍ତ୍ତ ସମ୍ପ୍ରଦାୟ ଘୋଡ଼ାକୁ ପୂଜା କରି ଆସୁଛନ୍ତି ।

ଏହି ନୃତ୍ୟ ମୁଖ୍ୟତଃ ତିନିଜଣଙ୍କ ଦ୍ୱାରା ସମ୍ପାଦିତ ହୋଇଥାଏ । ଅଶ୍ୱାରୋହୀ, ରାଉତ ଓ ମହୁରୀ ବଜାଉଥିବା ସହଯୋଗୀ ମଧ୍ୟ ଏଥିରେ ଅଂଶଗ୍ରହଣ କରନ୍ତି । ବାଉଁଶ ନିର୍ମିତ ଏକ ଫମ୍ପା ଫ୍ରେମ୍‌ରେ ଘୋଡ଼ାର ମୁଣ୍ଡ, ଶରୀର ଓ ଲାଞ୍ଜ କରାଯାଇ ଏହାକୁ ରଙ୍ଗୀନ୍ କପଡ଼ାରେ ଆବୃତ୍ତ କରାଯାଇଥାଏ । ମାତ୍ର ଏହାର ଗୋଡ଼ ନଥାଏ । ଏହି ଫମ୍ପା ଘୋଡ଼ାର ଆସନ ମଧ୍ୟଦେଇ ଘୋଡ଼ା ନଚାଳି ଜଣକ ଘୋଡ଼ା ମଧ୍ୟରେ ପ୍ରବେଶ କରେ ଏବଂ ଏହାକୁ ତା'ର



ଅଣ୍ଟା ପର୍ଯ୍ୟନ୍ତ ଝୁଲାଇ ରଖେ, ଯାହାକି ଏକ ମଣିଷ ଅଶ୍ୱ ଆରୋହଣ କରିଥିବା ଦୃଶ୍ୟର ଭ୍ରମ ସୃଷ୍ଟି କରେ ।

ରାଉତ ହେଉଛି ପ୍ରଧାନ ଗାୟକ ଓ ବ୍ୟାଖ୍ୟାକାର ଯିଏ ମୁଖ୍ୟତଃ ପୌରାଣିକ ବିଷୟବସ୍ତୁ ବର୍ଣ୍ଣନା କରେ ଏବଂ ତା'ର ସ୍ତ୍ରୀ ଭାବେ ଅଭିନୟ କରୁଥିବା ରାଉତାଣୀ ସହ–ଗାୟିକା ଓ ନର୍ତ୍ତକୀ ଭାବେ ଅଭିନୟ କରେ । ତତ୍‌କାଳୀକ କଥୋପକଥନ ହାସ୍ୟରସାତ୍ମକ ଅଧ୍ୟାୟକୁ ନେଇ ଘୋଡ଼ାନାଚ ଅତ୍ୟନ୍ତ ଜୀବନ୍ତ ହୋଇଉଠେ । ଢ଼ୋଲ ଓ ମହୁରୀ ତାଳେ ତାଳେ ଘୋଡ଼ା ନଚାଳି ଓ ରାଉତାଣୀର ନୃତ୍ୟର ବେଶ କ୍ରମଶଃ ବୃଦ୍ଧି ପାଏ ।

### ଘୁମୁରା ନୃତ୍ୟ

ଘୁମୁରା କଳାହାଣ୍ଡି ଜିଲ୍ଲାର ଏକ ପାରମ୍ପରିକ ଲୋକନୃତ୍ୟ ଓ ଓଡ଼ିଶାର ପଶ୍ଚିମାଞ୍ଚଳରେ ଏହା ଜନାଦୃତି ଲାଭ କରିଛି । ଏହା ମୁଖ୍ୟତଃ ଆଦିବାସୀ ସମ୍ପ୍ରଦାୟର ପୁରୁଷମାନଙ୍କ ଦ୍ୱାରା ପରିବେଷଣ କରାଯାଏ । ଏହା ଏକ ଯୁଦ୍ଧ ନୃତ୍ୟ ଥିଲା, ଯାହାକି ଯୁଦ୍ଧ ସମୟରେ ଯୋଦ୍ଧାମାନଙ୍କୁ ଉତ୍ସାହିତ କରୁଥିଲା । ସଂଗୀତର ବଳିଷ୍ଠ ପ୍ରଭାବ ଏବଂ



ନୃତ୍ୟରତ ଶିଳ୍ପୀମାନଙ୍କର ଅଦମନୀୟ ତେଜ ଏହାକୁ ଏକ ଯୁଦ୍ଧ ନୃତ୍ୟ ଭାବେ ପ୍ରମାରିତ କରୁଛି । ପ୍ରାୟ ୧୫ରୁ ୨୦ ଜଣ ପୁରୁଷ ନର୍ତ୍ତକୀ ଏଥିରେ ଅଂଶ ଗ୍ରହଣ କରନ୍ତି ଏବଂ ଘୁମୁରା, ନିଶାଣ, ତାଲ୍, ତୂରୀ ଓ ମାଦଳ ଇତ୍ୟାଦି ବାଦ୍ୟଯନ୍ତ୍ର ଏଥିରେ ବ୍ୟବହୃତ ହୋଇଥାଏ । ଘୁମୁରା ନାଚର ବିଷୟବସ୍ତୁ ଧର୍ମଗ୍ରନ୍ଥ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ଉପରେ ପର୍ଯ୍ୟବସିତ । ଏହି ନୃତ୍ୟ ଗ୍ରାମ୍ୟ ଯୁବକଙ୍କୁ ଏକତ୍ରିତ କରାଇ ଗ୍ରାମର ଦଳଗତ ପରିଚୟକୁ ପୁନଃଜୀବିତ କରେ । ଘୁମୁରା ନୃତ୍ୟ ଅନେକ ସାମାଜିକ ଓ ଧର୍ମୀୟ ଉତ୍ସବରେ ପରିବେଷିତ ହୋଇଥାଏ ।

### ଗୋଟିପୁଅ ନୃତ୍ୟ

ଓଡ଼ିଶାର ସମୃଦ୍ଧ ସାଂସ୍କୃତିକ ଐତିହ୍ୟକୁ ବହନ କରୁଥିବା ଗୋଟିପୁଅ ହେଉଛି ଓଡ଼ିଶାର ଏକ ପାରମ୍ପରିକ



ନୃତ୍ୟଶୈଳୀ । ଶାସ୍ତ୍ରୀୟ ଏବଂ ସବୁଠାରୁ ଖ୍ୟାତିସମ୍ପନ୍ନ ଓଡ଼ିଶୀ ନୃତ୍ୟର ମୂଳପିଣ୍ଡ ହେଉଛି ଗୋଟିପୁଅ ନାଚ । ଓଡ଼ିଆ ଭାଷାରେ ''ଗୋଟି''ର ଅର୍ଥ ହେଉଛି ଗୋଟିଏ ଓ ''ପୁଅ'' ଅର୍ଥ ହେଲା ବାଳକ । ଗୋଟିପୁଅମାନେ ହେଲେ କିଶୋର ବାଳକ, ଯେଉଁମାନେ ନାରୀ ରୂପରେ ବେଶ ହୋଇଥାଆନ୍ତି ଓ ନାରୀମାନଙ୍କ ଭଳି ସମ୍ପୂର୍ଣ୍ଣ ମାର୍ଜିତ ଓ ସୁନ୍ଦର ଭାବେ ସଂଗୀତର ତାଳେ ତାଳେ ମିଳିତ ନୃତ୍ୟାଭିନୟ ପ୍ରଦର୍ଶନ କରନ୍ତି ଓ ଗୋଟିପୁଅ ନାଚ ଓଡ଼ିଶୀ ନୃତ୍ୟ ଶୈଳୀ ପରି ମାତ୍ର ଏହାର କୌଶଳ, ବେଶଭୂଷା ଓ ଉପସ୍ଥାପନା ଓଡ଼ିଶୀଠାରୁ ଭିନ୍ନ । ଏଥିରେ ଶିଳ୍ପୀମାନେ ନିଜେ ଗାୟନ କରିଥାଆନ୍ତି । ପ୍ରାୟ ୧୬ଶ ଶତାବ୍ଦୀ ବେଳକୁ ଭୋଇ ରାଜା ରାମଚନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ ଯେତେବେଳେ ମାହାରୀ ନୃତ୍ୟର ଅବକ୍ଷୟ ଘଟିଲା, ସେତେବେଳେ ପରମ୍ପରାକୁ ଆଗେଇ ନେବା ପାଇଁ ଏଭଳି ଗୋଟିଏ ପୁଅ ନୃତ୍ୟଶିଳ୍ପୀ ଆଗକୁ ଆସିଲେ । ଗୋଟିପୁଅ ନୃତ୍ୟର ମୁଖ୍ୟ ବିଭବ ହେଲା ବାନ୍ଧ ନୃତ୍ୟ, ଯାହା ବିଭିନ୍ନ ଅଙ୍ଗଚାଳନା, ମୁଦ୍ରା ଉପରେ ପର୍ଯ୍ୟବସିତ । ଏହି ନୃତ୍ୟଶୈଳୀ ଦର୍ଶକମାନଙ୍କୁ ସମ୍ମୋହିତ କରେ ।

ପୁରୀ ଜିଲ୍ଲାର ଐତିହ୍ୟ ଗ୍ରାମ ରଘୁରାଜପୁରଠାରେ ପ୍ରଖ୍ୟାତ ଗୁରୁ ପଦ୍ମଶ୍ରୀ ମାଗୁଣି ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ଗୁରୁକୁଳ ''ଦଶଭୁଜା ଗୋଟିପୁଅ ଓଡ଼ିଶୀ ନୃତ୍ୟ ପରିଷଦ'' ଦ୍ୱାରା ଗୋଟିପୁଅ ନୃତ୍ୟ ଅଭିନୟ କରାଯାଏ ।

### ସମ୍ବଲପୁରୀ ଲୋକନୃତ୍ୟ

ପଶ୍ଚିମ ଓଡ଼ିଶାର ଏକ ଭିନ୍ନ ଧରଣର ନୃତ୍ୟକଳା 'ସମ୍ବଲପୁରୀ ନୃତ୍ୟ' ଦର୍ଶକମାନଙ୍କ ମନରେ ଗଭୀର ଆଲୋଡ଼ନ ସୃଷ୍ଟି କରେ । ଏହାର ନାଚଗୀତରେ ଏକ ସ୍ୱତନ୍ତ୍ର ଆଦିବାସୀ ଶୈଳୀ ଓ ଗ୍ରାମୀଣ ଛାପ ଏବଂ ସର୍ବୋପରି ମନମୁଗ୍ଧ ସଂଗୀତ ଓ ତାଳ ରହିଛି ।

'ଡ଼ାଲଖାଇ' ନୃତ୍ୟରେ ଶ୍ରୁତିମଧୁର ଓ ଆନନ୍ଦଦାୟକ ସଂଗୀତ ରହିଛି । ଗୀତଗୁଡ଼ିକ ଗ୍ରାମୀଣ ଲୋକମାନଙ୍କର ନିତିଦିନିଆ ଜୀବନ ବର୍ଣ୍ଣନା କରିବା ସହ ତରୁଣୀମାନଙ୍କ ସୌନ୍ଦର୍ଯ୍ୟ ପ୍ରକାଶ କରିଥାଏ । ଏହାକୁ 'ଡ଼ାଲଖାଇ' ବୋଲି କୁହାଯାଏ, କାରଣ ଗୀତର ପ୍ରତ୍ୟେକ ପଦର ଆରମ୍ଭ ଓ ଶେଷରେ ତରୁଣୀ ବନ୍ଧୁଙ୍କୁ ସମ୍ବୋଧନ କରିବା ପାଇଁ ଏହି

ଶବ୍ଦଟି ବ୍ୟବହାର କରାଯାଏ । ଡ଼ାଲ୍‌ଖାଇ ଦେବୀଙ୍କ ବାସସ୍ଥଳୀ ଡ଼ାଲଖାଇ କୁଠୀରେ ଯୁବତୀମାନେ ଡ଼ାଲ୍‌ଖାଇ ଗୀତ ଗାନ କରନ୍ତି ଏବଂ ପରେ ବାହାର ସ୍ଥାନରେ ନୃତ୍ୟ କରନ୍ତି । ନୃତ୍ୟଶିଳ୍ପୀମାନଙ୍କ ଦ୍ୱାରା ପରିହିତ ପୋଷାକ ଓ ଅଳଙ୍କାରମାନ ନୃତ୍ୟକୁ ଅଧିକ ଆକର୍ଷଣୀୟ କରିଥାଏ । ଡ଼ାଲ୍‌ଖାଇ ସଂଗୀତ, ନୃତ୍ୟ ଓ ବାଦ୍ୟ ଏକ ଉଲ୍ଲସିତ ପରିବେଶ ସୃଷ୍ଟି କରେ । ଏଥିରେ ବ୍ୟବହୃତ ହେଉଥିବା ବାଦ୍ୟଯନ୍ତ୍ରଗୁଡ଼ିକ ହେଉଛି ଢ଼ୋଲ, ନିଶାଣ, ଟାସା, ମହୁରୀ ଓ ଝାଞ୍ଜ ''ଡ଼ାଲଖାଇ–ରେ'' ଶବ୍ଦଟି ଏହି ଗୀତରେ ବାରମ୍ବାର ବ୍ୟବହାର କରାଯାଏ ।

ଡ଼ାଲଖାଇ ନୃତ୍ୟ 'ଲହରୀ' ଏବଂ 'ପଦ୍ମିନୀ ଦୋରା ଓ ତାଙ୍କ ଦଳ' ଦ୍ୱାରା ପରିବେଷଣ କରାଯାଉଛି । 'ରସରକେଲୀ' ଗୀତର ତାଳ ଅନୁଯାୟୀ ବିଶ୍ୱପ୍ରସିଦ୍ଧ ଗୀତ 'ରଙ୍ଗବତୀରେ' ସମ୍ବଲପୁରୀ ଦ୍ୱୈତ ନୃତ୍ୟଭାବେ ଆଦୃତ ଲାଭ କରିଛି ।

### ସମ୍ବଲପୁରୀ (ବଜାସାଲ) ନୃତ୍ୟ

ଅନ୍ତର୍ଜାତୀୟ ପ୍ରସିଦ୍ଧି ଲାଭ କରିଥିବା ସମ୍ବଲପୁରୀ ନୃତ୍ୟର ଡ଼ାଲ୍‌ଖାଇ, ରସରକେଲୀ, ମାଇଲାଜାଦା, ଚୁଟ୍‌କୁଚୁଟା ଏବଂ ବାଜଶଳ ଭଳି ଅନେକ ନୃତ୍ୟକଳା ରହିଛି । ସମ୍ବଲପୁରୀ ବଜାସାଲ ନୃତ୍ୟ ରୂପେ କଳାହାଣ୍ଡି ଜିଲ୍ଲାର ବିଭିନ୍ନ ଅନୁଷ୍ଠାନର କଳାକାରମାନଙ୍କ ଦ୍ୱାରା ଲୋକପ୍ରିୟ ହୋଇପାରିଛି ।

ବଜାସାଲ ହେଉଛି ଘର ବାହାରେ କାଠଖୁଣ୍ଟ, ବରଗା ଓ ଛୋଟ ଛୋଟ ଗଛଡ଼ାଳ ଓ ପତ୍ରକୁ ଛାତରୂପେ ବ୍ୟବହାର କରି ଏକ ଖୋଲା ସ୍ଥାନ ଯେଉଁଠାରେ ଯୁବକଯୁବତୀମାନେ ଡ୍ରମ୍ ''ସିଂହବାଦ୍ୟ'' ବୋଲି କୁହାଯାଉଥିବା ଏକ ବାଦ୍ୟଯନ୍ତ୍ର ଓ ମହୁରୀ ଇତ୍ୟାଦି ପାରମ୍ପରିକ ବାଦ୍ୟ ରାତିସାରା ବଜାନ୍ତି । କଳାହାଣ୍ଡି ଜିଲ୍ଲାର ଗ୍ରାମାଞ୍ଚଳରେ ବିବାହ ଉତ୍ସବ ବା ଅନ୍ୟ କୌଣସି ପର୍ବପର୍ବାଣି ଅବସରରେ ଏଭଳି କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥାଏ ।

ଡ୍ରମ୍‌ବାଦକମାନଙ୍କ ସହ ତାଳେ ତାଳେ ଯୁବତୀମାନେ ନୃତ୍ୟଗୀତ ପ୍ରସ୍ତୁତ କରନ୍ତି, ସେତେବେଳେ ସେମାନେ ନୃତ୍ୟକୁ ଉପଭୋଗ କରିବା ପାଇଁ ସେଠାରେ ଉପସ୍ଥିତ ଥିବା ଯୁବକମାନଙ୍କ ସହ ପ୍ରେମ ଓ ହାସ୍ୟରସାତ୍ମକ ବାକ୍ୟ ବିନିମୟ କରିଥାଆନ୍ତି ।

ଏହି ନୃତ୍ୟ କାର୍ଯ୍ୟକ୍ରମ ପୂର୍ବରୁ ପ୍ରାୟୋଜିତ କରାଯାଇଥାଏ, କାରଣ, ବିବାହୋତ୍ସବରେ ବହୁ ସଂଖ୍ୟାରେ ଏକତ୍ରିତ ହେଉଥିବା ଆତ୍ମୀୟସ୍ୱଜନଙ୍କ ରହିବା ପାଇଁ ବ୍ୟବସ୍ଥା ଗ୍ରାମାଞ୍ଚଳରେ ରହୁଥିବା ଲୋକମାନଙ୍କ ପକ୍ଷରେ ସମ୍ଭବ ହୋଇନଥାଏ । ସେଥିପାଇଁ ସେମାନେ ବଜାସାଲରେ ଅନୁଷ୍ଠିତ ହେଉଥିବା ନୃତ୍ୟଗୀତ ଓ ମଉଜ ମଜ୍‌ଲିସ୍‌ରେ ସେମାନଙ୍କ ରାତ୍ରୀକାଳ କଟାଇ ଦିଅନ୍ତି ।

### ଦଣ୍ଡ ନୃତ୍ୟ

ଦଣ୍ଡ ନୃତ୍ୟ ହେଉଛି ବିଭିନ୍ନ ଅଙ୍ଗଚାଳନା ଦ୍ୱାରା ସୃଷ୍ଟି ହେଉଥିବା ଓଡ଼ିଶାର ଏକ ନୃତ୍ୟକଳା, ଯାହାକି ଉତ୍ସାବାନୁଷ୍ଠାନରେ ଦିନତମାମ ପ୍ରଦର୍ଶନ କରାଯାଏ । ଏହି ନୃତ୍ୟର ଅଂଶଗ୍ରହଣକାରୀମାନେ ଭଗବାନ ଶିବ ଓ ଦେବୀ ପାର୍ବତୀଙ୍କର ଭକ୍ତ ଅଟନ୍ତି । ଦଣ୍ଡ ନୃତ୍ୟ ଚୈତ୍ର ଓ ବୈଶାଖ ମାସରେ ଅନୁଷ୍ଠିତ ହୁଏ । ଅନଗ୍ରସର ଜାତିର ପୁରୁଷ ସଭ୍ୟମାନଙ୍କ ଦ୍ୱାରା ଏହି ନୃତ୍ୟ ପର୍ଯ୍ୟାୟକ୍ରମେ ପ୍ରଦର୍ଶନ କରାଯାଏ । ଦଣ୍ଡ ନୃତ୍ୟର ଅଧିକାଂଶ ନର୍ତ୍ତକ ଯୋଡ଼ି ଯୋଡ଼ି ହୋଇ ନୃତ୍ୟ ପ୍ରଦର୍ଶନ କରନ୍ତି ଏବଂ ଗୀତ ମାଧମରେ କଥୋପକଥନ କରନ୍ତି । ଯଦିଓ ଧର୍ମୀୟ ଭାବନା ଉପରେ ପର୍ଯ୍ୟବସିତ, ଲୋକଗୀତ ସହ ଯୋଡ଼ି ହୋଇ ରହିଥିବା ଏହି ନୃତ୍ୟ ଗ୍ରାମୀଣ ଜୀବନର ବିବିଧ ଚିତ୍ରକୁ ଦର୍ଶାଇ ଥାଏ । ଦଣ୍ଡ ନୃତ୍ୟର ସମସ୍ତ ରୀତିନୀତି ଚାଲିଥିବା ସମୟରେ ଢ଼ୋଲ ଦ୍ୱାରା ତାଳ ଓ ମହୁରୀ ଦ୍ୱାରା ସଂଗୀତ ପରିବେଷଣ କରାଯାଇଥାଏ । ଗୀତଗୁଡ଼ିକ ସମ୍ପୂର୍ଣ୍ଣ ଭକ୍ତିପୂର୍ଣ୍ଣ ଏବଂ ବୀରତ୍ୱପୂର୍ଣ୍ଣ ଗାଥାର କାବ୍ୟ ଉପରେ ପର୍ଯ୍ୟବସିତ । ଏବେ ମଧ୍ୟ ଦଣ୍ଡ ନୃତ୍ୟ ଢ଼େଙ୍କାନାଳ, ଅନୁଗୁଳ, ନୟାଗଡ଼, ଗଞ୍ଜାମ ଜିଲ୍ଲା ଓ ରାଜ୍ୟର କେତେକ ଆଭ୍ୟନ୍ତରୀଣ ଅଞ୍ଚଳରେ ପ୍ରଚଳିତ ରହିଛି ।

### ଯୋଡ଼ି ଶଙ୍ଖ ଓ ରଣପା ନୃତ୍ୟ

ବାଦ୍ୟ ଓ ନୃତ୍ୟର ମିଳିତ ରୂପ ହୋଇଛି ଯୋଡ଼ି ଶଙ୍ଖ, ଯାହାକି ଗ୍ରାମ୍ୟ ସଙ୍ଗୀତର ଏକ ଅନନ୍ୟ ଉପସ୍ଥାପନା ।



ଶଙ୍ଖ ବାଦନ କଳାବେଳେ ଶଙ୍ଖୁଆଟି ଶଙ୍ଖ ଓ ଶାରୀରିକ ଗତିଶୀଳତା ମଧ୍ୟରେ ତାଳମେଳ ରକ୍ଷା କରେ । ଏହି କଳା ହେଉଛି ସାମରିକ, ଏହାର ଭାବ ଗ୍ରାମୀଣ ଓ ବେଶଭୂଷା ଅତୀବ ସୁନ୍ଦର । ଶଙ୍ଖ ସହିତ ଯେତେବେଳେ 'ଚଙ୍ଗୁବାଜା' ଓ ମହୁରୀ ମିଳିତ ଭାବେ ବାଦନ କରାଯାଏ, ବିଭିନ୍ନ ଭାବର ସାଙ୍ଗୀତିକ ମୂର୍ଚ୍ଛନା ସୃଷ୍ଟି କରେ । ଠେଙ୍ଗା ରଣପାର ଆକ୍ଷରିକ ଅର୍ଥ ହେଉଛି ଏକ ଠେଙ୍ଗା । ସେଥିପାଇଁ ଠେଙ୍ଗା ଉପରେ ହେଉଥିବା ନୃତ୍ୟକୁ 'ରଣପା ନୃତ୍ୟ' ବୋଲି କୁହାଯାଏ । ଓଡ଼ିଶାର ଦକ୍ଷିଣାଞ୍ଚଳର ଗଞ୍ଜାମ ଜିଲ୍ଲାରେ ଯାଦବ ସମ୍ପ୍ରଦାୟମାନଙ୍କ ମଧ୍ୟରେ ଏହି ନୃତ୍ୟ ପ୍ରଚଳିତ ଥିଲା । ଦୋଳଯାତ୍ରା ଓ ଗିରି ଗୋବର୍ଦ୍ଧନ ପୂଜା ସମୟରେ ଯୁବକମାନେ ଏହି ନୃତ୍ୟ ପ୍ରଦର୍ଶନ କରୁଥିଲେ । ସେଠାରେ କୌଣସି ବାଦ୍ୟଯନ୍ତ୍ରର ଆବଶ୍ୟକତା ନଥିଲା । ସେମାନେ କେବଳ କୃଷ୍ଣଲୀଳା ସମ୍ବନ୍ଧୀୟ ଗୀତ ଗାନ କରନ୍ତି ଓ 'ବାଜେଣୀ' ନାମକ ଏକ ଲୌହ ନିର୍ମିତ 'ପାଦ'ର ତାଳ ଅନୁସାରେ ନୃତ୍ୟ କରନ୍ତି ଓ ଏହା ରୁଣୁଝୁଣୁ ଶବ୍ଦ ସୃଷ୍ଟି କରେ । ଏବେ ଏହାକୁ ନୂତନ ରୂପ ଦିଆଯାଇଛି ଓ ଏଥିରେ କିଛି ପରିବର୍ତ୍ତନ ଆସିଛି । ଏହି ନୃତ୍ୟର ଅନେକ ଶାରୀରିକ କୌଶଳ ରହିଛି, ଯାହା ଦର୍ଶକମାନଙ୍କ ଦ୍ୱାରା ବହୁଳ ପ୍ରଶଂସିତ ହୋଇଥାଏ ।

ଯୋଡ଼ି ଶଙ୍ଖ ଓ ରଣପା ନୃତ୍ୟ ରାଜ୍ୟର ଏକ ପ୍ରଖ୍ୟାତ ସଂସ୍ଥା । ଗଞ୍ଜାମ ନରେନ୍ଦ୍ରପୁରର ଗଙ୍ଗେଶ୍ୱର ଯୁଗଳ ଶଙ୍ଖବାଦ୍ୟ ଲୋକନୃତ୍ୟ କଳା ଅନୁଷ୍ଠାନ ଦ୍ୱାରା ପରିବେଷିତ ହେଉଛି ।

### ଗଡ଼ବା ଲୋକନୃତ୍ୟ

ଗଡ଼ବା ଏକ ପ୍ରାଚୀନ ଜନଜାତି, ଯାହାକୁ ଭାଷା ଆଧାରରେ ମୁଣ୍ଡାରି ବା କୋଲାରିଆନ୍ ଭାବେ ବର୍ଗୀକରଣ କରାଯାଇଛି । ସେମାନେ ମୁଖ୍ୟତଃ କୃଷିଜୀବୀ, ଶ୍ରମିକ ଏବଂ ଶିକାରୀ ଶ୍ରେଣୀର ଆଦିବାସୀ ରୂପେ ପରିଗଣିତ ହୁଅନ୍ତି । କୁହାଯାଏ ଯେ ସେମାନେ ଗୋଦାବରୀ ଅବବାହିକାରେ ବସବାସ କରୁଥିବା ଜନଜାତିର ମୂଳ ଅଧିବାସୀ, ଯେଉଁମାନେ କୋରାପୁଟରେ ବସତି ସ୍ଥାପନ କଲେ ।

ଗଡ଼ବା ରମଣୀମାନେ ଏକ ପ୍ରକାର ସୁନ୍ଦର 'କେରାଙ୍ଗ' ଶାଢ଼ି ପରିଧାନ କରନ୍ତି, ଯାହା ଉପରେ ନାଲି, ସବୁଜ ଓ ହଳଦି ରଙ୍ଗର ପଟା ପଟା ଦାଗ ରହିଥାଏ । ଗୋଟିଏ 'କେରାଙ୍ଗ' ଶାଢ଼ି ସାରା ଜୀବନ ପର୍ଯ୍ୟନ୍ତ ନଷ୍ଟ ହୁଏ ନାହିଁ ।

### ନୃତ୍ୟ

ଗଡ଼ବାମାନଙ୍କର ପ୍ରଧାନ ନୃତ୍ୟମାନଙ୍କ ମଧ୍ୟରୁ ଢ଼େମ୍‌ସା ହେଉଛି ଅନ୍ୟତମ । ଏହା ଏକ ପାରମ୍ପରିକ ନୃତ୍ୟ ଓ ସାଧାରଣତଃ ଦଶହରା, ପୌଷ ପୂର୍ଣ୍ଣିମା ଓ ଚୈତ୍ର ପର୍ବ ଭଳି ସାର୍ବଜନୀନ ପର୍ବପର୍ବାଣି ବେଳେ ପ୍ରଦର୍ଶନ କରାଯାଏ । ଉଭୟ ପୁରୁଷ ଓ ମହିଳା ଏହି ନୃତ୍ୟରେ ଅଂଶଗ୍ରହଣ କରନ୍ତି ।

ଗଡ଼ବା ରମଣୀମାନେ ପ୍ରଥମେ ପ୍ରତ୍ୟେକ ପ୍ରତ୍ୟେକଙ୍କର ଅଣ୍ଟାରେ ପଛପଟେ ହାତ ଦେଇ ଅର୍ଦ୍ଧ–ବୃତ୍ତାକାରରେ ଛିଡ଼ା ହୁଅନ୍ତି । ସେମାନେ ବାମଗୋଡ଼ ଆଗକୁ ଓ ଡ଼ାହାଣ ଗୋଡ଼ ପଛକୁ ରଖି ଏକ–ଦୁଇ ଭଳି

ସାଧାରଣଭାବେ ପାଦ ପକାଇ ନୃତ୍ୟ ଆରମ୍ଭ କରନ୍ତି । ବେଳେବେଳେ ସେମାନେ ୨ଗୋଟି ଦଳରେ ବିଭକ୍ତ ହୋଇ ଏବଂ ପରେ ଏକତ୍ରିତ ହୋଇ ନୃତ୍ୟ କରନ୍ତି । ସେତେବେଳେ ସେମାନେ ପୁଣିଥରେ ଦ୍ରୁତ ଗତିରେ ଆଣ୍ଠୁ ଭାଙ୍ଗି ପଛକୁ ଓ ଆଗକୁ ଆଠ ଓ ଚାରି ମୁଦ୍ରାରେ ପାଦ ପକାଇ ନୃତ୍ୟ କରନ୍ତି ।

ଗଡ଼ବା ପୁରୁଷ ଓ ନାରୀ ବର୍ଷତମାମ ଅନ୍ୟ ଜନଜାତିମାନଙ୍କର ନୃତ୍ୟ ମଧ୍ୟ ନିଜ ଆମୋଦପ୍ରମୋଦ ନିମନ୍ତେ ପ୍ରଦର୍ଶନ କରିଥାଆନ୍ତି । ବିଭିନ୍ନ ସାମାଜିକ ଅନୁଷ୍ଠାନମାନଙ୍କରେ ମଧ୍ୟ ଏହି ସବୁ ନୃତ୍ୟ ପ୍ରଦର୍ଶନ କରାଯାଏ ।

ଗଡ଼ବା ନୃତ୍ୟସବୁ ଅତ୍ୟନ୍ତ ଆକର୍ଷଣୀୟ ଓ ଆମୋଦଦାୟକ ହୋଇଥାଏ । ଗଡବାମାନେ ବ୍ୟବହାର କରୁଥିବା ବାଦ୍ୟଯନ୍ତ୍ରଗୁଡ଼ିକ ହେଲା ଢ଼ୋଲ, ଟମକ ଓ ମହୁରୀ । ସଂଗୀତର ଶୈଳୀଗୁଡ଼ିକ ପ୍ରାଚୀନ ଓ ସରଳ । ଗୀତଗୁଡ଼ିକ ସାଧାରଣ ତାଳ ସହିତ ୩ରୁ ୪ ଧାଡ଼ିର ହୋଇଥାଏ ।

### ଖରିଆ ନୃତ୍ୟ ( ମୟୂରଭଞ୍ଜ)

ଖରିଆ ଯୁବକ ଯୁବତୀ ଏକତ୍ର ନୃତ୍ୟ କରନ୍ତି । କେବେ କେବେ ସେମାନେ ପୃଥକ୍ ହୋଇ ଅଲଗା ଅଲଗା ଧାଡ଼ିରେ ନୃତ୍ୟ କରନ୍ତି ଓ କେତେକ କ୍ଷେତ୍ରରେ ବୃଦ୍ଧ ବୃଦ୍ଧାମାନେ ନୃତ୍ୟରେ ଅଂଶ ଗ୍ରହଣ କରନ୍ତି । ବାଦ୍ୟଯନ୍ତ୍ର ଓ ଗୀତ ସାଙ୍ଗରେ ନୃତ୍ୟ ପରିବେଷଣ କରାଯାଏ । ମୁଖ୍ୟତଃ ଖରିଆ ନୃତ୍ୟକୁ ୫ ଗୋଟି ଶ୍ରେଣୀରେ ବିଭକ୍ତ କରାଯାଇଛି । ଯଥା : (କ) ହରିଆରୋ, (ଖ) କିନଭର୍ (ଗ) ହଲ୍କା, (ଘ) କୁଡ୍‌ବିଙ୍ଗ୍ ଓ (ଙ) ଯଦୁରା । ତାଳ ଅନୁସାରେ ଶରୀରକୁ ଦୋଳାୟମାନ କରିବା ଖରିଆ ନୃତ୍ୟର ଆକର୍ଷଣୀୟ ବୈଶିଷ୍ଟ୍ୟ । ପର୍ଯ୍ୟାୟକ୍ରମେ ଆଗକୁ ଓ ପଛକୁ ଗତି କରି, ହାଲ୍‌କା ଓ ଜୋର୍‌ରେ ପାଦ ପକାଇ ଏବଂ ବେଳେବେଳେ ଚକ୍ରାକାରରେ ସ୍ତମ୍ଭ ଭଳି ସେମାନେ ନୃତ୍ୟ କରିଥାନ୍ତି ।

### କୋୟା ନୃତ୍ୟ (କୋରାପୁଟ)

କୋୟାମାନେ ଏକ ଅଦ୍ଭୁତ ନୃତ୍ୟ ପ୍ରଦର୍ଶନ କରନ୍ତି, ଯେଉଁଥିରେ ପୁରୁଷମାନେ ସେମାନଙ୍କ ମୁଣ୍ଡରେ ମଇଁଷି କିମ୍ବା ବନ୍ୟ ମଇଁଷିର ଶିଙ୍ଗକୁ ବାନ୍ଧି ଦିଅନ୍ତି ଓ ଛାୟା ଯୁଦ୍ଧରେ ବ୍ୟାପୃତ ହୋଇଯାଆନ୍ତି । ସେମାନଙ୍କର ମହିଳାମାନେ ମଧ୍ୟ ଜଣେ ଅନ୍ୟ ଜଣଙ୍କ କାନ୍ଧରେ ହାତ ପକାଇ ବୃତ୍ତାକାରରେ ଅତି ସୁନ୍ଦର ଭାବେ ନୃତ୍ୟ କରନ୍ତି ।

### ପରଜା ନୃତ୍ୟ (କୋରାପୁଟ)

ପରଜା ନୃତ୍ୟରେ ଗ୍ରାମର ସମସ୍ତ କିଶୋରୀ ଓ ଅଳ୍ପବୟସ୍କା ବିବାହିତା ମହିଳାମାନେ ନିଜ ନିଜକୁ ଏକ ଶୃଙ୍ଖଳ ଭଳି ଦଣ୍ଡାୟମାନ ହୁଅନ୍ତି । ଏଥିରେ ପ୍ରତ୍ୟେକ ଯୁବତୀ ତା'ର ପାର୍ଶ୍ୱରେ ଥିବା ଯୁବତୀର ଅଣ୍ଟାକୁ ଡ଼ାହାଣ ହାତରେ ଧରି ତୃତୀୟ ଯୁବତୀର ବାମ କହୁଣିକୁ ଜାବୁଡ଼ି ଧରେ । କିଶୋରୀମାନେ ସେମାନଙ୍କର ଆକାର ଅନୁସାରେ ନିଜକୁ ସଜାଡ଼ି ରଖନ୍ତି –

୯ ରୁ ୧୧ ବର୍ଷ ଭିତରେ ଥିବା କମ୍ ବୟସର ପିଲା ଗୋଟାଏ ପଟେ ଛିଡ଼ା ହୁଅନ୍ତି ଏବଂ ଅପର ପାର୍ଶ୍ୱରେ ଦଳର ମୁଖ୍ୟ ସମୟ ସୂଚାଇବା ପାଇଁ ତାଙ୍କ ଡ଼ାହାଣ ହାତରେ ଏକ ମୟୂର ପରର ଦଣ୍ଡ ଧରିଥାଆନ୍ତି । ତିନିରୁ ଚାରିଜଣ ଯୁବକ ନୃତ୍ୟ ହେଉଥିବା ସ୍ଥାନର ମଧ୍ୟ ସ୍ଥଳରେ ଛିଡ଼ା ହୁଅନ୍ତି ଏବଂ ଗୀତାର ଭଳି ଏକ ବାଦ୍ୟଯନ୍ତ୍ର ବଜାଇ ଗୀତ ଗାୟନ କରନ୍ତି । ସେତିକିବେଳେ ଲମ୍ବା ଶୃଙ୍ଖଳରେ ଏକତ୍ର ସଂଯୋଗ ହୋଇଥିବା ଯୁବତୀମାନେ ସେମାନଙ୍କର ଦଳପତିଙ୍କ ଦୋଳାୟିତ ଦଣ୍ଡର ନିର୍ଦ୍ଦେଶ ଅନୁଯାୟୀ ଠିକ୍ ସମୟରେ ନୃତ୍ୟ କରନ୍ତି । ଏଥିରେ ସେମାନେ ପର୍ଯ୍ୟାୟକ୍ରମେ କେତେବେଳେ ଲମ୍ବାଧାଡ଼ି ତ ଆଉ କେତେବେଳେ ବକ୍ର କୁଣ୍ଡଳୀ ଆକାରରେ ଓ ଆଠ ଅଙ୍କ ଆକୃତିରେ ହୃଦୟଗ୍ରାହୀ କଳା ନୈପୁଣ୍ୟ ପ୍ରଦର୍ଶନ କରିଥାଆନ୍ତି ଏବଂ ତତ୍ପରେ ସେମାନେ ସେମାନଙ୍କର ପୂର୍ବ ଧାଡ଼ିକୁ ଫେରିଯାଇ ଗୋଟିଏ ଧାଡ଼ିରେ ଦଣ୍ଡାୟମାନ ହୁଅନ୍ତି । ସେମାନେ ସାପ ଭଳି କିଛି ଉଜ୍ଜ୍ୱଳ ରଙ୍ଗୀନ୍ ଜିନିଷକୁ ପବନରେ ଫୁଙ୍କି ବାରମ୍ବାର କେତେବେଳେ ଭିତରକୁ ତ କେତେବେଳେ ବାହାରକୁ,

କେତେବେଳେ ଧୀରେ ତ କେତେବେଳେ ଅତି ସୁନ୍ଦର ଭାବେ ଜୋର୍‌ରେ ପ୍ରଦର୍ଶିତ କରନ୍ତି । ଏହାକୁ ଦର୍ଶକମାନେ ଦେଖି ହର୍ଷୋଲ୍ଲାସରେ ବିଭୋର ହୋଇଯାଆନ୍ତି । ନୃତ୍ୟାଙ୍ଗନାମାନେ ସେମାନଙ୍କର ନିଗୂଢ଼ ଅର୍ଥ ଥିବା ଗୀତ ବୋଲି ଅତ୍ୟନ୍ତ ଆନନ୍ଦିତ ହୋଇ ଉଠନ୍ତି, ମାତ୍ର ସଦାସର୍ବଦା ମଧ୍ୟସ୍ଥଳରେ ଥିବା ଯୁବକମାନେ ଅନବରତ ଭାବେ ଗୀତ ଗାୟନ କରି ଚାଲିଥାଆନ୍ତି । ନୃତ୍ୟ କରୁଥିବା ଦଳର ମୁଖ୍ୟ ପ୍ରାୟ ୬ ପ୍ରକାର ଭିନ୍ନ ଭିନ୍ନ ତାଳରେ ପାଦ ପକାଏ ଏବଂ ସେତିକିବେଳେ ନୃତ୍ୟରତା ଯୁବତୀମାନେ ସଙ୍ଗୀତର ତାଳେ ତାଳେ ସେମାନଙ୍କର ଶରୀରକୁ ଗତିଶୀଳ କରିବା ସଙ୍ଗେ ସଙ୍ଗେ ସେମାନେ ପରିଧାନ କରିଥିବା ଏକ ପ୍ରକାର ମିଶ୍ରିତ ଧାତୁରେ ନିର୍ମିତ ଚୁଡ଼ିରେ ରୁଣୁଝୁଣୁ ଶବ୍ଦ ସୃଷ୍ଟି କରନ୍ତି । ଉତ୍ତମ ରୂପେ ତେଲ ଲଗାଇ ଓ ପୁଷ୍ପରେ ସଜ୍ଜିତ ହୋଇଥିବା ମଧୁଚନ୍ଦ୍ର ପରିଧାନ ପୂର୍ବକ ଏକ ହାସ୍ୟରସାତ୍ମକ ପରିବେଶରେ ଯୁବତୀମାନେ ଅତୀବ ସୁନ୍ଦର ଦେଖାଯାଆନ୍ତି ।

### ଓରାଓଁ ନୃତ୍ୟ

ଗ୍ରାମ୍ୟ ମୁଖ୍ୟଙ୍କ ଘର ନିକଟସ୍ଥ ଗାଁ କ୍ଲବ୍ ଗୃହ ଆଗରେ ଥିବା ମଣ୍ଡପ ସମ୍ମୁଖରେ ମୁକ୍ତାକାଶରେ ଏହି ନୃତ୍ୟ ପ୍ରଦର୍ଶିତ ହୋଇଥାଏ । ଯେତେବେଳେ ଯୁବକମାନେ ମଣ୍ଡପ (ଆକ୍ଷରିକ ଅର୍ଥରେ ପିଣ୍ଡା) ନିକଟକୁ ଯାଇ ଡ୍ରମ୍ ବାଦନ କରନ୍ତି, ଯୁବତୀମାନେ ସେମାନଙ୍କର ଘରୁ ବାହାରି ଯାଇ ସେଠାରେ ପହଞ୍ଚନ୍ତି । ଏହି ନୃତ୍ୟର ବୈଶିଷ୍ଟ୍ୟ ହେଉଛି ଗୋଲ ଗୋଲ ହୋଇ ନୃତ୍ୟ କରିବା । ପ୍ରତ୍ୟେକେ ପ୍ରତ୍ୟେକଙ୍କର ହାତ ଧରି ଯୁବକମାନେ ନୃତ୍ୟ ଆରମ୍ଭ କରନ୍ତି ଓ ଜଣେ କୁଶଳୀ ନର୍ତ୍ତକଙ୍କ ନେତୃତ୍ୱରେ ଅନେକ ଥର ଗୋଲ ଗୋଲ ହୋଇ ନୃତ୍ୟ କରନ୍ତି । ତା'ପରେ ଡ୍ରମ୍‌ର ତାଳ ପରିବର୍ତ୍ତନ ହୁଏ, ଯାହାକି ପ୍ରକୃତ ନୃତ୍ୟର ପ୍ରାରମ୍ଭର ସୂଚନା ଦିଏ । ସେତେବେଳେ ନୃତ୍ୟ ଆରମ୍ଭ ହେବା ପାଇଁ ଅନେକ ସମୟ ଧରି ଅପେକ୍ଷା କରି ରହିଥିବା ଯୁବତୀମାନେ ନୃତ୍ୟ ଆରମ୍ଭ କରନ୍ତି । ସେମାନେ ବାମ ଗୋଡ଼ ଆଗକୁ ଓ ଡ଼ାହାଣ ଗୋଡ଼ ପଛକୁ କରି ଓ ଶରୀରକୁ ଆଗକୁ ଓ ପଛକୁ ବଙ୍କା କରି ବୃତ୍ତାକାରରେ ନୃତ୍ୟ କରନ୍ତି । ସେତେବେଳେ ସେମାନେ ସେମାନଙ୍କର ଉଭୟ ପାର୍ଶ୍ୱରେ ଥିବା ଯୁବତୀଙ୍କ ଅଣ୍ଟାରେ ହାତକୁ ହାତ ଛନ୍ଦି ଠିଆ ହୋଇଥାଆନ୍ତି । ଡ୍ରମ୍ ବାଦ୍ୟ ତାଳର ପରିବର୍ତ୍ତନ ଅନୁଯାୟୀ ନୃତ୍ୟର ପଦଚାଳନା ମଧ୍ୟ ବଦଳିଥାଏ ।

ଶରୀରର ଅଣ୍ଟାଠାରୁ ଉପରକୁ ଅଙ୍ଗଚାଳନା, ଆଣ୍ଠୁ ଭାଙ୍ଗି ନାଚିବା, ଡ଼ାହାଣ ପାଦକୁ ପଛକୁ ପକାଇବା ଓ ବାମପାଦକୁ ଆଗକୁ ନେବା ଏବଂ ନିତମ୍ବର ଚଳନ ଆଦି ଏହି ନୃତ୍ୟର କେତେକ ନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟତା ।

ଗୀତ ଓ ବାଦ୍ୟର ତାଳେ ତାଳେ ଏହି ନୃତ୍ୟ ରାତ୍ରୀର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ଚାଲେ । ନୃତ୍ୟ ମଝିରେ ବେଳେ ବେଳେ ହାସ୍ୟରସକାରୀମାନଙ୍କର ଆବିର୍ଭାବ ଘଟେ । ଏହି ଚରିତ୍ରମାନେ ସାଧରଣତଃ କୌତୁକିଆ ପୋଷାକ ପରିଧାନ କରିଥିବା କିଛି ବୟସ୍କ ବ୍ୟକ୍ତି ଯେଉଁମାନେ ମଦ୍ୟପାନ କରିଥାଆନ୍ତି । ସେମାନେ ମହିଳା ଓ ପିଲାମାନଙ୍କୁ ଆନନ୍ଦ ପ୍ରଦାନ କରିଥାଆନ୍ତି ।

### କିଶାନ ନୃତ୍ୟ (ସୁନ୍ଦରଗଡ଼)

କିଶାନମାନେ ଭିନ୍ନ ଭିନ୍ନ ଉତ୍ସବରେ ଫାଗୁଣ, ଯଦୁର, କରମା, ଝୁମର ଓ ବୀଣା ନୃତ୍ୟ ପ୍ରଦର୍ଶନ କରନ୍ତି । ପ୍ରତ୍ୟେକ ନୃତ୍ୟର ସ୍ୱତନ୍ତ୍ର ପଦଚାଳନା ଓ ଭଙ୍ଗୀ ରହିଛି । ସେମାନେ ମଧ୍ୟ ଗୋଲେଇ ଆକାରରେ ନୃତ୍ୟ ପ୍ରଦର୍ଶନ କରନ୍ତି, ଯେଉଁଥିରେ ଉଭୟ ପୁରୁଷ ଓ ମହିଳା ଅଂଶଗ୍ରହଣ କରନ୍ତି । ବିବାହ ନୃତ୍ୟରେ ସେମାନେ ନିଜ ଭାଷାରେ ବିବାହ ଗୀତ ଗାୟନ କରନ୍ତି । ସେମାନଙ୍କର ସମସ୍ତ ନୃତ୍ୟରେ ମାଦଳ ହେଉଛି ଏକମାତ୍ର ବାଦ୍ୟଯନ୍ତ୍ର ।

### ଚାଙ୍ଗୁ ନୃତ୍ୟ (ସୁନ୍ଦରଗଡ଼)

ବଣାଇର ପାର୍ବତ୍ୟାଞ୍ଚଳର ଘଞ୍ଚ ଜଙ୍ଗଲରେ ବସବାସ କରୁଥିବା ପାହାଡ଼ି ଭୂୟାଁମାନଙ୍କ ମଧ୍ୟରେ ଚାଙ୍ଗୁ ନୃତ୍ୟ ଏବେ ମଧ୍ୟ ପ୍ରଚଳିତ ଅଛି । ଗୋଟିଏ ଗ୍ରାମରେ ବା ପଡ଼ୋଶୀ ଗ୍ରାମରେ ରହୁଥିବା ଭୂୟାଁ ଏବଂ ନୃତ୍ୟ କରୁଥିବା ସମୟରେ ଜଣେ ଯୁବକ ଅନ୍ୟ ଜଣେ ଯୁବତୀର ହାତ ଧରି ଜଙ୍ଗଲକୁ ଚାଲିଯାଏ, ଯାହାକୁ ସେ ବିବାହ କରିବାକୁ

ଚାହୁଁଥାଏ । ଅଧିକାଂଶ ସମୟରେ ଏଭଳି ବିବାହ ଦେଖିବାକୁ ମିଳେ ଓ ଏଗୁଡ଼ିକୁ ପାରମ୍ପରିକ ସାମାଜିକ ସ୍ୱୀକୃତି ମିଳିଥାଏ ।

ଭୂୟାଁମାନଙ୍କର ଚାଙ୍ଗୁ କେତେକ ସ୍ୱତନ୍ତ୍ର ବୈଶିଷ୍ଟ୍ୟତା ରହିଛି ଯଦିଓ ଅନ୍ୟ ଜନଜାତିଙ୍କର ନୃତ୍ୟ ଧରି ଏହା ଏତେ ଜୀବନ୍ତ ନୁହେଁ । ପ୍ରତ୍ୟେକଟି ଚାଙ୍ଗୁବାଦକ ଗୋଟିଏ ଲେଖାଏଁ ଚାଙ୍ଗୁ ବଜାଇ ବୃତ୍ତାକାରରେ ଡ଼େଇଁ ଡ଼େଇଁ ଚାଲନ୍ତି । ସେମାନେ ଗ୍ରାମର ଗୀତିକାରମାନଙ୍କ ଦ୍ୱାରା ରଚିତ ଛାନ୍ଦ, ଚଉପଦୀ ଓ ଅନ୍ୟାନ୍ୟ କାମୋଦ୍ଦୀପକ ଗୀତ ଗାନ କରନ୍ତି । ଯୁବତୀମାନେ ନୃତ୍ୟ କରୁଥିଲା ବେଳେ ସାଧାରଣତଃ ଘୋଡ଼ାଇ ହୋଇଥାଆନ୍ତି ଓ ଯୁବକମାନଙ୍କର ଠିକ୍ ବିପରୀତ ପଟେ ନୃତ୍ୟ କରନ୍ତି । ଯେତେବେଳେ ସେମାନେ ଆଗକୁ ଯାଆନ୍ତି, ଯୁବକମାନେ ପଛକୁ ଯାଆନ୍ତି ଓ ଠିକ୍ ସେହିପରି ଯୁବକମାନେ ଆଗକୁ ଗଲାବେଳେ ଯୁବତୀମାନେ ପଛକୁ ଯାଇଥାଆନ୍ତି । କଟିଦେଶର ଗତିକୁ ଏହି ନୃତ୍ୟରେ ପ୍ରାଧାନ୍ୟ ଦିଆଯାଇଥାଏ ।

## ଝୁମର ନୃତ୍ୟ (ସୁନ୍ଦରଗଡ଼)

ଝୁମର ନୃତ୍ୟ ବଣାଇ ଅଞ୍ଚଳର ମୁଣ୍ଡାମାନଙ୍କ ମଧ୍ୟରେ ପ୍ରଚଳିତ । ଝୁମର ଗୀତ ଅନୁସାରେ ଏହି ନୃତ୍ୟ ପ୍ରଦର୍ଶନ ହେଉଥିବାରୁ ଏହାର ନାମକରଣ ଏପରି ହୋଇଛି । ଏହା ଏକ ଦଳଗତ ନୃତ୍ୟ ଏବଂ ଏଥିରେ ଉଭୟ ପୁରୁଷ ଓ ମହିଳା ଅଂଶଗ୍ରହଣ କରିଥାଆନ୍ତି । ମହନ୍ତୋମାନେ ମଧ୍ୟ ଝୁମର ନୃତ୍ୟ କରନ୍ତି, କିନ୍ତୁ ଏଥିରେ କେବଳ ପୁରୁଷମାନେ ଅଂଶଗ୍ରହଣ କରିଥାଆନ୍ତି । ଚୈତ୍ର ପର୍ବ, କୁମାର ଉତ୍ସବ ଓ କାଳୀପୂଜା ଅବସରରେ ମଧ୍ୟ ଏହି ନୃତ୍ୟ ପ୍ରଦର୍ଶନ କରାଯାଏ । ମଣିବନ୍ଧ, କଟିଦେଶ ଓ ଶରୀରର ତରଙ୍ଗାୟିତ ଗତି ହେଉଛି ଏହି ନୃତ୍ୟର କେତେକ ବିଶେଷତ୍ୱ । ଏହାର ସୁବିନ୍ୟସ୍ତ ଗତି ପାଇଁ ଏହି ନୃତ୍ୟ ଅତ୍ୟନ୍ତ ସୁନ୍ଦର ଦେଖାଯାଏ ଓ ଏଥିରେ ତାଳ ଓ ନୃତ୍ୟର ସୁସମନ୍ୱୟ ଘଟିଥାଏ ।

## ବଣ୍ଡି ବୁଟାଲ (ସୁନ୍ଦରଗଡ଼)

ବଣ୍ଡି ବୁଟାଲର ଅର୍ଥ ହେଉଛି ଏକ ଭଙ୍ଗା ବୋତଲ । ଏହାର ଏଭଳି ନାମକରଣ ବିଷୟରେ କିଛି ଜଣାନାହିଁ । ମେଳା, ମହୋତ୍ସବ ଓ କେତେକ ପବିତ୍ର ଅବସରରେ ଏହି ନୃତ୍ୟ ପ୍ରଦର୍ଶିତ ହୋଇଥାଏ । ୨ ରୁ ୩ ଜଣ ପୁଅପିଲା ନିଜ ନିଜକୁ ଝିଅ ବେଶରେ ସଜାଇ ହୋଇ କାମୋଦ୍ଦୀପକ ମୁଦ୍ରାରେ ନୃତ୍ୟ କରନ୍ତି । ଆଉ ଜଣେ ବ୍ୟକ୍ତି କୌଣସି ନୀତି ନିୟମ ବିନା ସେମାନଙ୍କ ସହ ଏଣୁ ତେଣୁ ନୃତ୍ୟ କରେ । ସେମାନେ ସମସ୍ତେ ପ୍ରାୟତଃ ପ୍ରେମ ଗୀତ ଗାଇ ନୃତ୍ୟ କରନ୍ତି । ଏହି ଗୀତଗୁଡ଼ିକୁ ସମବେତ ସ୍ୱରରେ ଗୋଟିଏ ଗାୟକ ଦଳ ପୁନର୍ବାର ଦୋହରାଇ ଥାଆନ୍ତି । ବେଳେବେଳେ ପୁରାଣ କଥାକୁ ନେଇ ଗୀତ ଗାନ କରାଯାଏ । ନୃତ୍ୟ ସହିତ ଢ଼ୋଲକ ଓ ପିତ୍ତଳ ଝାଞ୍ଜ ବଜାଯାଇଥାଏ । କେବେକେବେ ନୃତ୍ୟର ଠାଣୀ ଓ ଗୀତଗୁଡ଼ିକ ଅଶ୍ଳୀଳ ହୋଇଥାଏ । ଏହା ଲଘୁ ଆମୋଦପ୍ରମୋଦର ମାଧ୍ୟମ ହୋଇଥାଏ ।

## କରମା ନୃତ୍ୟ (ସମ୍ବଲପୁର)

ସମ୍ବଲପୁରର ବିଞ୍ଝାଲ, ଖରିଆ, ଓରାଓଁ, କିଶାନ ଓ କୋଲ ଜନଜାତିର ସବୁଠୁ ବେଶି ମନୋରମ ନୃତ୍ୟ ହେଉଛି କରମା । ଏହି ପାରମ୍ପରିକ ନୃତ୍ୟ 'କରମସାନି' ବା 'କରମାରାଣୀ'ଙ୍କ ସମ୍ମାନାର୍ଥେ ପ୍ରଦର୍ଶନ କରାଯାଏ, ଯିଏକି ସନ୍ତାନପ୍ରାପ୍ତିର ଆଶୀର୍ବାଦ ଦିଅନ୍ତି ଏବଂ ସୌଭାଗ୍ୟ ଓ ଦୁର୍ଭାଗ୍ୟ ପାଇଁ ଦାୟୀ ଅଟନ୍ତି । ଭାଦ୍ର ଶୁକ୍ଳ ଏକାଦଶୀ ଦିନ ଯୁବକଯୁବତୀମାନେ ଗୀତ ଗାଇ ଓ ଡ୍ରମ୍ ବଜାଇ ଜଙ୍ଗଲ ମଧ୍ୟକୁ ପ୍ରବେଶ କରନ୍ତି । 'କରମ' ବା ଶାଳ ବୃକ୍ଷର ଏକ ଡ଼ାଳ ଗ୍ରାମକୁ ନିଆଯାଏ । ଗ୍ରାମ ପୂଜକ ଏହି ଡ଼ାଳ ଉପରେ ମଦ ଢ଼ାଳି ପୂଜା କରନ୍ତି ଏବଂ ଚାଉଳ (ଭାତ) ଓ ମିଠା ଭୋଗ ରୂପେ ଅର୍ପଣ କରନ୍ତି । ଗୋଟାଏ କୁକୁଡ଼ା ବଳି ପଡ଼େ ଓ ଏହାର ରକ୍ତ ସେହି ଡ଼ାଳ ଉପରେ ଅର୍ପଣ କରାଯାଏ ।

ନୃତ୍ୟ ପ୍ରଦର୍ଶନ ପୂର୍ବରୁ ନୃତ୍ୟଶିଳ୍ପୀମାନେ ମଞ୍ଚସ୍ଥଳୀକୁ ଦୁଇ ଧାଡ଼ିରେ ପ୍ରବେଶ କରନ୍ତି । ଡ୍ରମ୍‌ବାଦକ, ଝାଞ୍ଜ ବାଦକ ଓ ଗାୟକମାନେ ସମତାଳରେ ସେମାନଙ୍କ ସହ ଯୋଗ ଦିଅନ୍ତି । ବିଞ୍ଝାଲ ନୃତ୍ୟଶିଳ୍ପୀମାନେ ଯୁବ ସୁଲଭ ଉତ୍ସାହ ଓ ଉନ୍ମାଦନା ସହିତ ନୃତ୍ୟ ପରିବେଷଣ କରନ୍ତି,

ଯାହାକି ଖୁବ୍ ମନୋରମ ଓ ଆନନ୍ଦଦାୟକ ହୋଇଥାଏ । ନୃତ୍ୟ ଚାଲିଥିଲାବେଳେ ଡ୍ରମ୍‌ର ତାଳ ଅନୁସାରେ ନୃତ୍ୟଶିଳ୍ପୀମାନେ କେବଳ ''ହାଏ'' ଶବ୍ଦ ଉଚ୍ଚାରଣ କରନ୍ତି । ନୃତ୍ୟ ଦଳର ପ୍ରତ୍ୟେକଟି ସଦସ୍ୟ ଏକ ନାଲି ପଗଡ଼ି ପରିଧାନ କରନ୍ତି । ମୁଣ୍ଡ ଉପରେ ମୟୂର ପର ବନ୍ଧା ଯାଇଥାଏ ଓ ନୃତ୍ୟ କଲାବେଳେ ସମସ୍ତେ ଡ଼ାହାଣ କିମ୍ବା ବାମ ହାତରେ ଏକ ଦର୍ପଣ ଧରିଥାଆନ୍ତି । କୁମାରୀମାନେ ଖୁବ୍ ଆଗ୍ରହର ସହିତ ନୃତ୍ୟ ଉପଭୋଗ କରନ୍ତି ଏବଂ ନୃତ୍ୟ କରୁଥିବା ଯୁବକମାନଙ୍କ ମଧ୍ୟରୁ ସେମାନେ ନିଜ ନିଜର ପସନ୍ଦ ମୁତାବକ ଜୀବନସାଥୀ ବାଛିବା ପାଇଁ ସୁଯୋଗ ପାଆନ୍ତି । ଯୁବକମାନଙ୍କର ନୃତ୍ୟ ବନ୍ଦ ହେବା ପରେ ଯୁବତୀମାନେ ନୃତ୍ୟ କରିବା ଆରମ୍ଭ କରନ୍ତି ଏବଂ ବିଭିନ୍ନ ମୁଦ୍ରାରେ ନୃତ୍ୟ କରନ୍ତି । ସେମାନେ ସେମାନଙ୍କ ଶରୀରକୁ ଆଗ ଓ ପଛ, ଡ଼ାହାଣ ଓ ବାମ କରି, ଆଣ୍ଠୁ ଭାଙ୍ଗି, ପ୍ରତ୍ୟେକ ପ୍ରତ୍ୟେକଙ୍କର ହାତ ଛନ୍ଦି ନୃତ୍ୟ କରନ୍ତି ଓ ମଝିରେ ମଝିରେ ତାଳି ମାରନ୍ତି । ନୃତ୍ୟ ମଝିରେ ଯୁବତୀମାନେ ଭିନ୍ନ ଭିନ୍ନ ସ୍ୱରରେ ଏକ ସୁଦୀର୍ଘ ଗୀତ ଗାଇ ବର୍ଷା ପାଇଁ ପ୍ରାର୍ଥନା କରିଥାଆନ୍ତି । ଯୁବତୀମାନଙ୍କ ନୃତ୍ୟ ଶେଷରେ ଉଭୟ ଯୁବକ ଓ ଯୁବତୀ ଦୁଇଟି ଅଲଗା ଅଲଗା ଧଡ଼ିରେ ପରଦିନ ସକାଳ ପର୍ଯ୍ୟନ୍ତ ନୃତ୍ୟ କରନ୍ତି । ପ୍ରତ୍ୟୁଷରେ ବୃକ୍ଷଡ଼ାଳକୁ ଏକ ଶୋଭାଯାତ୍ରାରେ ନିଆଯାଏ ଏବଂ ଏକ ପୁଷ୍କରିଣୀ ବା ଝରଣାରେ ବିସର୍ଜନ କରାଯାଏ ।

### ଡାଲଖାଇ ନୃତ୍ୟ (ସମ୍ବଲପୁର)

ଦଶହରା, ଭାଇ ଜିଉନ୍ତିଆ, ଫାଗୁନ ପୁନେଇଁ ଓ ଅନ୍ୟ ପର୍ବପର୍ବାଣିରେ ବିଞ୍ଝାଲ ସଉରା, କୁନ୍ଧା ଓ ମିର୍ଦ୍ଧା ଜନଜାତିର ଯୁବତୀମାନେ ନୃତ୍ୟ ପରିବେଷଣ କରନ୍ତି । ନୃତ୍ୟ ଆରମ୍ଭରେ ଯୁବତୀମାନେ ଗୋଟିଏ ଧାଡ଼ିରେ ବା ଅର୍ଦ୍ଧ–ବୃତ୍ତାକାରରେ ଦଣ୍ଡାୟମାନ ହୁଅନ୍ତି ଏବଂ ଗୀତ ଗାୟନ କରନ୍ତି, ଯାହାକୁ ଡ଼ାଲଖାଇ ନୃତ୍ୟ ବୋଲି କୁହାଯାଏ ।

ନୃତ୍ୟ ପରିବେଷଣ ବେଳେ ବିଭିନ୍ନ ପ୍ରକାରର ଡ୍ରମ୍ ଯେମିତିକି ଢ଼ୋଲ, ନିଶାଣ ଓ ଟମ୍‌କୀ ଏବଂ ତୂରୀ, ମହୁରୀ ଆଦି ବାଦ୍ୟଯନ୍ତ୍ର ବଜାଯାଇଥାଏ । ନୃତ୍ୟଦଳ ସହିତ ଢ଼ୋଲ ବଜାଳି ମଧ୍ୟ ନୃତ୍ୟ କରିଥାଏ । ଅନ୍ୟ କଳାକାରମାନେ ନିଜ ନିଜର ସ୍ଥାନରେ ବସି ରହି ସେମାନଙ୍କର ବାଦ୍ୟଯନ୍ତ୍ର ବଜାଇଥାଆନ୍ତି ।

### କୋଇସାବାଡ଼ି ନୃତ୍ୟ (ସମ୍ବଲପୁର)

ଗଣ୍ଡା ବର୍ଗର ଗଣ୍ଡ ଓ ଭୂୟାଁ ଜନଜାତିମାନଙ୍କ ମଧ୍ୟରେ ଏହି ନୃତ୍ୟ ପ୍ରଚଳିତ । ଦୁଇ ଫୁଟ ଲମ୍ବର ବାଡ଼ି ଧରି କେବଳ ପୁରୁଷ ନର୍ତ୍ତକ ଏହି ନୃତ୍ୟ କରିଥାଆନ୍ତି । ସେମାନେ ଗାନ କରୁଥିବା ଗୀତର ତାଳ ଅନୁସାରେ ବାଡ଼ିକୁ ବାଡ଼ିରେ ବଜାଇ ବିଭିନ୍ନ ମୁଦ୍ରାରେ ନୃତ୍ୟ କରନ୍ତି । ସ୍ଥାନୀୟ ବାଦ୍ୟଯନ୍ତ୍ର ମଧ୍ୟ ବଜାଯାଇଥାଏ । ଗୀତଗୁଡ଼ିକ ମୁଖ୍ୟତଃ ରାଧାକୃଷ୍ଣଙ୍କ ସ୍ୱର୍ଗୀୟ ପ୍ରେମକଥା ଉପରେ ସ୍ଥାନୀୟ ଭାଷାରେ ରଚନା କରାଯାଇଥାଏ ।

### ହୁମୋ ଓ ବାଉଳି ନୃତ୍ୟ (ସମ୍ବଲପୁର)

ବିଭିନ୍ନ ପବିତ୍ର ଉତ୍ସବାନୁଷ୍ଠାନରେ ଅବିବାହିତ ଯୁବତୀମାନଙ୍କ ଦ୍ୱାରା ଉପରୋକ୍ତ ଦୁଇଗୋଟି ନୃତ୍ୟ ପ୍ରଦର୍ଶିତ ହୋଇଥାଏ । ସେମାନେ ଦଳଗତ ଭାବେ ଗୀତ ଓ ନୃତ୍ୟ ପ୍ରଦର୍ଶନ କରନ୍ତି । ନୃତ୍ୟ ପ୍ରଦର୍ଶନ ବେଳେ କୌଣସି ପ୍ରକାର ବାଦ୍ୟଯନ୍ତ୍ର ବ୍ୟବହୃତ ହୋଇନଥାଏ । ନୃତ୍ୟର ପାଦଚାଳନା ଓ ଗତି ଅତ୍ୟନ୍ତ ମନ୍ଥର ହୋଇଥାଏ ।

### ଯାତ୍ରା



ଯାତ୍ରା କହିଲେ ଗଣନାଟ୍ୟକୁ ବୁଝାଇଥାଏ । ଏଥିରେ ନାଟକ ପ୍ରଦର୍ଶିତ ହୋଇଥାଏ, ଯେଉଁଥିରେ କି ସମ୍ପୂର୍ଣ୍ଣ ଭାବେ ଚରିତ୍ରମାନେ ସେମାନଙ୍କର ଭୂମିକା ପ୍ରଦର୍ଶନ

କରିଥାଆନ୍ତି ଏବଂ ଏହା ସଂଗୀତ, ନୃତ୍ୟ, ଅଭିନୟ ଗୀତ ଓ ନାଟକୀୟ ଦ୍ୱନ୍ଦ୍ୱ ଉପରେ ପରିପୁଷ୍ଟ ହୋଇଥାଏ । ପୂର୍ବରୁ ଏହି ଶକ୍ତିଶାଳୀ ଗଣନାଟ୍ୟ ମାଧ୍ୟମରେ ଜନସାଧରଣଙ୍କୁ ଧାର୍ମିକ ମୂଲ୍ୟବୋଧ ବିଷୟରେ ଅବଗତ କରାଯାଇଥିଲା । ସମ୍ପ୍ରତି ଯାତ୍ରାଗୁଡ଼ିକ କେବଳ ପୌରାଣିକ, ଐତିହାସିକ କିମ୍ବା କପୋଳକଳ୍ପିତ ବିଷୟ ଉପରେ ଆଧାରିତ ହୋଇ ରହିନାହିଁ, ଏଗୁଡ଼ିକ ଆଧୁନିକ ସ୍ୱାଦକୁ ଖାପ ଖୁଆଇ ସାମାଜିକ କଥାବସ୍ତୁକୁ ନେଇ ରଚିତ ହେଉଛି ।

ଏକ ସାଧାରଣ ରଙ୍ଗମଞ୍ଚ ଉପରେ ଯାତ୍ରା ପରିବେଷଣ କରାଯାଏ ଓ ଏହା ଚାରିପଟେ ଦର୍ଶକମାନେ ଉପବେଶନ କରିଥାଆନ୍ତି । ରଙ୍ଗମଞ୍ଚ ବାହାରେ ସମବେତ ସଂଗୀତ ଶିଳ୍ପୀମାନେ ଓ ବାଦ୍ୟକାରୀମାନେ ସେମାନଙ୍କର ସ୍ଥାନ ଗ୍ରହଣ କରନ୍ତି । ରଙ୍ଗମଞ୍ଚ ଉପରେ ଗୋଟିଏ ମାତ୍ର ସିଟ୍ (ବସିବା ସ୍ଥାନ)କୁ ଏକ ସିଂହାସନ, ଏକ ଶଯ୍ୟା ବା ରାସ୍ତାପାର୍ଶ୍ୱର ଏକ ବେଞ୍ଚ୍‌ଭାବେ ବିଭିନ୍ନ ଉଦ୍ଦେଶ୍ୟରେ ବ୍ୟବହାର କରାଯାଏ ।

ଅଭିନେତାମାନେ ଏକ ନାଟକୀୟ ଭଙ୍ଗୀରେ ଗତି କରନ୍ତି । ସେମାନେ ଉଚ୍ଚ ସ୍ୱରରେ ସଂଳାପଗୁଡ଼ିକୁ କହିଥାଆନ୍ତି, କାରଣ ରଙ୍ଗମଞ୍ଚ ଚତୁଃପାର୍ଶ୍ୱରେ ବସିଥିବା ଦର୍ଶକମାନଙ୍କୁ ସେମାନେ ସହଜରେ ଆକର୍ଷିତ କରିପାରିବେ । ସେମାନଙ୍କର ପୋଷାକ ଆଖି ଝଲସାଇ ଦିଏ । ଖଣ୍ଡା ଚକ୍‌ଚକ୍ କରେ ଏବଂ ଜୋର୍‌ରେ ବାଜୁଥିବା ଝାଞ୍ଜ ଶବ୍ଦ ମଧ୍ୟରେ ସେମାନଙ୍କର ସଂଳାପର ଗର୍ଜନ ଶୁଣାଯାଏ । ବେଳେବେଳେ ଅଭିନେତାମାନେ ପ୍ରେମ, ଦୁଃଖ, କରୁଣା ଭଳି ସୂକ୍ଷ୍ମାତିସୂକ୍ଷ୍ମ ଭାବାବେଗକୁ ପ୍ରକାଶ କରିବାରେ ସମ୍ପନ୍ନ ହୋଇଥାଆନ୍ତି । କିନ୍ତୁ ସବୁକଥାକୁ ସେମାନେ ଅତିରଞ୍ଜିତ ଭାବେ ଉପସ୍ଥାପନା କରିବାକୁ ପଡ଼ିଥାଏ । କାରଣ ସାଧାରଣ ଜୀବନରେ ଥିବା ଚରିତ୍ରଗୁଡ଼ିକଠାରୁ ସେମାନେ ନିଜକୁ ଅଧିକ ଭାବେ ପ୍ରଦର୍ଶିତ କରିବାକୁ ଚାହିଁଥାଆନ୍ତି । ସାଧାରଣ ଜୀବନକୁ ଛୁଇଁପାରୁଥିବା ଶ୍ରୁତି ମଧୁର ପାରମ୍ପରିକ ସଂଗୀତ, ନୃତ୍ୟଶୈଳୀ, ଗୀତ, ଅଭିନୟ ଓ ହାସ୍ୟରସ ପାଇଁ ଯାତ୍ରା ମନୋରଞ୍ଜନର ଏକ ବଳିଷ୍ଠ ମାଧ୍ୟମ ରୂପେ ଉଭା ହୋଇଛି । ସାମଗ୍ରିକ ଭାବେ ଓଡ଼ିଶାର ଯାତ୍ରା ସଂସ୍କୃତି ସର୍ବସାଧାରଣଙ୍କ ପାଇଁ ଶିକ୍ଷାଲାଭର ଏକ ବଳିଷ୍ଠ ଅନୁଷ୍ଠାନ ଭାବେ ରହିଆସିଛି ।

**ପାଲା**

ପାଲା ହେଉଛି ଏକ ଦୀର୍ଘ ସାଙ୍ଗୀତିକ ବର୍ଣ୍ଣନା, ଯାହା ବିଭିନ୍ନ ଉଦ୍ଧୃତାଂଶ ସହିତ ସରଳ ଭାବେ ବୁଝାଇ ଦିଆଯାଏ । ଜଣେ ଗାୟକ ପାଲା ଅନୁଷ୍ଠାନର ମୁଖ୍ୟ



ଭାବେ ବିଭିନ୍ନ ବିଷୟ ଉପରେ ଆଲୋକପାତ କରିଥାଆନ୍ତି ଏବଂ ସେ ୪ ରୁ ୫ ଜଣ ପାଳିଆଙ୍କର ସହାୟତା ନିଅନ୍ତି । ସେମାନଙ୍କ ମଧ୍ୟରୁ ଜଣେ ମୃଦଙ୍ଗ ବଜାଇବା ବେଳେ ଅନ୍ୟମାନେ ଝାଞ୍ଜ ଭଳି ବାଦ୍ୟଯନ୍ତ୍ର ବଜାନ୍ତି । ପାଲା ଗାୟକ ମହାଭାରତ, ରାମାୟଣ କିମ୍ବା ଅନ୍ୟାନ୍ୟ ପୁରାଣ ଶାସ୍ତ୍ରର ଉପାଖ୍ୟାନମାନ ବର୍ଣ୍ଣନା କରନ୍ତି । ବାଦ୍ୟ ବଜାଉଥିବା ଅନ୍ୟ ସାଥୀମାନେ ତାଙ୍କୁ ଉପଯୁକ୍ତ ସମୟରେ ମୂଳ ବିଷୟବସ୍ତୁର କଥାକୁ ସମବେତ ଭାବେ ଗାନ କରନ୍ତି । କଥା ବର୍ଣ୍ଣନା ସମୟରେ ଖୁବ୍ ଜୋର୍‌ରେ ମୃଦଙ୍ଗ ଓ ଝାଞ୍ଜ ବଜାଯାଏ । ଗାୟକ ଓ ତାଙ୍କର ସାଥୀମାନେ ଗୀତ ଗାଉଥିବା ବେଳେ ଅତି ସରଳ ତାଳରେ ପାଦ ପକାଇ ନୃତ୍ୟ କରନ୍ତି ।

ପ୍ରାରମ୍ଭରେ ପାଲା ଗାୟକ କୌଣସି ଦେବାଦେବୀ ବିଶେଷ କରି 'ମା' ଶାରଳା'ଙ୍କୁ ଆବାହନ କରି ତାଙ୍କର ଆଶୀର୍ବାଦ ଭିକ୍ଷା କରନ୍ତି ଓ ଗାଉଥିବା ଗୀତର ସଂକ୍ଷିପ୍ତ ଅର୍ଥ ପ୍ରକାଶ କରନ୍ତି । ପାଲା ପରିବେଷଣ ବେଳେ ଆଉ ଜଣେ ଗାୟକ ମୁଖ୍ୟ ଗାୟକଙ୍କୁ ପ୍ରଶ୍ନ ପଚାରନ୍ତି ବା କୌଣସି

ବିଷୟକୁ ବିଶଦ୍‌ଭାବେ ଅବତାରଣା କରିବାକୁ ଅନୁରୋଧ କରନ୍ତି । ପ୍ରାୟତଃ ପାଲାଗୀତଗୁଡ଼ିକ ସମୃଦ୍ଧ ଓଡ଼ିଆ କାବ୍ୟ ଓ ସାହିତ୍ୟ ଭଣ୍ଡାରରୁ ନିଆଯାଏ, ଯାହାର ସଂସ୍କୃତ କାବ୍ୟ ସହିତ ମଧ୍ୟ ଯଥାର୍ଥ ପ୍ରାସଙ୍ଗିକତା ରହିଥାଏ । ପାଲା ଗାୟକ ବର୍ଣ୍ଣନାତ୍ମକ ସଂଗୀତ ପରିବେଷଣ କରିବା ସଙ୍ଗେ ସଙ୍ଗେ ଶ୍ରୋତାମାନଙ୍କୁ ନିଜ ସହ ବାନ୍ଧି ରଖିବା ପାଇଁ ନିଜ ମନରୁ ନୂଆ ନୂଆ ପ୍ରସଙ୍ଗ ଉପରେ ମଧ୍ୟ ଆଲୋକପାତ କରନ୍ତି । ପାଲା ଗାୟକ ଉଜ୍ଜ୍ୱଳ ପୋଷାକ ପରିଧାନ କରିବା ସଙ୍ଗେ ସଙ୍ଗେ ମୁଣ୍ଡରେ ଏକ ଅଳଙ୍କୃତ ପଗଡ଼ି ମଧ୍ୟ ବାନ୍ଧିଥାଆନ୍ତି । ସେ ତାଙ୍କ ହାତରେ ଏକ ଚାମର ଧରିଥାଆନ୍ତି, ଯାହାକୁ ସେ ଆବଶ୍ୟକ ଅନୁଯାୟୀ କେତେବେଳେ ଏକ ଅସ୍ତ୍ର, ପଙ୍ଖା ବା କଲମ ଭାବେ ବ୍ୟବହାର କରନ୍ତି ତ ଅନ୍ୟ ସମୟରେ ସେ ଏହାକୁ ଈଶ୍ୱରୀୟ ଆଶୀର୍ବାଦର ପ୍ରତୀକ ସ୍ୱରୂପ ବ୍ୟବହାର କରନ୍ତି । ଏହାକୁ ସେ ଏପଟ ସେପଟ ତରଙ୍ଗାୟିତ ଭାବେ ଉତ୍ତୋଳିତ କରି ଧରନ୍ତି । ଏହିପରି ଭାବେ ସେ ନାଟକ, ଗୀତ ଓ ନୃତ୍ୟକୁ ଏକତ୍ରିତ କରି ଜଣେ ବର୍ଣ୍ଣନାକାରୀ ରୂପରେ ଅଭିନୟ କରନ୍ତି । ସେତେବେଳେ ସେ ମୂଳ ଉପାଖ୍ୟାନର ସଂଗୀତଠାରୁ ଦୂରେଇ ଯାଇଥାଆନ୍ତି ।

ପାଲା ଯାତ୍ରା ଭଳି ହୋଇଥିଲେ ମଧ୍ୟ ଏହା ଏତେ ବିସ୍ତାରିତ ହୋଇନଥାଏ । ଉଦାହରଣ ସ୍ୱରୂପ, ପାଲାର ପୂର୍ଣ୍ଣାଙ୍ଗ ଚରିତ୍ର ସବୁ ନଥାଏ କି ଏହାର ଦୃଶ୍ୟଗୁଡ଼ିକ ପୃଥକ୍ ପୃଥକ୍ ଭାବେ ପ୍ରଦର୍ଶିତ ହୋଇନଥାଏ । ଏହାର ବିଷୟବସ୍ତୁ ଇତସ୍ତତଃ ଭାବେ ଥରକୁ ଥର ପରିବେଷଣ କରାଯାଏ, ଜଣେ ଦେବତାଙ୍କୁ ଶୁଭସୂଚକ ଭାବେ ଆବାହନ କରାଯାଏ ଓ ଏହା ଏକ ପବିତ୍ର ବାତାବରଣ ସୃଷ୍ଟି କରିଥାଏ । ବିଷୟବସ୍ତୁକୁ ସରଳଭାବେ ବୁଝାଇବା ନିମନ୍ତେ ଗାୟକ ଗୀତର ପ୍ରତ୍ୟେକ ଧାଡ଼ିକୁ ଗଦ୍ୟରେ ପରିପ୍ରକାଶ କରିଥାଏ । ଏହାକୁ ଗୋଟିଏ ବ୍ୟକ୍ତିର ପ୍ରଦର୍ଶନ ବୋଲି କୁହାଯାଇପାରେ ।

**ଦାସକାଠିଆ**

ଦାସକାଠିଆ ମଧ୍ୟ ଓଡ଼ିଶାର ଆଉ ଏକ ଆକର୍ଷଣୀୟ ଲୋକକଳା । ସାଧାରଣତଃ ଏହାକୁ ଦୁଇଜଣ ବ୍ୟକ୍ତି ଜଣେ ଗାୟକ ଓ ଅନ୍ୟ ଜଣେ ସାଥୀ, ପରିବେଷଣ କରନ୍ତି ଏବଂ ଏହା ପାଲାଠାରୁ ମଧ୍ୟ ଅଧିକ ସରଳ । ଏକ ପୌରାଣିକ କିମ୍ବା ଧର୍ମୀୟ କଥାବସ୍ତୁକୁ ଗୀତି କବିତା ମାଧ୍ୟମରେ ବ୍ୟାଖ୍ୟା କରାଯାଏ । ଦୁଇଟି ଛୋଟ ମୋଟା କାଠ ଖଣ୍ଡରେ ନିର୍ମିତ ଏକ ବାଦ୍ୟଯନ୍ତ୍ର (ଦାସକାଠିଆ)ର ନାମ ଅନୁସାରେ ଏହା ନାମିତ । ଗାୟକମାନେ ଦୁଇଟି କାଠଖଣ୍ଡ ମଧ୍ୟରେ ଥିବା ଫାଙ୍କରେ ଏହାକୁ ବାମ ହାତର ବିଶି ଆଙ୍ଗୁଠିରେ ଧରି ତାଙ୍କ ଡ଼ାହାଣ ହାତରେ ଦାସକାଠିଆର ଦୁଇ ପାର୍ଶ୍ୱକୁ ବଜାଇ ଏକ ଛନ୍ଦୋମୟ ଶବ୍ଦ ସୃଷ୍ଟି କରନ୍ତି । ପାଲା ଗାୟକଙ୍କ ଭଳି ସେ ମଧ୍ୟ ପ୍ରାରମ୍ଭରେ କୌଣସି ଦେବତାଙ୍କର ଆଶୀର୍ବାଦ ଭିକ୍ଷା କରନ୍ତି । ସମଗ୍ର ବିଷୟବସ୍ତୁକୁ ବର୍ଣ୍ଣନା କଲାବେଳେ ପ୍ରଥମରୁ ସମର୍ପିତ କରିଥିବା ଦେବତାଙ୍କ ଉଦ୍ଦେଶ୍ୟରେ ମଝିରେ ମଝିରେ ଗୀତ ଗାନ କରାଯାଏ । ପାଲା ତୁଳନାରେ ଦାସକାଠିଆ ପ୍ରଦର୍ଶନର ସମୟ ଅପେକ୍ଷାକୃତ କମ୍ ହୋଇଥାଏ । ଗାୟକମାନେ ଅତ୍ୟନ୍ତ ସାଦାସିଧା ପୋଷାକ ପରିଧାନ କରିଥାଆନ୍ତି ଓ ସାଧୁ ସନ୍ନ୍ୟାସୀଭାବେ ପ୍ରତିଭାତ ହୋଇଥାଆନ୍ତି ।

ଏହିପରି ଯାତ୍ରା, ପାଲା ଓ ଦାସକାଠିଆ ଓଡ଼ିଶା ଲୋକ ସଂସ୍କୃତିର ପ୍ରଧାନ ବାର୍ତ୍ତାବହ ଅଟେ । ଗ୍ରାମୀଣ ଲୋକଙ୍କ ଜୀବନ ଉପରେ ଏହାର ଅଖଣ୍ଡ ପ୍ରଭାବ ରହିଛି । ଏସବୁ କାର୍ଯ୍ୟକ୍ରମ ଏବେ ଟେଲିଭିଜନ୍ ମାଧ୍ୟମରେ ପ୍ରସାରିତ ହେଉଛି । ଫଳରେ ସହରାଞ୍ଚଳରେ ବସବାସ କରୁଥିବା ଲୋକମାନେ ଏହିସବୁ ଲୋକକଳା ସହିତ ପରିଚିତ ହୋଇ ପାରୁଛନ୍ତି ।

**ମେଳା ମହୋତ୍ସବ (ପର୍ବପର୍ବାଣି)**

**ରଥଯାତ୍ରା**

ରାଜ୍ୟର ସବୁଠାରୁ ଜଣାଶୁଣା ପର୍ବ ହେଉଛି ରଥଯାତ୍ରା, ଯାହା ସାରା ବିଶ୍ୱରୁ ତୀର୍ଥଯାତ୍ରୀମାନଙ୍କୁ ଆକର୍ଷଣ କରିଥାଏ । ବଡ଼ ବଡ଼ ଚକ ଥିବା ତିନିଗୋଟି ବିଶାଳକାୟ ରଥରେ ବସିଥିବା ପ୍ରଭୁ ଜଗନ୍ନାଥ, ପ୍ରଭୁ ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ହଜାର ହଜାର ଭକ୍ତ ଶ୍ରୀମନ୍ଦିର ଦ୍ୱାର ସମ୍ମୁଖରୁ ଟାଣି ଟାଣି ଆଣନ୍ତି । ତିନିଠାକୁର ସେଠାରୁ ଗୁଣ୍ଡିଚା ଘରକୁ

ଯାଇ ୮ ଦିନ କାଳ ଅବସ୍ଥାନ କରନ୍ତି ଏବଂ ବାହୁଡ଼ା ଯାତ୍ରା ଦିନ ସେମାନେ ପ୍ରତ୍ୟାବର୍ତ୍ତନ କରନ୍ତି । ଏହି ଅବସରରେ ସେଠାରେ ବିଶାଳ ଜନସମୁଦ୍ର ଦେଖିବାକୁ ମିଳେ । ଓଡ଼ିଶାର ଲୋକମାନଙ୍କ ଉପରେ ଧର୍ମୀୟ ପ୍ରଭାବ କେତେ ଅଧିକ ରହିଛି, ସେହିଠାରେ ହିଁ ଜଣେ ଅନୁଭବ କରିପାରିବ । ଓଡ଼ିଶାର ଲୋକମାନଙ୍କ ପାଇଁ ଜଗନ୍ନାଥ ହେଉଛନ୍ତି ପରମ ବ୍ରହ୍ମ, ଯାହାଙ୍କର ଆଦି ଓ ଅନ୍ତ ନାହିଁ ଏବଂ ଯିଏ ମାନବ ଜାତିର ତ୍ରାଣକର୍ତ୍ତା ।

### ସ୍ନାନ ଯାତ୍ରା

ଜ୍ୟେଷ୍ଠ ମାସ ପୂର୍ଣ୍ଣିମା ଦିନ ପାଳିତ ହେଉଥିବା ଏହି ପର୍ବ ସ୍ନାନ ପୂର୍ଣ୍ଣିମୀ ରୂପେ ପାଳିତ ହୋଇଥାଏ । ଏହା ହେଉଛି ବର୍ଷର ପ୍ରଥମ ଅବସର ଯେବେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା, ସୁଦର୍ଶନ ଓ ମଦନମୋହନଙ୍କ ସହିତ ମନ୍ଦିର ବାହାରକୁ ଏକ ଶୋଭାଯାତ୍ରାରେ ଯାଇ ଶ୍ରୀମନ୍ଦିରର ବାହାର ବେଢ଼ାର ଉତ୍ତର-ପୂର୍ବ କୋଣରେ ଥିବା ସ୍ନାନ ବେଦୀ ଉପରେ ଅଧିଷ୍ଠିତ ହୁଅନ୍ତି । ଉତ୍ତର ଦ୍ୱାର ନିକଟରେ ଥିବା ସୁନା କୂଅରୁ ୧୦୮ ଗରା ପାଣି କଢ଼ାଯାଇ ଜୀଉମାନଙ୍କୁ ସ୍ନାନ କରାଯାଏ । ଏଠାରେ ଜଗନ୍ନାଥ ଓ ବଳଭଦ୍ରଙ୍କୁ ପୁରାଣ ବର୍ଣ୍ଣିତ ହାତୀମୁଣ୍ଡ ଥିବା ଶ୍ରୀଗଣେଶଙ୍କ ବେଶରେ ସଜ୍ଜିତ କରାଯାଏ ।

### ଚନ୍ଦନ ଯାତ୍ରା

ଏହି ପର୍ବ ବୈଶାଖ ମାସରେ ଅନୁଷ୍ଠିତ ହୁଏ ଏବଂ ଦୀର୍ଘ ୪୨ ଦିନ ପର୍ଯ୍ୟନ୍ତ ଚାଲିଥାଏ । କିନ୍ତୁ କହିବାକୁ ଗଲେ, ଏହା ହେଉଛି ମାତ୍ର ୨୧ ଦିନର ପର୍ବ । ପ୍ରଥମ ୨୧ ଦିନକୁ 'ବାହାର ଚନ୍ଦନ' ବୋଲି କୁହାଯାଏ । ଏହି ସମୟ ମଧ୍ୟରେ ପ୍ରତିନିଧିତ୍ୱ କରୁଥିବା ପ୍ରତିମା ରାମ, କୃଷ୍ଣ, ମଦନମୋହନ, ଶ୍ରୀଦେବୀ ଓ ଭୂଦେବୀଙ୍କୁ ଏକ ଶୋଭାଯାତ୍ରାରେ ନରେନ୍ଦ୍ର ପୁଷ୍କରିଣୀକୁ ନିଆଯାଏ । 'ପାଞ୍ଚ ପାଣ୍ଡବ' ନାମରେ ଖ୍ୟାତ ୫ ଗୋଟି ଶିବ ମନ୍ଦିରର ଶିବ ପ୍ରତିମାଙ୍କୁ ମଧ୍ୟ ପୁଷ୍କରିଣୀକୁ ନିଆଯାଏ । ଅତି ସୁନ୍ଦର ଭାବେ ସଜ୍ଜିତ ନୌକାରେ ଏହି ପ୍ରତିମାଗୁଡ଼ିକ ଚାପ ଖେଳନ୍ତି ଏବଂ ସେଠାରେ ସେମାନଙ୍କୁ ପୂଜା କରାଯାଏ ।

### ଦୋଳ ପୂର୍ଣ୍ଣିମା/ହୋଲି

ଦୋଳ ପୂର୍ଣ୍ଣିମା ଓ ହୋଲି ହେଉଛି ସବୁଠାରୁ ଅଧିକ ଚିତ୍ତାକର୍ଷକ ବସନ୍ତକାଳୀନ ମହୋତ୍ସବ, ଯାହା ଓଡ଼ିଶାରେ କିଛି ସ୍ୱତନ୍ତ୍ର ଧାରାରେ ପାଳନ କରାଯାଏ । ଗ୍ରାମାଞ୍ଚଳରେ ଏହା ୫ ଦିନ ଧରି ପାଳିତ ହୁଏ । ଶ୍ରୀକୃଷ୍ଣଙ୍କ ମୂର୍ତ୍ତିକୁ ଶୁକ୍ଳପକ୍ଷ ଦଶମୀ ତିଥିରୁ ଆରମ୍ଭ କରି ପୂର୍ଣ୍ଣିମୀ ପର୍ଯ୍ୟନ୍ତ ପୂଜା କରାଯାଏ । ପ୍ରତିମାଗୁଡ଼ିକ ସୁସଜ୍ଜିତ ବିମାନ (କ୍ଷୁଦ୍ର କାଷ୍ଠ ମନ୍ଦିର)ରେ କାନ୍ଧ ଉପରେ ବସି ଘରକୁ ଘର ବୁଲି ଭୋଗ ଖାଆନ୍ତି । ଅନେକ ଗ୍ରାମର ବିମାନଗୁଡ଼ିକୁ ଶୋଭାଯାତ୍ରାରେ ନିଆଯାଇ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଏକତ୍ରିତ କରାଯାଏ । ଲୋକମାନେ ବିଭିନ୍ନ ପ୍ରକାର ରଙ୍ଗୀନ୍ ଅବିରରେ ରଙ୍ଗ ଖେଳନ୍ତି । ଗବାଦି ପଶୁମାନଙ୍କ ସହ ଗୋପାଳ ବାଳକ କୃଷ୍ଣଙ୍କ ସୁସମ୍ପର୍କ ରହିଥିବା ହେତୁ ଏହି ଉତ୍ସବ ଅଧିକ ମହତ୍ୱ ରଖେ । ଗାଈଗୋରୁମାନଙ୍କୁ ସ୍ନାନ କରାଯାଏ, ସିନ୍ଦୂର ଲଗାଯାଏ, ପୁଷ୍ପମାଲ୍ୟ ପିନ୍ଧାଯାଏ ଓ ପେଟପୂରା ଖାଇବାକୁ ଦିଆଯାଏ ।

### ମକର ମେଳା

ଓଡ଼ିଶାର ଅଧିକାଂଶ ଭାବରେ ପ୍ରାୟତଃ ପ୍ରତିବର୍ଷ ଜାନୁଆରୀ ୧୪ରେ ପଡୁଥିବା ମକର ସଂକ୍ରାନ୍ତି ଦିନ ମକର ମେଳା ଅନୁଷ୍ଠିତ ହୋଇଥାଏ । ଏହି ଦିବସକୁ ସାରା ଭାରତରେ ବିଭିନ୍ନ ନାମରେ ପାଳନ କରାଯାଇଥାଏ । ମାତ୍ର ଓଡ଼ିଶାରେ ଏହା ସ୍ୱତନ୍ତ୍ର ଶୈଳୀରେ ବହୁ ଉତ୍ସାହ ଉଦ୍ଦୀପନାର ସହ ପାଳନ କରାଯାଇଥାଏ, ଯାହାକି ଅନ୍ୟ ରାଜ୍ୟମାନଙ୍କରେ କ୍ୱଚିତ୍ ଦେଖିବାକୁ ମିଳିଥାଏ ।

### ଧନୁଯାତ୍ରା

ବରଗଡ଼ର ଧନୁଯାତ୍ରା ଅନେକ କାରଣ ପାଇଁ ପ୍ରସିଦ୍ଧ । ବିଶ୍ୱରେ ବିଭିନ୍ନ ମୁକ୍ତାକାଶ ରଙ୍ଗମଞ୍ଚ ମଧ୍ୟରେ ଏହା ଅନ୍ୟତମ । ମାସକ ପାଇଁ ବରଗଡ଼ ସହରଟି ମଥୁରାରେ ପରିଣତ ହୁଏ ଓ ନିକଟସ୍ଥ ଜୀରା ନଦୀ ଯମୁନାରେ ରୂପାନ୍ତରିତ ହୁଏ । ଆମ୍ବାପାଲି ଗ୍ରାମଟି ଗୋପରେ ପରିଣତ ହୁଏ । ଏହି ସମୟରେ ପ୍ରତୀକାତ୍ମକ ଭାବେ ରାଜା କଂସ ଏଠାରେ ଶାସନ କରନ୍ତି । କଂସ ଭୂମିକାରେ

ଜଣେ ବ୍ୟକ୍ତି ଅଭିନୟ କରନ୍ତି । ସାଧାରଣ ଲୋକେ ଏହି ଅଭିନୟକୁ ମନଭରି ଉପଭୋଗ କରନ୍ତି ଏବଂ ଶେଷରେ ଅସୁର ରାଜା କଂସ ଭଗବାନ କୃଷ୍ଣଙ୍କ ଦ୍ୱାରା ବଧ ହୁଅନ୍ତି ।

**ମାଘ ସପ୍ତମୀ**

ମାଘ ସପ୍ତମୀ ହେଉଛି ଏକ ଜଣାଶୁଣା ଧାର୍ମିକ ଉତ୍ସବ, ଯାହା କୋଣାର୍କ ସମୁଦ୍ର ଉପକୂଳ ନିକଟସ୍ଥ ଚନ୍ଦ୍ରଭାଗାଠାରେ ଅନୁଷ୍ଠିତ ହୁଏ । ହଜାର ହଜାର ଶ୍ରଦ୍ଧାଳୁ ଚନ୍ଦ୍ରଭାଗାକୁ ପବିତ୍ର ବୁଡ଼ ପକାଇବାକୁ ଆସିଥାଆନ୍ତି । ଚନ୍ଦ୍ରଭାଗାରେ ଥରେ ବୁଡ଼ ପକାଇବା ଗଙ୍ଗାରେ ୭ଥର ବୁଡ଼ ପକାଇବା ସହ ସମାନ ବୋଲି ବିଶ୍ୱାସ ରହିଛି ।

**ଖଣ୍ଡଗିରି ମେଳା**

ଖଣ୍ଡଗିରି ଓ ଉଦୟଗିରି ପାହାଡ଼ର ପାଦ ଦେଶରେ ଆୟୋଜିତ ହେଉଥିବା ଖଣ୍ଡଗିରି ମେଳା ଓଡ଼ିଶାର ଅନ୍ୟତମ ପୁରାତନ ମେଳା । ଏହି ଅବସରରେ ଅନେକ ଧାର୍ମିକ ଗୁରୁ ଏଠାରେ ଏକତ୍ରିତ ହୋଇଥାଆନ୍ତି । ଜନସାଧାରଣଙ୍କ ପାଇଁ ଘରକରଣା ସାମଗ୍ରୀର କିଣାବିକା ଏହି ଯାତ୍ରାର ଅନ୍ୟ

**ଏକ ଆକର୍ଷଣ ।**

**ଯୋରନ୍ଦା ମେଳା**

ଢେଙ୍କାନାଳ ଜିଲ୍ଲାର ଯୋରନ୍ଦାଠାରେ ଅନୁଷ୍ଠିତ ହେଉଥିବା ଯୋରନ୍ଦା ମେଳାରେ ମହିମା ଧର୍ମାବଲମ୍ବୀଙ୍କର ବିରାଟ ସମାବେଶ ହୁଏ । ସାଧାରଣତଃ ଫେବୃଆରୀ–ମାର୍ଚ୍ଚ ମାସରେ ଏହି ମେଳାଟି ଅନୁଷ୍ଠିତ ହୋଇଥାଏ ।

**ମହାଶିବରାତ୍ରୀ**

ସାରା ଓଡ଼ିଶାର ଶିବ ମନ୍ଦିରମାନଙ୍କରେ ମହାଶିବରାତ୍ରୀ ପାଳନ କରାଯାଏ । ମହାଶିବରାତ୍ରୀରେ ଭକ୍ତମାନେ ସାରାଦିନ ଉପବାସ ରଖିଥାଆନ୍ତି । ରାତ୍ରୀର ବିଳମ୍ବିତ ପ୍ରହରରେ ମହାଦୀପ ପ୍ରଜ୍ୱଳନ କରାଯାଇ ଶିବ ମନ୍ଦିର ଉପରେ ସ୍ଥାପନ କରାଯାଏ । ପୁରୀର ଲୋକନାଥ ମନ୍ଦିର, ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର, ଭଦ୍ରକ ଆରଡ଼ିର ଆଖଣ୍ଡଳମଣି ମନ୍ଦିର, ଢେଙ୍କାନାଳ କପିଳାସର ଚନ୍ଦ୍ରଶେଖର ମନ୍ଦିର, ନୟାଗଡ଼ ଶରଣକୁଳର ଲଡୁବାବା ମନ୍ଦିର, କୋରାପୁଟର ଗୁପ୍ତେଶ୍ୱର ମନ୍ଦିର, ବଲାଙ୍ଗୀରର ହରିଶଙ୍କର ମନ୍ଦିର, କଟକ ଆଠଗଡ଼ର ଧବଳେଶ୍ୱର ମନ୍ଦିର ଏବଂ ଅନ୍ୟାନ୍ୟ ମୁଖ୍ୟ ଶୈବପୀଠଗୁଡ଼ିକରେ ହଜାର ହଜାର ସଂଖ୍ୟାରେ ଜନସାଧରଣ ଏକତ୍ରିତ ହୁଅନ୍ତି ।

**ବାଲିଯାତ୍ରା**

ଓଡ଼ିଶାର ଗୌରବୋଜ୍ଜ୍ୱଳ ନୌବାଣିଜ୍ୟ ପରମ୍ପରାର ସ୍ମୃତିଚାରଣ ପାଇଁ କଟକର ମହାନଦୀ କୂଳରେ 'ବାଲିଯାତ୍ରା' ନାମରେ ଏକ ବିରାଟ ଯାତ୍ରାର ଆୟୋଜନ ହୁଏ । ଏହା କାର୍ତ୍ତିକ ପୂର୍ଣ୍ଣିମାଠାରୁ ଆରମ୍ଭ ହୋଇ ୬ ରୁ ୮ ଦିନ ପର୍ଯ୍ୟନ୍ତ ଚାଲେ । ଓଡ଼ିଶାର ନୌବାଣିଜ୍ୟ ପରମ୍ପରାର ସ୍ମୃତିଚାରଣ ସ୍ୱରୂପ ନଦୀ, ସମୁଦ୍ର ଓ ପୁଷ୍କରିଣୀରେ ଲୋକମାନେ କାଗଜଡ଼ଙ୍ଗା ବା କଦଳୀ ପଟୁକା ଉପରେ ମାଟିଦୀପ ପ୍ରଜ୍ୱଳନ କରି ଭସାଇ ଦେଇଥାଆନ୍ତି ।

**ରଜ**

ମୁଖ୍ୟତଃ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳର ଜିଲ୍ଲାଗୁଡ଼ିକରେ ରଜ ଏକ ସ୍ୱତନ୍ତ୍ର ଉତ୍ସବ ରୂପେ ପାଳନ କରାଯାଏ । ଏହା ୩ ଦିନ ଧରି ପାଳିତ ହୁଏ । ଏହି ସମୟରେ ମାଟି ଉତ୍ପାଦଯୋଗ୍ୟ ହୋଇଥାଏ । ଏହି ୩ ଦିନରେ କୃଷକମାନେ ହଳ କରିବାକୁ ଯାଆନ୍ତି ନାହିଁ କି ଝିଅମାନେ ମଧ୍ୟ କୌଣସି ଗୃହକାର୍ଯ୍ୟ କରନ୍ତି ନାହିଁ । ଏହି ଦିନରେ ଧରଣୀ ମାତା ରଜସ୍ୱଳା ହୁଅନ୍ତି ବୋଲି ବିଶ୍ୱାସ କରାଯାଏ । 'ପୋଡ଼ପିଠା' ନାମରେ ଏକ ଭିନ୍ନ ଧରଣର ପିଠା ପ୍ରସ୍ତୁତ କରାଯାଏ । ସମସ୍ତ ଶ୍ରେଣୀର ଲୋକ ବିଶେଷ କରି ଝିଅ ବୋହୂମାନେ ଏହି ସମୟକୁ କ୍ରୀଡ଼ା କୌତୁକ ଓ ଦୋଳିଖେଳ ମାଧ୍ୟମରେ ଉପଭୋଗ କରିଥାଆନ୍ତି ।

**ଶୀତଳ ଷଷ୍ଠୀ**

ଶୀତଳ ଷଷ୍ଠୀ ସମଗ୍ର ଓଡ଼ିଶାରେ ବିଶେଷ କରି ପଶ୍ଚିମ ଓଡ଼ିଶାରେ ପାଳନ କରାଯାଏ । ସମ୍ବଲପୁର ଶୀତଳ

ଷଷ୍ଠୀ ସମଗ୍ର ରାଜ୍ୟରେ ପ୍ରସିଦ୍ଧ । ଏକ ବିଶାଳ ସମାରୋହରେ ଶିବ–ପାର୍ବତୀଙ୍କ ବିବାହ ଉତ୍ସବ ଅନୁଷ୍ଠିତ ହୋଇଥାଏ । ତତ୍‌ପରେ ସେମାନଙ୍କୁ ଏକ ଆଡ଼ମ୍ବରପୂର୍ଣ୍ଣ ଶୋଭାଯାତ୍ରାରେ ନିଆଯାଏ । ଶିବ ମନ୍ଦିରରେ ଏହି ଈଶ୍ୱରୀୟ ଦମ୍ପତିଙ୍କୁ ଅବସ୍ଥାପିତ କଲା ପରେ ଏହି ଉତ୍ସବର ପରିସମାପ୍ତି ଘଟେ ।

### ଝୁଲଣ ଯାତ୍ରା

ପୁରୀର ମନ୍ଦିର ଓ ମଠମାନଙ୍କରେ ଝୁଲଣ ଯାତ୍ରା ବହୁଳ ଭାବେ ପାଳନ କରାଯାଏ । ବୈଷ୍ଣବମାନଙ୍କ ପାଇଁ ଏହି ଯାତ୍ରା ଅଧିକ ଗୁରୁତ୍ୱପୂର୍ଣ୍ଣ ବହନ କରେ । ଭକ୍ତମାନେ ଝୁଲାରେ ଭଗବାନ ଶ୍ରୀକୃଷ୍ଣଙ୍କ ବାଳଗୋପାଳ ମୂର୍ତ୍ତିଙ୍କୁ ଦୋଳି ଖେଳାନ୍ତି ।

### ନୂଆଖାଇ

ପ୍ରାୟତଃ ପଶ୍ଚିମ ଓଡ଼ିଶାରେ ପାଳିତ ହେଉଥିବା ନୂଆଖାଇ ପର୍ବ ଏକ କୃଷିଭିତ୍ତିକ ପର୍ବ । ଏହି ଅବସରରେ ଲୋକମାନେ ସେମାନଙ୍କ କ୍ଷେତ୍ରରେ ଉତ୍ପନ୍ନ ହୋଇଥିବା ଶସ୍ୟ ପ୍ରସ୍ତୁତ ଖାଦ୍ୟ ବନ୍ଧୁବାନ୍ଧବ ଗହଣରେ ମିଳିମିଶି ଖାଇଥାଆନ୍ତି ଏବଂ ବୟସ୍କ ବ୍ୟକ୍ତିମାନଙ୍କୁ ସମ୍ମାନ ଦିଅନ୍ତି ।

### ଅଶୋକାଷ୍ଟମୀ

ଲିଙ୍ଗରାଜ ମହାପ୍ରଭୁ ୩୪ ଫୁଟ୍ ଉଚ୍ଚତା ବିଶିଷ୍ଟ କାଷ୍ଠ ନିର୍ମିତ ରଥରେ ତାଙ୍କ ମନ୍ଦିରରୁ ବାହାରି ରାମେଶ୍ୱର ମନ୍ଦିରକୁ ଯାଇଥାଆନ୍ତି । ସେଠାରେ ୪ ଦିନର ରହଣି ପରେ ଆନନ୍ଦ ଉଲ୍ଲାସ ମଧ୍ୟରେ ସେ ପୁଣି ସ୍ୱ ସ୍ଥାନକୁ ଫେରି ଯାଆନ୍ତି । ଅଶୋକାଷ୍ଟମୀର ଏହି ବାର୍ଷିକ ରଥଯାତ୍ରା ଭୁବନେଶ୍ୱରରେ ଖୁବ୍ ଜାକଜମକରେ ପାଳିତ ହୁଏ ।

### ଚଡ଼କ ମେଳା

ମହାବିଷୁବ ସଂକ୍ରାନ୍ତି ପୂର୍ବରୁ ଅପ୍ରେଲ ମାସରେ ଚଡ଼କ ମେଳା ଚନ୍ଦନେଶ୍ୱରଠାରେ ଅନୁଷ୍ଠିତ ହୁଏ । ଅତି ମନୋରମ ସମୁଦ୍ରକୂଳ ପୃଷ୍ଠଭୂମିରେ ଅନୁଷ୍ଠିତ ହେଉଥିବା ଏହି ମେଳା ଅତ୍ୟନ୍ତ ଜୀବନ୍ତ ହୋଇଉଠେ ଏବଂ ହଜାର ହଜାର ଲୋକ ଏହି ମେଳାକୁ ବୁଲି ଆସନ୍ତି ।

### ଝାମୁ ଯାତ୍ରା

ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାଗୁଡ଼ିକରେ ପ୍ରାୟତଃ ଅପ୍ରେଲ (ଚୈତ୍ର) ମାସରେ ଝାମୁଯାତ୍ରା ଅନୁଷ୍ଠିତ ହୁଏ । ଖୁବ୍ ଧର୍ମୀୟ ପରମ୍ପରା ମଧ୍ୟରେ ଦେବୀ ମା'ଙ୍କୁ ଆରାଧନା କରାଯାଏ । କେତେକ ଭକ୍ତ ଅତି ଗରମ ହୋଇଥିବା ଜଳନ୍ତା କୋଇଲା ଓ କଣ୍ଟା ଉପରେ ଚାଲିଥାଆନ୍ତି । କିଛି କିଛି ଭକ୍ତ ସେମାନଙ୍କର ଜିଭ, ପିଠି ଓ ଓଠରେ କଣ୍ଟା ଫୁଟାଉ ଥିବାର ଦେଖାଯାଏ ।

### ନୃସିଂହନାଥ ମେଳା

ସମୃଦ୍ଧ ଉଦ୍ଭିଦ ଓ ପ୍ରାଣୀଜଗତ ପରିବେଷ୍ଟିତ ବାତାବରଣରେ ନୃସିଂହନାଥ ଓ ହରିଶଙ୍କର ହେଉଛି ଦୁଇଗୋଟି ସୁନ୍ଦର ସ୍ଥାନ । ସାଧାରଣତଃ ମଇ ମାସରେ ଅନୁଷ୍ଠିତ ହେଉଥିବା ଏହି ମେଳା ସମୟରେ ଏହି ସ୍ଥାନ ଅତ୍ୟନ୍ତ ଆକର୍ଷଣୀୟ ହୋଇଉଠେ । ଏହି ସମୟରେ ବସୁଥିବା ଗ୍ରାମ ହାଟ ସ୍ଥାନୀୟ ଲୋକମାନଙ୍କୁ ଏଠାକୁ ଟାଣି ଆଣେ ।

---

ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର



# ଆଧୁନିକ ଓଡ଼ିଶାର ନିର୍ମାତାଗଣ

### ଫକୀରମୋହନ ସେନାପତି

ବାଲେଶ୍ୱରର ମଲ୍ଲିକାଶପୁରରେ ୧୮୪୩ ମସିହା ଜାନୁଆରୀ ୧୪ ତାରିଖରେ ଜନ୍ମ । ପିତା ଲକ୍ଷ୍ମଣ ଚରଣ ସେନାପତି ଏବଂ ମାତା ତୁଳସୀ ଦେବୀ । ଓଡିଆ ଭାଷା ଓ ସାହିତ୍ୟର ସ୍ୱତନ୍ତ୍ର ପରିଚୟ ପ୍ରତିଷ୍ଠା କ୍ଷେତ୍ରରେ ତାଙ୍କର ଅଗ୍ରଗଣ୍ୟ ଭୂମିକା ଥିଲା । ଓଡିଆ ଜାତୀୟତା ଓ ଆଧୁନିକ ଓଡିଆ ସାହିତ୍ୟର ସ୍ରଷ୍ଟା ଭାବେ ଫକୀରମୋହନ ସେନାପତି ସମ୍ମାନିତ ହୁଅନ୍ତି । ଊନବିଂଶ ଶତାବ୍ଦୀ ଶେଷ ଓ ବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ସେ ଓଡିଆ ସାହିତ୍ୟର ବିକାଶ ନିମନ୍ତେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ଫକୀରମୋହନଙ୍କ କାହାଣୀ ବାସ୍ତବରେ ଓଡିଆ ସାହିତ୍ୟର ପୁନଃ ଅଭ୍ୟୁଦୟର କାହାଣୀ । ଏହା ସହ ସେ ଜଣେ ସମାଜ ସଂସ୍କାରକ ଓ ଶିକ୍ଷାବିତ୍ ଯିଏ ସମାଜରେ ପ୍ରଚଳିତ କୁସଂସ୍କାରକୁ ସମାଲୋଚନା ଓ ସୁଧାର କରିବାରେ ତାଙ୍କର ଲେଖନୀ ଚାଳନା କରୁଥିଲେ । ଓଡିଆ ଉପନ୍ୟାସର ପିତା ହିସାବରେ ତାଙ୍କୁ ଗଣାଯାଏ ।



ସେ ଯଥାର୍ଥରେ ଓଡିଶାର ଥୋମାସ୍ ହାର୍ଡି ରୂପେ ପରିଗଣିତ ହୁଅନ୍ତି । ୧୮୯୭ରୁ ୧୯୧୫ ମଧ୍ୟରେ ଲିଖିତ ଫକୀରମୋହନଙ୍କ ଚାରି ଗୋଟି ଉପନ୍ୟାସ ଊନବିଂଶ ଓ ବିଂଶ ଶତାବ୍ଦୀର ସାମାଜିକ ଓ ସାଂସ୍କୃତିକ ଅବସ୍ଥାକୁ ପ୍ରତିବିମ୍ବିତ କରିଥାଏ । ପୁନଶ୍ଚ, ଛ'ମାଣ ଆଠଗୁଣ୍ଠ, ମାମୁଁ ଓ ପ୍ରାୟଶ୍ଚିତ୍ତ ପରି ୩ ଗୋଟି ଉପନ୍ୟାସ ସାମାଜିକ ଜୀବନର ବାସ୍ତବତାକୁ ସବିଶେଷ ଭାବେ ଦେଖାଇଦିଏ । ଲଛମା ହେଉଛି ଅଷ୍ଟାଦଶ ଶତାବ୍ଦୀ ବେଳର ମରାଠା ଆକ୍ରମଣ ପରିପ୍ରେକ୍ଷୀରେ ଓଡିଶାର ରାଜନୈତିକ ବିଶୃଙ୍ଖଳା ସଂପର୍କିତ ଐତିହାସିକ ଦସ୍ତାବିଜ୍ । ରେବତୀ, ପେଟେଣ୍ଟ ମେଡିସିନ୍ ଓ ରାଣ୍ଡିପୁଅ ଅନନ୍ତା ପରି ସ୍ମରଣୀୟ କ୍ଷୁଦ୍ରଗଳ୍ପ ସେ ରଚନା କରିଯାଇଛନ୍ତି । ଫକୀରମୋହନ ମଧ୍ୟ ପ୍ରଥମ ଲେଖକ ଭାବେ ଓଡିଆ ଭାଷାରେ ଆତ୍ମଜୀବନୀ ' ଆତ୍ମ ଜୀବନ ଚରିତ' ଲେଖିଛନ୍ତି ।

ଫକୀରମୋହନଙ୍କ ପ୍ରଥମ ମୌଳିକ କବିତା 'ଉତ୍କଳ ଭ୍ରମଣମ୍' ୧୮୯୨ ମସିହାରେ ଆତ୍ମପ୍ରକାଶ କରିଥିଲା । ଏହା ପ୍ରକୃତରେ କେବଳ ଏକ ଭ୍ରମଣ ପୁସ୍ତକ ନଥିଲା, ବରଂ ଏହା ଓଡିଶାର ତତ୍କାଳୀନ ଜନଜୀବନରେ ସମସାମୟିକ ପ୍ରମୁଖ ବ୍ୟକ୍ତିତ୍ୱର ଅସାଧାରଣ ଏବଂ ରସାତ୍ମକ ସର୍ବେକ୍ଷଣ ଥିଲା । ତାଙ୍କର ପ୍ରକାଶିତ ଅନ୍ୟାନ୍ୟ ମୌଳିକ କବିତାଗୁଡିକ ଥିଲା ପୁଷ୍ପମାଳ, ଉପହାର, ପୂଜା ଫୁଲ, ପ୍ରାର୍ଥନା ଏବଂ ଧୂଳି । ଫକୀରମୋହନ ସେନାପତି ଏକାକୀ 'ରାମାୟଣ' ଓ 'ମହାଭାରତ'ର ସମଗ୍ର ଭାଗ ଅନୁବାଦ କରିଥିଲେ । ଏକାକୀ ଉଭୟ 'ରାମାୟଣ' ଓ 'ମହାଭାରତ'ର ଅନୁବାଦ ତଥା ଶବ୍ଦ ବିନ୍ୟାସ କ୍ଷେତ୍ରରେ ତାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ନିପୁଣତା ବାସ୍ତବରେ ତାଙ୍କୁ ଓଡିଶାର 'ବ୍ୟାସକବି' ରୂପେ ଲୋକପ୍ରିୟ କରିପାରିଛି । ତତ୍କାଳୀନ ଦେଶୀୟ ରାଜ୍ୟ ବାମରାରେ ରାଜାଙ୍କ ଦ୍ୱାରା ସେ ମଧ୍ୟ

'ସରସ୍ୱତୀ' ସମ୍ମାନରେ ବିଭୂଷିତ ହୋଇଥିଲେ । ଓଡିଆ ସାହିତ୍ୟରେ ଏକ ନୂତନ ଯୁଗର ସ୍ରଷ୍ଟା ଫକୀରମୋହନ 'ଉତ୍କଳ ଭାଷା ଉନ୍ନତି ବିଧାନି ସଭା' ନାମକ ଏକ ସଂଗଠନର ପ୍ରତିଷ୍ଠାତା ଥିଲେ, ଯାହା ଓଡିଆ ଭାଷାର ପ୍ରଚାରପ୍ରସାର ତଥା ଓଡିଶାର ଲୋକମାନଙ୍କ ମଧ୍ୟରେ ଏକ ନୂତନ ସଚେତନତା ସୃଷ୍ଟି କରିବାକୁ ୧୮୬୭ ମସିହାରେ ଆରମ୍ଭ ହୋଇଥିଲା । ଓଡିଆ ଭାଷା ସାହିତ୍ୟର ଏହି କାଳଜୟୀ ସ୍ରଷ୍ଟା ୧୯୧୮ ମସିହା ଜୁନ୍ ମାସ ୧୪ ତାରିଖରେ ମହାପ୍ରୟାଣ ଲାଭ କରିଥିଲେ ।

### ଉତ୍କଳଗୌରବ ମଧୁସୂଦନ ଦାସ

କଟକ ଜିଲ୍ଲାର ସତ୍ୟଭାମାପୁରରେ ୧୮୪୮ ମସିହା ଅପ୍ରେଲ ମାସ ୨୮ ତାରିଖରେ ଜନ୍ମ । ପିତା ଚୌଧୁରୀ ରଘୁନାଥ ଦାସ, ମାତା ପାର୍ବତୀ ଦେବୀ । କଲିକତା ବିଶ୍ୱବିଦ୍ୟାଳୟରୁ ଏମ୍.ଏ.ବି.ଏଲ୍. ଡିଗ୍ରୀ ହାସଲ କରିବାରେ ମଧୁସୂଦନ ଦାସ ପ୍ରଥମ ଓଡିଆ ଥିଲେ । ସେ ମଧୁ ବାରିଷ୍ଟର ରୂପେ ଲୋକପ୍ରିୟ ଥିଲେ, ସମ୍ମାନ ପୂର୍ବକ 'ଉତ୍କଳ ଗୌରବ' ରୂପେ ସମ୍ବୋଧିତ ହେଉଥିଲେ । ଓଡିଆମାନେ ପ୍ରାଶାସନିକ କର୍ତ୍ତୃପକ୍ଷଙ୍କ ଦ୍ୱାରା ବିଦ୍ୱେଷ ମନୋଭାବର ଶିକାର ହେଉଥିବା ଦେଖି ସେ ଗଭୀର ଭାବେ ମର୍ମାହତ ହୋଇଥିଲେ । ସେ ବୁଝିଥିଲେ ଯେ, ଓଡିଆମାନଙ୍କ ସ୍ୱାର୍ଥରକ୍ଷା ଦିଗରେ ପ୍ରାଶାସନିକ ଉଦାସୀନତା ଓଡିଆମାନଙ୍କ ଦୁର୍ଦ୍ଦଶାର କାରଣ । ଓଡିଆମାନେ ତିନିଗୋଟି ବିଭିନ୍ନ ପ୍ରଦେଶରେ ଖେଳାଇ ହୋଇ ରହିଥିବାରୁ ସେମାନେ ଏକତ୍ରିତ ହୋଇପାରୁ ନଥିଲେ । ତେଣୁ ବିଚ୍ଛିନ୍ନ ହୋଇ ରହିଥିବା ଓଡିଆମାନଙ୍କୁ ସଂଗଠିତ ଏବଂ ପ୍ରେରିତ କରି ସେମାନଙ୍କ ଏକତ୍ରୀକରଣ ନିମନ୍ତେ ସେ ଦୃଢ ପଦକ୍ଷେପ ଗ୍ରହଣ କରିଥିଲେ ଏବଂ ଓଡିଆମାନଙ୍କ ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ଅଭିବୃଦ୍ଧି ନିମନ୍ତେ ବିଚ୍ଛିନ୍ନ ହୋଇ ରହିଥିବା ଓଡିଆ ବସବାସ କରୁଥିବା ଅଂଚଳଗୁଡିକର ଏକତ୍ରୀକରଣ ନିମନ୍ତେ ବ୍ରିଟିଶ ଶାସକଙ୍କ ଉପରେ ଚାପ ପ୍ରୟୋଗ କରିଥିଲେ ।



ଓଡିଆ ଆନ୍ଦୋଳନର ଲକ୍ଷ୍ୟକୁ ପୂରଣ କରିବା ଦିଗରେ ଏହାର ଯୋଜନା ଓ କାର୍ଯ୍ୟକ୍ରମ ପରିଚାଳନା କରିବା ସହ ଓଡିଆ ଭାଷାଭାଷୀ ଅଂଚଳର ଏକତ୍ରୀକରଣରେ ସେ ପ୍ରମୁଖ ଭୂମିକା ଗ୍ରହଣ କରି ବିଭିନ୍ନ ସମସ୍ୟା ସମାଧାନ ପାଇଁ ତଥା ଏଥିନିମନ୍ତେ କର୍ତ୍ତୃପକ୍ଷଙ୍କ ସହ ଆଲୋଚନା ଓ ବୁଝାମଣା ସକାଶେ 'ଉତ୍କଳ ୟୁନିଅନ୍' ଗଠନ କରିଥିଲେ । 'ଉତ୍କଳ ସଭା'ର ବିଲୋପ ସହ ୧୯୦୩ ମସିହାରେ 'ଉତ୍କଳ ସମ୍ମିଳନୀ' ଗଠିତ ହୋଇଥିଲା । ଏହା ସମସ୍ତ ଓଡିଆ ଭାଷାଭାଷୀ ଅଂଚଳଗୁଡିକୁ ଏକତ୍ରୀତ କରି ଉପଯୁକ୍ତ ବ୍ୟବସ୍ଥା ମଧ୍ୟରେ ଗୋଟିଏ ପ୍ରଶାସନ ଅଧୀନକୁ ଆଣିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲା ।

ମଧୁସୂଦନ ଦାସଙ୍କ ନିଷ୍ଠା ଓ ପ୍ରେରଣା ବଳରେ ବିଭିନ୍ନ ବର୍ଗର ଲୋକେ ଗୋଟିଏ ରାଜନୈତିକ ମଂଚରେ ଏକତ୍ରୀତ ହୋଇଥିଲେ । ଏହା ସଂସ୍କୃତି, ପରମ୍ପରା ଏବଂ ଭାଷା ସହ ଜାତୀୟତାର ଏକ ବିରଳ ଚେତନାର ସଂଗଠିତ ଭାବନାକୁ ଲୋକଙ୍କ ମଧ୍ୟରେ ଉନ୍ମେଷ କରିଥିଲା। ଏହାର ପ୍ରଭାବରେ ଓଡିଶାର ସମସ୍ତେ ପ୍ରଭାବିତ ହୋଇପାରିଥିଲେ । ମଧୁସୂଦନ ଦାସ ଏବଂ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ବଳିଷ୍ଠ ନେତୃତ୍ୱକ୍ରମେ ଏହା ଏପରି ଏକ ସ୍ତରକୁ ଛୁଇଁଥିଲା ଯେ, 'ସ୍ୱାଧୀନତା ଆନ୍ଦୋଳନ' ଏବଂ ଓଡିଆ ଆନ୍ଦୋଳନ ଘନିଷ୍ଠ ଭାବେ ସମ୍ବନ୍ଧିତ ହୋଇଯାଇଥିଲା । ବେଳେବେଳେ ଏହି ଦୁଇ ଆନ୍ଦୋଳନର ଗୁରୁତ୍ୱ ପ୍ରସଙ୍ଗରେ ଐକ୍ୟତାନରେ ଅସୁବିଧା ଉପୁଜୁ ଥିଲା । ଏପରି ପରିସ୍ଥିତି ଲୋକମାନଙ୍କୁ ଓଡିଆ ଆନ୍ଦୋଳନ ମଂଚରେ ମଧୁସୂଦନ ଦାସ ଓ ପରେ କଂଗ୍ରେସ ସହ ହାତ ମିଳାଇବାରେ ପ୍ରେରିତ କରିଥିଲା । ଉତ୍କଳ ସମ୍ମିଳନୀ ବା ଉତ୍କଳ ୟୁନିଅନ୍ କନ୍‌ଫେରେନ୍ସ୍ କଂଗ୍ରେସଠାରୁ ନିଜର ସ୍ୱତନ୍ତ୍ର ପରିଚିତି ରକ୍ଷା କରିଥିଲା ।

ଜଣେ ଲେଜିସ୍‌ଲେଟର୍ ଭାବେ ମଧୁସୂଦନ ଦାସ ବେଶ୍ ପ୍ରଶଂସନୀୟ ହେବା ସହ ପଦମର୍ଯ୍ୟାଦାର ଉତ୍ତୁଙ୍ଗ ଶିଖରରେ ପହଂଚି ଥିଲେ । ଏହା ବହୁଳ ଭାବରେ ତାଙ୍କର

ତୀକ୍ଷ୍ଣ ଚାତୁରୀ ଓ ପ୍ରେରଣାଦାୟକ ବକ୍ତବ୍ୟ ଯୋଗୁଁ ହିଁ ଥିଲା । ସେ ବିହାର-ଓଡିଶାର ଲୋକାଲ୍ ସେଲ୍ଫ୍ ଗଭର୍ଣ୍ଣମେଣ୍ଟ୍ (ସ୍ୱାୟତ୍ତ ଶାସନ ବିଭାଗ)ର ମନ୍ତ୍ରୀ ରୂପେ ମନୋନୀତ ହୋଇଥିଲେ ।

ମଧୁସୂଦନ ଦାସ ଉପଯୁକ୍ତ ନେତୃତ୍ୱ ନେଇ ତାଙ୍କର ମନ୍ତ୍ରିତ୍ୱ କାଳରେ ଜନସାଧାରଣ ଓ ସରକାରରେ ପ୍ରଶଂସା ଓ ଭଲପାଇବା ହାସଲ କରିପାରିଥିଲେ । ତାଙ୍କର ଲୋକପ୍ରିୟତା ସତ୍ତ୍ୱେ ନୀତିଗତ ଦୃଷ୍ଟିରୁ ସେ ୧୯୨୩ ମସିହାରେ ଇସ୍ତଫା ଦେଇଥିଲେ । ଏହା ତାଙ୍କର ସାଧୁତା ଦିଗକୁ ସୂଚାଇ ଥାଏ । ୧୯୧୭ରେ ଆରମ୍ଭ ହୋଇଥିବା ସାପ୍ତାହିକୀ ଖବରକାଗଜ 'ଦି ଓଡିଆ'ରେ ତାଙ୍କର ସାମ୍ବାଦିକତାର ଶୈଳୀ ପ୍ରତିବିମ୍ବିତ ହୋଇଥିଲା । ଏହି ସାପ୍ତାହିକୀ ଖବରକାଗଜ ଜରିଆରେ ଓଡିଆଙ୍କ ସ୍ୱାର୍ଥ ଉପରେ ଆଲୋକପାତ କରିବା ସହ ସରକାରୀ ନୀତିର ସମାଲୋଚନା କରୁଥିଲେ । ସେ ଉଚ୍ଚାରଣ ଓ ଆଚରଣରେ ଗୁରୁତ୍ୱ ଦେଉଥିଲେ ।

ଓଡିଶାର ବିକାଶ କ୍ଷେତ୍ରରେ ଅଗ୍ରଗଣ୍ୟ ହେବା ସହ ସେ ଏହାର ଦୃଢ ପୃଷ୍ଠପୋଷକ ଥିଲେ । ଉତ୍କଳଗୌରବ ମଧୁସୂଦନ ୧୯୩୪ ମସିହା ଫେବୃଆରୀ ମାସ ୪ ତାରିଖରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ପ୍ରଥମ ଓଡିଆ ଭାବେ ସେ ପ୍ରଥମ ମାଷ୍ଟର ଡିଗ୍ରୀ ଓ ପ୍ରଥମ ବି.ଏଲ୍. ଡିଗ୍ରୀ ଲାଭ କରିବା ସହ ଜଣେ ପ୍ରକୃତ ଜନସେବକ ତଥା ଜାତୀୟତାବାଦୀ ରୂପେ ପରିଗଣିତ ହୋଇଥିଲେ । ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ର ସଦସ୍ୟ ଭାବେ ଇଂଲଣ୍ଡକୁ ଦୁଇ ଥର ସମୁଦ୍ର ଯାତ୍ରା କରିବାରେ ଏବଂ ସେଣ୍ଟ୍ରାଲ୍ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିର ସଦସ୍ୟତା ଆହରଣ କ୍ଷେତ୍ରରେ ସେ ପ୍ରଥମ ଓଡିଆ ଓ ପ୍ରଥମ ଭାରତୀୟ ମନ୍ତ୍ରୀ ଥିଲେ ।

## ଗଙ୍ଗାଧର ମେହେର

ସମ୍ବଲପୁରର ବରପାଲିରେ ଏକ ବୁଣାକାର ପରିବାରରେ ୧୮୬୨ ମସିହା ଅଗଷ୍ଟ ମାସ ୯ ତାରିଖର ଶ୍ରାବଣ ପୂର୍ଣ୍ଣିମାରେ ଗଙ୍ଗାଧରଙ୍କ ଜନ୍ମ । ପଂଚମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷାଗତ ଯୋଗ୍ୟତା । ଗଙ୍ଗାଧର ମେହେରଙ୍କ ପ୍ରତି ଡ.ମାୟାଧର ମାନସିଂହଙ୍କର ଅଗାଧ ସମ୍ମାନ ରହିଥିଲା ଏବଂ ସେ ତାଙ୍କର ଓଡିଆ ସାହିତ୍ୟର ଇତିହାସରେ ନିଜ ମତ ରଖି କହିଛନ୍ତି ଯେ, 'ସମସ୍ତେ କହନ୍ତି, ଗଙ୍ଗାଧର ମେହେର୍ ହେଉଛନ୍ତି ଜଣେ ବିରଳ ବ୍ୟକ୍ତିତ୍ୱ ଓ ସମଗ୍ର ଓଡିଆ ସାହିତ୍ୟ ଶୃଙ୍ଖଳାର କବିମାନଙ୍କ ମଧ୍ୟରେ ଅନନ୍ୟ ।' ତାଙ୍କର କାବ୍ୟିକ ସୃଷ୍ଟି ମଧ୍ୟରେ 'ପ୍ରଣୟ-ବଲ୍ଲରି', 'କିଚକ ବଧ', 'ଇନ୍ଦୁମତୀ', 'ଉତ୍କଳ ଲକ୍ଷ୍ମୀ', 'ଅଯୋଧ୍ୟା ଦୃଶ୍ୟ', 'କବିତା କଲ୍ଲୋଳ', 'ଅର୍ଘ୍ୟଥାଳି', 'ଅହଲ୍ୟା ସ୍ତବ', 'ମହିମା ଭାରତୀ ଭାବନା', 'କୁମାର ଜନ୍ମୋତ୍ସବ', 'ଭକ୍ତି ଉପହାର', 'ପଦ୍ମିନୀ', 'କବିତା ମାଳା' ଏବଂ 'କୃଷକ ସଂଗୀତ' ଅନ୍ୟତମ । 'ଆତ୍ମ ଜୀବନୀ', 'ଶ୍ରୀ ନୃପରାଜ ସିଂହ', 'ପୁରାଣ କବି ଫକୀରମୋହନ', 'ସ୍ୱର୍ଗୀୟ କାଶୀନାଥ ପଣ୍ଡା', 'ଏହାକି ପୃଥିବୀର ଶବ୍ଦ?', 'ଶିକ୍ଷିତ' ଏବଂ 'ଶିକ୍ଷାଭିମାନିନୀ' ହେଉଛି ତାଙ୍କର ଗଦ୍ୟ ସୃଷ୍ଟି ।



କବିବର ରାଧାନାଥ ରାୟଙ୍କ ପରି ତାଙ୍କର ସାହିତ୍ୟିକ ସୃଷ୍ଟି ସମ୍ଭାର ପ୍ରକୃତିର ନୈସର୍ଗିକ ସୌନ୍ଦର୍ଯ୍ୟ ବର୍ଣ୍ଣନା ଯୋଗୁଁ ଲୋକପ୍ରିୟତା ହାସଲ କରିପାରିଛି । ଏହା ଅନନ୍ୟ । ଗଙ୍ଗାଧର ଜଣେ 'ପ୍ରକୃତି କବି' ରୂପେ ବେଶ୍ ଜଣାଶୁଣା, ଯିଏ କି, କବି ଶେଲୀ, ବାଇରୋନ୍ ଏବଂ କେଟ୍ସଙ୍କ ସହ ତୁଳନୀୟ ଅଟନ୍ତି । ସେ ଉପେନ୍ଦ୍ର ଭଂଜଙ୍କ ଶୈଳୀ ଓ ଆଦର୍ଶର ଜଣେ ବାର୍ତ୍ତାବାହକ ଥିଲେ । ତାଙ୍କର ଲୋକପ୍ରିୟତା ଆକସ୍ମିକ ନୁହେଁ । ଏହା ପଛରେ ଅନେକ କାରଣ ନିହିତ । କବି ସମ୍ରାଟ୍ ଉପେନ୍ଦ୍ର ଭଂଜଙ୍କ ପରି ତାଙ୍କର କବିତାଗୁଡିକ ଉଚ୍ଚ ଆଳଙ୍କାରିକ ଶବ୍ଦ, ଅନନ୍ୟ ସଂଯୋଜନା ଶୈଳୀ, ଉପମା, ରୂପକ ଓ ଯଥାର୍ଥ ଶବ୍ଦାବଳୀର ଉପଯୁକ୍ତ ପ୍ରୟୋଗ ସହ ସମୃଦ୍ଧ ଥିଲା । ତାଙ୍କର କବିତାଗୁଡିକ ଶବ୍ଦ ଓ ଭାଷାର ଛନ୍ଦରେ ନିନାଦୀ ଥିଲା । ଭାରତୀୟ ସାହିତ୍ୟରେ ତାଙ୍କୁ ଜଣେ ମହାନ୍ କବି ଭାବେ ଗଣାଯାଏ ।

ତାଙ୍କର ମହାପ୍ରୟାଣ ହୁଏ ୧୯୨୪ ମସିହା ଅପ୍ରେଲ ମାସ ୪ ତାରିଖରେ । ତାଙ୍କର କବିତାଗୁଡିକ ଗୀତ କବିତା, ଭକ୍ତିମୂଳକ, ଦେଶାତ୍ମବୋଧକ, ସଂସ୍କାରକ, ନୈତିକ, କୃଷିଭିତ୍ତିକ, ଶୋକଗୀତ ଏବଂ ପ୍ରକୃତି ବର୍ଣ୍ଣନାରେ ବିଭକ୍ତ କରାଯାଇପାରେ ।

### ଶ୍ରୀରାମଚନ୍ଦ୍ର ଭଂଜଦେଓ



ମୟୂରଭଂଜ ଗଡଜାତ ରାଜ୍ୟର ଏକ ରାଜକୀୟ ପରିବାରରେ ୧୮୭୧ ମସିହା ଡିସେମ୍ବର ମାସ ୧୭ ତାରିଖରେ ଜନ୍ମ । ଶ୍ରୀରାମଚନ୍ଦ୍ର ୧୮୯୨ ମସିହା ଅଗଷ୍ଟ ମାସ ୧୫ ତାରିଖରେ ସିଂହାସନ ଆରୋହଣ କରିଥିଲେ । ମୟୂରଭଂଜ ରାଜ୍ୟର ସାମଗ୍ରିକ ଉନ୍ନତି ନିମନ୍ତେ ସେ କାର୍ଯ୍ୟ କରିଥିଲେ ଏବଂ ଜନସାଧାରଣଙ୍କ ମଙ୍ଗଳ ସକାଶେ ବିଭିନ୍ନ ଜନହିତକର ପଦକ୍ଷେପ ଗ୍ରହଣ କରିଥିଲେ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଏହି ଶାସକଙ୍କ ବନ୍ଧୁ, ଦାର୍ଶନିକ ଏବଂ ତତ୍ତ୍ୱାବଧାରକ ଥିଲେ । ଶ୍ରୀରାମଚନ୍ଦ୍ର ଭାଷା, ସ୍ୱାସ୍ଥ୍ୟ ଏବଂ ପ୍ରଶାସନିକ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଆଣିଥିଲେ । ତାଙ୍କ ଶାସନ ସମୟରେ ରୂପ୍ସା-ବାରିପଦା ମଧ୍ୟରେ ନାରୋ ଗଜ୍ ରେଲ୍‌ୱେ ଆରମ୍ଭ ହୋଇଥିଲା । ସେ ହାଲ୍‌ଡିହା ଓ ହଳଦିଆଠାରେ ୬ ଲକ୍ଷ ଟଙ୍କା ବ୍ୟୟରେ ଦୁଇଟି ବୃହତ୍ ଜଳାଶୟ ନିର୍ମାଣ କରିଥିଲେ । ସେହିପରି ଶିକ୍ଷା କ୍ଷେତ୍ରରେ ତାଙ୍କ ରାଜ୍ୟ ସୀମା ମଧ୍ୟରେ ଥିବା ପ୍ରାଥମିକ ବିଦ୍ୟାଳୟର ସଂଖ୍ୟା ୪୪ରୁ ୪୦୦ ପର୍ଯ୍ୟନ୍ତ ବଢାଇ ଦେଇଥିଲେ ।

ଯଦିଓ ସେ ମୟୂରଭଂଜର ରାଜା ଥିଲେ ତଥାପି ସମଗ୍ର ଓଡିଶା ପ୍ରତି ତାଙ୍କର ଅଗାଧ ଭଲପାଇବା ଥିଲା । ମଧୁସୂଦନଙ୍କ ନେତୃତ୍ୱରେ ଓଡିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ କରିବା ପାଇଁ ସେ ଉଲ୍ଲେଖନୀୟ କାର୍ଯ୍ୟ କରିଥିଲେ । ୧୯୦୩ରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ଶ୍ରୀରାମଚନ୍ଦ୍ର ଅଧ୍ୟକ୍ଷତା କରିଥିଲେ । ତତ୍‌ପରେ, ସଂଗଠିତ ଉଦ୍ୟମ ବଳରେ ଓଡିଶା ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହେବାର ସ୍ୱପ୍ନ ୧୯୩୬ ମସିହା ଅପ୍ରେଲ ମାସ ୧ ତାରିଖରେ ବାସ୍ତବ ରୂପ ନେଇଥିଲା । ୧୯୧୨ ମସିହା ଫେବୃଆରୀ ମାସ ୨୨ ତାରିଖରେ ଓଡିଶାର ଏହି ବରପୁତ୍ରଙ୍କର ମହାପ୍ରୟାଣ ଘଟିଥିଲା ।

### ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ

୧୮୭୭ ମସିହା ଅକ୍ଟୋବର ମାସ ୯ ତାରିଖରେ ଜନ୍ମ । ଭାରତର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଯଥାର୍ଥରେ କହିଥିଲେ ଯେ, 'ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗ ଦେଶର ବିଭିନ୍ନ ଅଞ୍ଚଳରେ ମହାମାନବ ଓ ମହିୟସୀ ମହିଳାଙ୍କୁ ଜନ୍ମ ଦେଇଥିଲା । ଉତ୍କର୍ଷ, ସାମାଜିକ ସଂସ୍କାର, ଶିକ୍ଷା, ଆଇନ୍ ଏବଂ ସାହିତ୍ୟ କ୍ଷେତ୍ର ଚମତ୍କାର ଥିଲା । ଗୋପବନ୍ଧୁ ଦାସ ଥିଲେ ଏପରି ଜାତି ନିର୍ମାତାଙ୍କ ମଧ୍ୟରୁ ଅନ୍ୟତମ ।'

ଓଡିଶାର ଜନସାଧାରଣଙ୍କ ବର୍ଷ ବ୍ୟାପୀ ଆଶା ଆକାଂକ୍ଷା, ଅଭୀପ୍‌ସା ଓ ପ୍ରାର୍ଥନା ଗୋପବନ୍ଧୁଙ୍କ ଆଗମନ ସହ ପରିପୂରଣ ହୋଇଥିଲା ।



ସେ ଆଧୁନିକ ଓଡିଶାର ନିର୍ମାତା ଥିଲେ ଏବଂ ଓଡିଶାବାସୀଙ୍କ ପ୍ରେରଣା ଓ ଆଦର୍ଶର ଉତ୍ସ ଥିଲେ । ସେ ନିଜକୁ ଦେଶ ସେବାରେ ସଂପୂର୍ଣ୍ଣ ଉତ୍ସର୍ଗ କରିଥିଲେ, ଏପରିକି ପୀଡିତମାନଙ୍କ ଦୁଃଖ ଦୂର କରିବା ବେଳେ ନିଜର ଏକମାତ୍ର ପୁତ୍ରକୁ ହରାଇଥିଲେ । ସେ ଦାରିଦ୍ର୍ୟ ଓ ଅଶିକ୍ଷାରୁ ମୁକ୍ତ ଏକ ସମାଜ ଚାହୁଁଥିଲେ, ଯେଉଁଠି ମଣିଷ ସମ୍ମାନର ସହ ବଞ୍ଚିପାରିବ ଓ ନିଜର ସଚେତନତା ସ୍ତର ବୃଦ୍ଧିରେ ସମର୍ଥ ହେବ । ଏହି ଲକ୍ଷ୍ୟ ହାସଲରେ ବ୍ରତୀ ହୋଇ ସେ ସାରା ଜୀବନ କାର୍ଯ୍ୟ କରିଚାଲିଥିଲେ ।

ଗୋପବନ୍ଧୁଙ୍କର ଏହି ମହତ ଉଦ୍ଦେଶ୍ୟକୁ ଚିହ୍ନି ତା.୨୮.୦୬.୧୯୨୪ ରିଖରେ ବିଶିଷ୍ଟ ବୈଜ୍ଞାନିକ ତଥା ବଙ୍ଗଳାର ଦେଶପ୍ରେମୀ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ତାଙ୍କୁ 'ଉତ୍କଳମଣି' ଉପାଧିରେ ଭୂଷିତ କରିଥିଲେ । ୧୯୦୯ ମସିହାରେ ସେ ସତ୍ୟବାଦୀ (ଏମ୍.ଇ.ଜାତୀୟ) ବିଦ୍ୟାଳୟ ଆରମ୍ଭ କରିଥିଲେ, ଯେଉଁଥିରେ ପରେ ପଣ୍ଡିତ ନୀଳକଂଠ ଦାସ ଏବଂ ଅନ୍ୟମାନେ ଯୋଗ ଦେଇଥିଲେ । ଏହି ବିଦ୍ୟାଳୟ ଏହାର ଗୁଣାତ୍ମକ ତଥା ଚରିତ୍ର ଗଠନ ମୂଲ୍ୟବୋଧ ଦୃଷ୍ଟିରୁ ଖୁବ୍ଶୀଘ୍ର ଲୋକପ୍ରିୟ ହୋଇପାରିଥିଲା । ସେ ମଧୁସୂଦନ ଦାସଙ୍କ ସହ ମିଶି ଉତ୍କଳ ସମ୍ମିଳନୀ ଜରିଆରେ ଏକ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନର ଦାବୀ ହାସଲ କରିବାକୁ ଓଡିଶାର ଜନସାଧାରଣଙ୍କୁ ଜାଗ୍ରତ କରିପାରିଥିଲେ । ସେତେବେଳେ ବିହାର, ବଙ୍ଗଳା ଏବଂ ଅନ୍ୟାନ୍ୟ ପ୍ରଦେଶରେ ବସବାସ କରୁଥିବା ଓଡିଆଙ୍କ ସାଂସ୍କୃତିକ, ସାହିତ୍ୟିକ ତଥା ଭାଷାଭିତ୍ତିକ ସମାନତା ସହ ଓଡିଆଙ୍କ ସ୍ୱତନ୍ତ୍ର ପରିଚିତି ରକ୍ଷା କରିବା ନିମନ୍ତେ ତାଙ୍କର ବାସ୍ତବବାଦୀ ଚିନ୍ତାଧାରା ଦ୍ୱାରା ସେ ଏହାକୁ ଏକ ନୂତନ ରୂପ ଦେଇପାରିଥିଲେ । ସେ ମଧ ଧାଳଭୂମର ବାହାଡାଗୁଡାଠାରେ ଏକ ଓଡିଆ ଏମ୍.ଇ.ବିଦ୍ୟାଳୟ ଆରମ୍ଭ କରିଥିଲେ । ତତ୍ପରେ, ଓଡିଆ ଭାଷା ଓ ସାହିତ୍ୟର ପ୍ରସାର ନିମନ୍ତେ ସେ ୧୯୧୯ ମସିହା ଅକ୍ଟୋବର ମାସ ୪ ତାରିଖରେ ସାପ୍ତାହୀକ 'ସମାଜ' ଆରମ୍ଭ କରିଥିଲେ । ତାଙ୍କର ମରଣଜୟୀ ଶବ୍ଦାବଳୀ ଏବେ ମଧ ଯୁବପିଢିଙ୍କୁ ଉତ୍ସାହିତ କରିଥାଏ ।

'ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ ପଥେ ଯେତେ ଗାଡ
ପୂରୁ ତହିଁ ପଡି ମୋର ମାଂସ ହାଡ ।'

ସେ ଜଣେ ଅନନ୍ୟ କବି ଥିଲେ । ଜାତୀୟତାବାଦୀ ଚିନ୍ତାଧାରା ସହ ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ଶ୍ରୀକ୍ଷେତ୍ର ପୁରୀ ପ୍ରତି ତାଙ୍କର ପ୍ରେମଭାବ ତାଙ୍କ ରଚିତ କବିତାରେ ଭାବବିହ୍ୱଳତାର ସହ ବର୍ଣ୍ଣିତ ହୋଇଛି ।

'ବନ୍ଦୀର ଆତ୍ମକଥା' ଓ 'ଅବକାଶ ଚିନ୍ତା' ତାଙ୍କର ଅନନ୍ୟ କୃତି । ସେ ଥିଲେ ଜଣେ ବହୁମୁଖୀ ପ୍ରତିଭା, ବିଦ୍ୱାନ୍, ଜଣେ ସ୍ୱାଧୀନତା ସଂଗ୍ରାମୀ, ଆଧୁନିକ ଓଡିଶାର ନିର୍ମାତା, ଓଡିଆ ଭାଷାର ତ୍ରାଣକର୍ତ୍ତା, ଜଣେ ସମାଜସେବୀ, ଆଦର୍ଶ ଶିକ୍ଷକ, ମାନବପ୍ରେମୀ, ସାମ୍ବାଦିକ, କବି, ଦାର୍ଶନିକ ଏବଂ ଜଗନ୍ନାଥ ସଂସ୍କୃତିର ପ୍ରଚାରକ । ୧୯୨୮ ମସିହା ଜୁନ୍ ମାସ ୧୭ ତାରିଖରେ ତାଙ୍କର ଦେହାନ୍ତ ଘଟିଥିଲା ।

**ପଣ୍ଡିତ ନୀଳକଂଠ ଦାସ**

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଯେଉଁ କେତେକ ଉଚ୍ଚ ଶିକ୍ଷିତ ଯୁବକ ଓଡିଶା ମାଟିରେ ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ନବଜାଗରଣ ଆଣିବାକୁ ଇଚ୍ଛା ପୋଷଣ କରିଥିଲେ, ସେମାନଙ୍କ ମଧ୍ୟରୁ ପଣ୍ଡିତ ନୀଳକଂଠ ଦାସ ଥିଲେ ଅନ୍ୟତମ । ଅନ୍ୟମାନେ ଥିଲେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଏବଂ ପଣ୍ଡିତ କୃପାସିନ୍ଧୁ ମିଶ୍ର । ଏହି ପାଞ୍ଚଜଣ ବନ୍ଧୁ 'ସତ୍ୟବାଦୀ ଯୁଗର ପଞ୍ଚସଖା' ଭାବେ ଜଣାଶୁଣା ।



ସେମାନଙ୍କ ଯୌବନର ଆଦ୍ୟ ଭାଗରେ ଏହି ପାଞ୍ଚଜଣ ବନ୍ଧୁ ସରକାରୀ ସେବାରେ ଭର୍ତ୍ତି ନ ହେବାକୁ ତଥା ଦେଶ ସେବା ଏବଂ ସମୃଦ୍ଧିକୁ ସୁନିଶ୍ଚିତ କରିବାକୁ ଶପଥ ଗ୍ରହଣ କରିଥିଲେ ।

ପୁରୀ ଜିଲ୍ଲା ଶ୍ରୀରାମଚନ୍ଦ୍ରପୁର ଗ୍ରାମର ଆନନ୍ଦ ଦାସଙ୍କ ପରିବାରରେ ୧୮୮୪ ମସିହା ଅଗଷ୍ଟ ମାସ ୫ ତାରିଖରେ ଏହି ବରପୁତ୍ର ଜନ୍ମଲାଭ କରିଥିଲେ । ଗ୍ରାମ ବିଦ୍ୟାଳୟରେ ତାଙ୍କର ଆଦ୍ୟ ଶିକ୍ଷାଲାଭ ହୋଇଥିଲା । ୧୮୯୯ରେ ସେ ପୁରୀ ଜିଲ୍ଲା ସ୍କୁଲ୍‌ରେ ନାମ ଲେଖାଇଥିଲେ । ୧୯୦୯ରେ ସେ ବି.ଏ ପାଶ୍ କଲେ ଏବଂ ତାଙ୍କର ଏମ୍.ଏ. ଓ ବି.ଏଲ୍ ଡିଗ୍ରୀ ନିମନ୍ତେ କଲିକତା ଯାଇଥିଲେ । ୧୯୧୧ରେ କଲିକତାରୁ ପ୍ରତ୍ୟାବର୍ତ୍ତନ ପରେ

ପଣ୍ଡିତ ନୀଳକଂଠ ସତ୍ୟବାଦୀ ବିଦ୍ୟାଳୟରେ ଜଣେ ଶିକ୍ଷକ ରୂପେ ଯୋଗ ଦେଇଥିଲେ । ପରେ ସେ ଲମ୍ବା ଅବଧି ପର୍ଯ୍ୟନ୍ତ ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ କରିଥିଲେ । ଏହାପରେ, ସେ ଓଡିଆ ଓ ଦର୍ଶନତତ୍ତ୍ୱରେ ପ୍ରଫେସର ରୂପେ ଯୋଗ ଦେଇଥିଲେ କିନ୍ତୁ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାକୁ ସେ ଏହି ବୃତ୍ତି ତ୍ୟାଗ କରିଥିଲେ । ସେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ଜଣେ କାର୍ଯ୍ୟକାରୀ ସଦସ୍ୟ ଏବଂ ସର୍ବଭାରତୀୟ କଂଗ୍ରେସ କମିଟିର ସଦସ୍ୟ ରୂପେ ନିର୍ବାଚିତ ହୋଇଥିଲେ । ସମ୍ବଲପୁରରୁ ପ୍ରକାଶ ପାଉଥିବା 'ସେବା' ଶୀର୍ଷକ ଖବରକାଗଜରେ ସେ ସମ୍ପାଦନା କରୁଥିଲେ । ସମ୍ବଲପୁରରେ ନଅ ମାସ ରହିବା ପରେ ସେ ଶ୍ରୀରାମଚନ୍ଦ୍ରପୁର ପ୍ରତ୍ୟାବର୍ତ୍ତନ କରିଥିଲେ । ବ୍ରିଟିଶ ବିରୋଧୀ କାର୍ଯ୍ୟକଳାପ ଅଭିଯୋଗରେ ସେ ୧୯୨୨ ମସିହାରେ ଗିରଫ ହୋଇଥିଲେ ଏବଂ ହଜାରିବାଗ୍ ଜେଲ୍‌ରେ ୬ ମାସ ବନ୍ଦୀ ଜୀବନ ବିତେଇ ଥିଲେ । ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସହ ବିଚାରବିମର୍ଶ ପରେ ସେ ସାଧାରଣ ବିଧାନସଭା ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ନିଷ୍ପତ୍ତି ଗ୍ରହଣ କରିଥିଲେ । ୧୯୨୩ରେ ସେ ସେଣ୍ଟ୍ରାଲ୍ ଆସେମ୍ଲିର ସଦସ୍ୟ ରୂପେ ନିର୍ବାଚିତ ହୋଇଥିଲେ । ୧୯୨୬ରେ ସେ ସିମ୍‌ଲା କନ୍‌ଫେରେନ୍ସରେ ଅଂଶଗ୍ରହଣ କରିଥିଲେ । ୧୯୨୮ ମସିହାରେ ପଣ୍ଡିତ ଗୋପବନ୍ଧୁଙ୍କ ମୃତ୍ୟୁ ପରେ ସେ ଓଡିଶାରେ କଂଗ୍ରେସର ନେତୃତ୍ୱ ଭାର ହାତକୁ ନେଇଥିଲେ । ଲାହୋର କଂଗ୍ରେସ ଅଧିବେଶନର ନିଷ୍ପତ୍ତି ଅନୁଯାୟୀ ସେ ସେଣ୍ଟ୍ରାଲ୍ ଆସେମ୍ଲିରୁ ଇସ୍ତଫା ଦେଇଥିଲେ ଓ 'ଲବଣ ସତ୍ୟାଗ୍ରହ'ରେ ଯୋଗ ଦେଲେ ଏବଂ ୬ ମାସ ପର୍ଯ୍ୟନ୍ତ ଜେଲ୍ ଭୋଗିଥିଲେ। ସେ ଅସ୍ପୃଶ୍ୟ ନିବାରଣ ଆନ୍ଦୋଳନ ଆରମ୍ଭ କରି ଦଳିତ ଶ୍ରେଣୀର ସେବାରେ ନିଜକୁ ନିୟୋଜିତ କରିଥିଲେ । ଦ୍ୱିତୀୟ ଥର ପାଇଁ ସେ ସେଣ୍ଟ୍ରାଲ୍ ଆସେମ୍ଲିର ସଦସ୍ୟ ରୂପେ ମଧ୍ୟ ନିର୍ବାଚିତ ହୋଇଥିଲେ । ୧୯୩୩ରେ 'ନବ ଭାରତ' ନାମକ ଏକ ମାସିକ ଓଡିଆ ପତ୍ରିକାର ସମ୍ପାଦନା କରିଥିଲେ । ୧୯୩୪ରେ ମଧୁସୂଦନଙ୍କ ବିୟୋଗ ପରେ ସଂପୂର୍ଣ୍ଣ ଭାର ତାଙ୍କ କାନ୍ଧ ଉପରେ ପଡିଥିଲା ଏବଂ ମହାତ୍ମା ଗାନ୍ଧୀଙ୍କ ପ୍ରଥମ ପର୍ଯ୍ୟାୟ ଓଡିଶା ଗସ୍ତର କାର୍ଯ୍ୟକ୍ରମ ସେ ଆୟୋଜନ କରିଥିଲେ ।

୧୯୩୬ ମସିହାରେ ଓଡିଶା ଏକ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଲାଭ କଲା । ପଣ୍ଡିତ ନୀଳକଂଠ ପିସିସି ସଭାପତି ରୂପେ କାର୍ଯ୍ୟ କଲେ । ତାଙ୍କର ସାମର୍ଥ୍ୟପୂର୍ଣ୍ଣ ନେତୃତ୍ୱ ବଳରେ ୬୦ ଆସନ ମଧ୍ୟରୁ କଂଗ୍ରେସ ୩୬ ଗୋଟି ଆସନ ହାସଲ କରିଥିଲା ।

ତାଙ୍କ ଅଧ୍ୟକ୍ଷତାରେ ଓଡିଶାରେ ଉଚ୍ଚ ଶିକ୍ଷାର ପ୍ରସାର ନିମନ୍ତେ ସେ ଗୋଟିଏ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ନିଷ୍ପତ୍ତି ନେଇଥିଲେ । ଏଥିନିମନ୍ତେ ଏକ କମିଟି ଗଠନ କରାଯାଇଥିଲା । ପରେ କମିଟିର ସୁପାରିସ୍ ଅନୁଯାୟୀ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା । ୧୯୫୧ରେ ସେ ଏକ ନୂତନ ଦଳ 'ସ୍ୱାଧୀନ ଜନ ସଂଘ'ରୁ ଓଡିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ୧୯୫୫ରେ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଅନୁରୋଧକ୍ରମେ ସେ କଂଗ୍ରେସରେ ଯୋଗ ଦେଇଥିଲେ । ସେହିବର୍ଷ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରୋ.ଚାନ୍ସେଲର୍ ରୂପେ ନିଯୁକ୍ତି ପାଇଥିଲେ । ୧୯୫୭ରେ ସେ ପୁନଃ ନିର୍ବାଚିତ ହେଲେ । ୧୯୫୭ ମସିହା ମଇ ମାସରୁ ୧୯୬୧ ମସିହା ଜୁଲାଇ ମାସ ପର୍ଯ୍ୟନ୍ତ ସେ ଓଡିଶା ବିଧାନସଭାର ବାଚସ୍ପତି ରହିଥିଲେ । ୧୯୬୭ ମସିହା ନଭେମ୍ବର ୬ ତାରିଖରେ ସେ ମୃତ୍ୟୁବରଣ କରିଥିଲେ । ତାଙ୍କର ଦେହାନ୍ତ ସହ ଓଡିଶା ଜଣେ ଦେଶପ୍ରେମୀ, ସ୍ୱାଧୀନତା ସଂଗ୍ରାମୀ, ଦକ୍ଷ ବିଧାୟକ, ସଂସ୍କାରକ, କବି ଓ ଆଧୁନିକ ଓଡିଶାର ଅନ୍ୟତମ ସ୍ଥପତିଙ୍କୁ ହରାଇଥିଲା ।

### ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓ



ପାରଳାଖେମୁଣ୍ଡିର ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓ ୧୮୯୨ମସିହା ଅପ୍ରେଲ ମାସ ୨୬ ତାରିଖରେ ଗୌରଚନ୍ଦ୍ର ଗଜପତି ନାରାୟଣ ଦେଓଙ୍କ ପୁତ୍ର ରୂପେ ଜନ୍ମଲାଭ

କରିଥିଲେ । ମାଡ୍ରାସରେ ଶିକ୍ଷାଲାଭ କରିଥିଲେ । ୧୯୧୩ ମସିହାରେ ଶାସନଭାର ଗ୍ରହଣ କରିଥିଲେ । ଜଣେ ପ୍ରଜାହିତୈଷୀ ଶାସକ, ଶିକ୍ଷା ଏବଂ ସଂସ୍କୃତିର ଜଣେ ପୃଷ୍ଠପୋଷକ ଥିଲେ । ୧୯୧୪ ମସିହାରେ ପାରଳାଖେମୁଣ୍ଡିଠାରେ ଉତ୍କଳ ୟୁନିଅନ୍ କନ୍‌ଫେରେନ୍ସର ବାର୍ଷିକ ଅଧିବେଶନ ଆୟୋଜନ କରିଥିଲେ । ସରକାରଙ୍କ ଦ୍ୱାରା ୧୯୧୬ରେ ଭାରତର ପ୍ରତିରକ୍ଷାର ଲ୍ୟାଣ୍ଡ୍ ଫୋର୍ସର ସମ୍ମାନଜନକ କମିଶନର ପଦବୀ ନିମନ୍ତେ ମନୋନୀତ ହୋଇଥିଲେ । ପାରଳାଖେମୁଣ୍ଡି ସହ ନୂଆପଡାକୁ ସଂଯୋଗ କରୁଥିବା ରେଳଲାଇନ୍ ନିର୍ମାଣ କରିଥିଲେ । ଗବେଷଣାରତ ଶିକ୍ଷାର୍ଥୀଙ୍କ ନିମନ୍ତେ ତାଙ୍କ ରାଜପ୍ରାସାଦରେ ଏକ ବଡ ପାଠାଗାର ପ୍ରତିଷ୍ଠା କରିଥିଲେ । ମାଡ୍ରାସ ଜଷ୍ଟିସ୍ ପାର୍ଟିର ଜଣେ ଗୁରୁତ୍ୱପୂର୍ଣ୍ଣ ସଦସ୍ୟ ଥିଲେ । ୧୯୨୭ରେ ରୟାଲ୍ ଏଗ୍ରିକଲ୍‌ଚୁରାଲ୍ କମିଶନର ସଦସ୍ୟ ହୋଇଥିଲେ । ମାଡ୍ରାସ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ର ସଦସ୍ୟ ଥିଲେ । ୧୯୩୦–୩୧ରେ ଲଣ୍ଡନରେ ଆୟୋଜିତ ରାଉଣ୍ଡ ଟେବୁଲ୍ ବୈଠକରେ ଓଡିଶାର ଦାବୀ ଉପସ୍ଥାପନ କରିଥିଲେ । ୧୯୩୪ରେ ଓଡିଶା ସହ ପାରଳାଖେମୁଣ୍ଡିର ମିଶ୍ରଣ ନିମନ୍ତେ ଯୁଗ୍ମ ସଂସଦୀୟ କମିଟି ନିକଟରେ ଦାବୀ ଉପସ୍ଥାପନ କରିଥିଲେ । ଓଡିଶା ସହ ପାରଳାଖେମୁଣ୍ଡିର ଓଡିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ନିମନ୍ତେ କର୍ତ୍ତୃପକ୍ଷଙ୍କ ନିକଟରେ ଛପା ସ୍ମାରକପତ୍ର ଦାଖଲ କରିଥିଲେ ଏବଂ ଏଥିପାଇଁ ଦୃଢ ଭାବେ ଯୁକ୍ତି ଉପସ୍ଥାପନ କରିପାରିଥିଲେ । ୧୯୩୭ରେ ଓଡିଶାରେ ଅଣ–କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ତାଙ୍କର ପ୍ରଶଂସନୀୟ କାର୍ଯ୍ୟକୁ ସ୍ୱୀକୃତି ଦେଇ ୧୯୩୬ ମସିହାରେ ସରକାର ତାଙ୍କୁ 'ମହାରାଜା' ଉପାଧି ପ୍ରଦାନ କରିଥିଲେ । ୧୯୪୧ ମସିହା ନଭେମ୍ବରରେ ମନ୍ତ୍ରିମଣ୍ଡଳ ଗଠନ ନିମନ୍ତେ ମହାରାଜା ଆମନ୍ତ୍ରଣ ପାଇଥିଲେ ଓ ମୁଖ୍ୟମନ୍ତ୍ରିତ୍ୱ ଭାର ଗ୍ରହଣ କରିଥିଲେ । ୧୯୪୭–୫୦ ପର୍ଯ୍ୟନ୍ତ ଭାରତର କନ୍‌ଷ୍ଟିଚୁଏଣ୍ଟ୍ ଆସେମ୍ବ୍ଲିର ସଦସ୍ୟ ହୋଇଥିଲେ । ରୟାଲ୍ ସୋସାଇଟି ଅଫ୍ ଆର୍ଟସ୍ ଏବଂ ରୟାଲ୍ ଏସିଆଟିକ୍ ସୋସାଇଟ୍, ଲଣ୍ଡନର ଆଜୀବନ ସଦସ୍ୟ ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ଆଜୀବନ ସଦସ୍ୟ ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ଏଲ୍.ଏଲ୍.ଡି. ଡିଗ୍ରୀରେ ସମ୍ମାନିତ ହୋଇଥିଲେ । ଓଡିଶାର ଏହି ବରପୁତ୍ର ୧୯୭୪ ମସିହା ମଇ ମାସ ୨୫ ତାରିଖରେ ପରଲୋକ ଗମନ କରିଥିଲେ ।

### ଡକ୍ଟର ହରେକୃଷ୍ଣ ମହତାବ

ଡକ୍ଟର ହରେକୃଷ୍ଣ ମହତାବ ଥିଲେ କୃଷ୍ଣ ଚରଣ ଦାସ ଓ ତୋହଫା ବିବିଙ୍କ ସୁପୁତ୍ର । ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଆଗରପଡାଠାରେ ୧୮୯୯ ମସିହା ନଭେମ୍ବର ମାସ ୨୧ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ଭଦ୍ରକ ଉଚ୍ଚ ବିଦ୍ୟାଳୟରୁ ମାଟ୍ରିକୁଲେସନ୍ ପରେ ସେ ଉଚ୍ଚ ଶିକ୍ଷା ନିମନ୍ତେ କଟକ ରେଭେନ୍ସା କଲେଜରେ ଯୋଗ ଦେଇଥିଲେ ।



ମାତ୍ର ୧୯୨୧ ମସିହାରେ ଜାତୀୟ ମୁକ୍ତି ଆନ୍ଦୋଳନ ଆଡକୁ ସ୍ୱତଃ ଆକର୍ଷିତ ହୋଇଯିବାରୁ ଏହା ଅସଂପୂର୍ଣ୍ଣ ରହିଥିଲା । ପରେ ଦେଶର ସ୍ୱାଧୀନତା ପାଇଁ ତାଙ୍କ ଜୀବନ ସଂଗ୍ରାମ ଓ ଉତ୍ସର୍ଗର ଗାଥା ହିଁ ଥିଲା । ୧୯୨୩ ମସିହାରେ ସେ ବାଲେଶ୍ୱରଠାରେ 'ସାପ୍ତାହିକୀ ପ୍ରଜାତନ୍ତ୍ର' ଆରମ୍ଭ କରିଥିଲେ । ୧୯୨୨ ମସିହାରେ ରାଜଦ୍ରୋହ ଅଭିଯୋଗରେ ପ୍ରଥମ କାରାବରଣ କରିଥିଲେ । ୧୯୨୪ ମସିହାରେ ବିହାର ଓ ଓଡିଶା କାଉନ୍‌ସିଲ୍‌ର ସଦସ୍ୟ ଥିଲେ । ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହରେ ଯୋଗଦେଲେ ଓ କାରାବରଣ କଲେ । ୧୯୩୪ ମସିହାରେ ହରିଜନ ଆନ୍ଦୋଳନରେ ଅଂଶଗ୍ରହଣ କଲେ ଏବଂ ଓଡିଶାରେ ପ୍ରଥମ ଥର ପାଇଁ ତାଙ୍କ ପୂର୍ବପୁରୁଷଙ୍କ ଦ୍ୱାରା ନିର୍ମିତ ମନ୍ଦିର ହରିଜନଙ୍କ ନିମନ୍ତେ ଖୋଲି ଦେଇଥିଲେ । ୧୯୩୮ ମସିହାରେ ଷ୍ଟେଟ୍ ପିପୁଲ୍ସ୍ ଇନ୍‌କ୍ୱାରୀ କମିଟିର ସଭାପତି ହୋଇଥିଲେ ଓ ଶାସକ ସନନ୍ଦ ରଦ୍ଦ କରିବା ଏବଂ ଓଡିଶା ପ୍ରଦେଶ ସହ ଦେଶୀୟ ରାଜ୍ୟଗୁଡିକର ମିଶ୍ରଣ ନିମନ୍ତେ ସୁପାରିସ୍ କରିଥିଲେ । ସେ ୧୯୪୧ ମସିହାରେ ଅସହଯୋଗ ଆନ୍ଦୋଳନ ଓ ୧୯୪୨ ମସିହାରେ

'ଭାରତ ଛାଡ' ଆନ୍ଦୋଳନରେ ଅଂଶଗ୍ରହଣ କରିଥିଲେ ଓ କାରାବରଣ କରିଥିଲେ । ଡକ୍ଟର ହରେକୃଷ୍ଣ ମହତାବ ୧୯୪୬ରୁ ୧୯୫୦ ମସିହା ପର୍ଯ୍ୟନ୍ତ ଓଡିଶାର ମୁଖ୍ୟମନ୍ତ୍ରୀ, ୧୯୫୦ରୁ ୧୯୫୨ ପର୍ଯ୍ୟନ୍ତ କେନ୍ଦ୍ର ବାଣିଜ୍ୟ ଓ ଶିଳ୍ପ ମନ୍ତ୍ରୀ, ୧୯୫୨ ମସିହାରେ ସଂସଦରେ କଂଗ୍ରେସ ଦଳର ସାଧାରଣ ସଂପାଦକ, ୧୯୫୫ ମସିହାରୁ ୧୯୫୬ ମସିହା ପର୍ଯ୍ୟନ୍ତ ବମ୍ବେର ରାଜ୍ୟପାଳ, ୧୯୫୬ରେ ରାଜ୍ୟପାଳ ପଦବୀରୁ ଇସ୍ତଫା ଦେଇ ୧୯୫୬ରୁ ୧୯୬୦ ପର୍ଯ୍ୟନ୍ତ ପୁନର୍ବାର ଓଡିଶାର ମୁଖ୍ୟମନ୍ତ୍ରୀ ଥିଲେ । ପୂର୍ବତନ ଦେଶୀୟ ରାଜ୍ୟଗୁଡିକର ଏକତ୍ରୀକରଣ ଓ ମିଶ୍ରଣ, ଭୁବନେଶ୍ୱରଠାରେ ରାଜ୍ୟର ରାଜଧାନୀ ପ୍ରତିଷ୍ଠା, ବହୁମୁଖୀ ହୀରାକୁଦ ବନ୍ଧ ପ୍ରକଳ୍ପର ମଂଜୁରୀ ଓ ନିର୍ମାଣ ଦିଗରେ ତାଙ୍କ ପ୍ରମୁଖ ଭୂମିକା ଯୋଗୁଁ ଡକ୍ଟର ମହତାବ ବାସ୍ତବରେ ଆଧୁନିକ ଓଡିଶାର ସ୍ଥପତି ରୂପେ ପରିଗଣିତ ହୁଅନ୍ତି ।

୧୯୬୨ ମସିହାରେ ସେ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ସେ ମଧ୍ୟ ୧୯୬୭, ୧୯୭୧ ଏବଂ ୧୯୭୪ ମସିହାରେ ଓଡିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ ।

ଡକ୍ଟର ମହତାବ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ପ୍ରତିଷ୍ଠା କରିଥିଲେ, ଯାହା ଆଜି ପର୍ଯ୍ୟନ୍ତ ମଧ୍ୟ ଦୈନିକ 'ପ୍ରଜାତନ୍ତ୍ର' ଏବଂ ମାସିକ 'ଝଙ୍କାର' ପ୍ରକାଶ କରିଆସୁଛି । ପ୍ରତିଷ୍ଠାଠାରୁ ସେ ପ୍ରକାଶନର ମୁଖ୍ୟ ସଂପାଦକ ରହିଆସିଥିଲେ । କେତେକ ଅବଧି ନିମନ୍ତେ ସେ ଓଡିଶା ସାହିତ୍ୟ ଅକାଦେମୀ ଓ ସଂଗୀତ ନାଟକ ଅକାଦେମୀର ଅଧ୍ୟକ୍ଷ ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟ୍‌ର ସ୍ଥାୟୀ ସଦସ୍ୟ ମଧ୍ୟ ଥିଲେ । ସେ ଜଣେ ଅନନ୍ୟ ଐତିହାସିକ ଏବଂ ଉଭୟ ଇଂରାଜୀ ଓ ଓଡିଆ ଭାଷାରେ ଜଣେ ଲେଖକ ଥିଲେ । ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଦ୍ୱାରା ସମ୍ମାନଜନକ ଡକ୍ଟର ଡିଗ୍ରୀ, ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ସାହିତ୍ୟରେ ଡକ୍ଟର ଡିଗ୍ରୀ ଓ ସାଗର ବିଶ୍ୱବିଦ୍ୟାଳୟ ଦ୍ୱାରା ଆଇନ୍‌ରେ 'ଡକ୍ଟରେଟ୍' ଉପାଧି ଲାଭ କରିଥିଲେ ।

ତାଙ୍କର ବହୁମୁଖୀ ବ୍ୟକ୍ତିତ୍ୱର ସତ୍ୟତା ପ୍ରତିପାଦିତ କରି ସେ 'ଓଡିଶା ଇତିହାସ' ଏବଂ 'ଶେଷର ଆରମ୍ଭ' (ବିଗ୍‌ନିଙ୍ଗ୍ ଅଫ୍ ଦି ଏଣ୍ଡ) ରଚନା ସହ ଜଣେ ସୁଲେଖକର ମାନ୍ୟତା ହାସଲ କରିଥିଲେ । ଏତଦ୍‌ବ୍ୟତୀତ, ସେ ମଧ୍ୟ ଅନେକ ପ୍ରବନ୍ଧ, ନାଟକ ଓ କବିତାମାନ ରଚନା କରିଥିଲେ, ଯେଉଁଗୁଡିକ ସାହିତ୍ୟିକ ମୂଲ୍ୟ ଦୃଷ୍ଟିରୁ ବେଶ୍ ପ୍ରଶଂସିତ । ଦୈନିକ ପ୍ରଜାତନ୍ତ୍ରରେ ପ୍ରକାଶିତ ତାଙ୍କର ଲୋକପ୍ରିୟ ସ୍ତମ୍ଭ 'ଗାଁ ମଜଲିସ୍' ୧୯୮୩ ମସିହାରେ କେନ୍ଦ୍ର ସାହିତ୍ୟ ଅକାଦେମୀ ପୁରସ୍କାର ଲାଭ କରିଥିଲା ।

ଡକ୍ଟର ହରେକୃଷ୍ଣ ମହତାବ ଥିଲେ ଜଣେ ସଫଳ ରାଜନୈତିକ ନେତା । ସ୍ୱାଧୀନତା ଓ ପରବର୍ତ୍ତୀ କାଳରେ ବର୍ଷ ବର୍ଷର ସାଧନା ଦ୍ୱାରା ରାଜ୍ୟର ଜନସାଧାରଣଙ୍କୁ ନେତୃତ୍ୱ ଦେଇ ସେସମୟରେ ଜଣେ ତୁଙ୍ଗ ବ୍ୟକ୍ତିତ୍ୱ ରୂପେ ଉଭା ହୋଇଥିଲେ । ୧୯୮୭ ମସିହା ଜାନୁଆରୀ ମାସ ୨ ତାରିଖରେ ଏହି ବରପୁତ୍ର ପରଲୋକ ଗମନ କରିଥିଲେ ।

### ରାଜା ବାହାଦୁର ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ

୧୯୨୦ ଓ ୧୯୩୦ ମସିହା ମଧ୍ୟରେ ଅନେକ ବିଶିଷ୍ଟ ନେତୃମଣ୍ଡଳୀଙ୍କ ଉଲ୍ଲେଖନୀୟ ଅବଦାନ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନରେ ଫଳପ୍ରଦ ହୋଇପାରିଥିଲା । ଖଲ୍ଲିକୋଟ୍‌ର ରାଜା ବାହାଦୁର ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ ତନ୍ମଧ୍ୟରୁ ଅନ୍ୟତମ । ୧୯୦୦ ମସିହା ଜାନୁଆରୀ ୧୩ ତାରିଖରେ ସେ ରାଜା ହରିହର ମର୍ଦ୍ଦରାଜଙ୍କ ଔରସରୁ ରାଣୀ କନକ ମଂଜରୀ ଦେବୀଙ୍କ କୋଳମଣ୍ଡନ କରିଥିଲେ । ଆଗାମୀ ଦିନରେ ଓଡିଶାର ଭବିଷ୍ୟତ ନିର୍ମାଣ ସକାଶେ ତାଙ୍କ ଜନ୍ମ ବିଧିନିର୍ଦ୍ଦିଷ୍ଟ ଥିଲା ।



ଶୈଶବ କାଳରେ ସେ ଏରିକ୍ ଡାକ ନାମରେ ପରିଚିତ ଥିଲେ । ମହିଳା ରାଜ୍ୟପାଳ ଏଫ୍.ହାର୍ଭେ ତୁନ୍‌ଙ୍କ ତତ୍ତ୍ୱାବଧାନରେ ସେ ଲାଳିତପାଳିତ ହୋଇଥିଲେ । ୧୯୦୯ ମସିହା ଜୁଲାଇ ୨୦ ତାରିଖରେ ସେ ତାଙ୍କର ପିତା ରାଜା ହରିହର ମର୍ଦ୍ଦରାଜ ଦେଓଙ୍କୁ ହରାଇଥିଲେ । ପରେ ତାଙ୍କୁ ନେୟୁଇଙ୍ଗଟନ୍‌ଠାରେ ସ୍କୁଲ୍ ଶିକ୍ଷା ନିମନ୍ତେ ମାଡ୍ରାସ ପଠାଯାଇଥିଲା । ନିଜ ରାଜ୍ୟର ଦାୟିତ୍ୱ ନେବାର

ଯୋଗ୍ୟତା ବୟସ ପର୍ଯ୍ୟନ୍ତ ସେ ଖ୍ରୀଷ୍ଟିୟାନ୍ କଲେଜ୍‌ରେ ଅଧ୍ୟୟନ କରିଥିଲେ । ସେ ୧୯୨୧ ମସିହା ଜାନୁଆରୀ ୧୪ ତାରିଖରେ ଖଲ୍ଲିକୋଟ୍ ସିଂହାସନ ଆରୋହଣ କରିଥିଲେ । ତାଙ୍କର ଅଭିନବ ଉଦ୍ୟମର ପ୍ରଥମ ପଦକ୍ଷେପ ସ୍ୱରୂପ ସେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ନିମନ୍ତେ ୧୯୨୪ରେ ଗଠିତ ଫିଲିପ୍-ଡଫ୍ କମିଟିକୁ ପ୍ରୋକ୍ତ ଉଦ୍ଦେଶ୍ୟରେ ପ୍ରଭାବିତ କରିଥିଲେ । ମିଷ୍ଟର ସି.ଏଲ୍.ଫିଲିପ୍ ଏବଂ ମିଷ୍ଟର ଏ.ସି.ଡଫ୍ ୧୯୨୪ ମସିହା ଡିସେମ୍ବର ମାସ ୧୭ ତାରିଖରୁ ୨୧ ତାରିଖ ପର୍ଯ୍ୟନ୍ତ ରାଜା ସାହେବଙ୍କ ଅତିଥି ହୋଇ ରମ୍ଭା ପ୍ୟାଲେସ୍‌ରେ ଅବସ୍ଥାନ କରିଥିଲେ । ଖଲ୍ଲିକୋଟ୍‌ଗଡରେ ଏକ ବିଶାଳ ଜନ ସମାବେଶ ଅନୁଷ୍ଠିତ ହୋଇଥିଲା ଏବଂ ଏହି ପ୍ରଭାବିତ କମିଟି ମିଶ୍ରଣ ସପକ୍ଷରେ ନିଜର ରିପୋର୍ଟ ପ୍ରଦାନ କରିଥିଲେ ।

ତେବେ ପରେ ଗଠିତ ଓଡୋନେଲ୍ କମିଶନ୍ ଏକ ଅତ୍ୟନ୍ତ ନିରାଶାଜନକ ରିପୋର୍ଟ ପ୍ରଦାନ କରିଥିଲା । କିନ୍ତୁ ଏହା ବିରୁଦ୍ଧରେ ରାମଚନ୍ଦ୍ର ମର୍ଦ୍ଦରାଜ ମାଡ୍ରାସ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ବକ୍ତବ୍ୟ ରଖିଥିଲେ । ୧୯୩୨ ମସିହା ଅଗଷ୍ଟ ମାସ ୨୧ ତାରିଖରେ ଉତ୍କଳ ୟୁନିଅନ୍ କନ୍‌ଫରେନ୍ସର ଏକ ସ୍ୱତନ୍ତ୍ର ଆଲୋଚନାକୁ ଉଦ୍‌ଘାଟନ କରି ସେ ଫିଲିପ୍-ଡଫ୍ କମିଟି ସୁପାରିସ୍ ଆଧାରରେ ଓଡିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ଉପରେ ଗୁରୁତ୍ୱ ଦେଇଥିଲେ ।

ରାଜା ସାହେବ ଲଣ୍ଡନରେ ଆୟୋଜିତ ତୃତୀୟ ରାଉଣ୍ଡ୍ ଟେବୁଲ୍ ସମ୍ମିଳନୀରେ ଯୋଗ ଦେଇ ଏହା ସପକ୍ଷରେ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିଥିଲେ । ନିଜର ପ୍ରତିବେଦନକୁ ପରିବର୍ଦ୍ଧିତ କରିବାକୁ ଯାଇ ସେ ୧୯୩୩ ମସିହା ଜାନୁଆରୀ ୧୨ ତାରିଖରେ ପ୍ରସିଦ୍ଧ 'ଓଡିଶା ବାଙ୍କ୍ୟୁଟ୍' ଆୟୋଜନ କରିଥିଲେ ଏବଂ ସେଠାରେ ସେକ୍ରେଟାରୀ ଅଫ୍ ଷ୍ଟେଟ୍ ଫର୍ ଇଣ୍ଡିଆ ସାର୍ ସାମୁଏଲ୍ ହୋର୍‌ଙ୍କୁ ପ୍ରଭାବିତ କରିପାରିଥିଲେ । ଫଳତଃ ଏକ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ସପକ୍ଷରେ ସେ ସାର୍ ସାମୁଏଲ୍‌ଙ୍କ ଅନୁମୋଦନ ଲାଭରେ ସଫଳ ହୋଇଥିଲେ । ତୃତୀୟ ରାଉଣ୍ଡ୍ ଟେବୁଲ୍ ବୈଠକରେ ହୋଇଥିବା ଆଲୋଚନାର ନିର୍ଯ୍ୟାସ ଅନୁଯାୟୀ ଏହି ବିଷୟ ଉପରେ ଦୃଷ୍ଟିପାତ କରିବା ନିମନ୍ତେ ଏକ ଯୁଗ୍ମ ସଂସଦୀୟ କମିଟି ଗଠନ କରାଯାଇଥିଲା । ଶେଷରେ, ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ, ୧୯୩୫ ଗୃହୀତ ହେଲା ଓ ଏହି ଅଧିନିୟମର ଧାରା ୨୮୯ରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ନିମନ୍ତେ ପଥ ପ୍ରଶସ୍ତ ହେଲା ।

ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ ଥିଲେ ଜଣେ ସୃଜନଶୀଳ ସକ୍ରିୟ ନେତା । ତାଙ୍କର ବ୍ୟାପକ ପ୍ରାଶାସନିକ ଓ ରାଜନୈତିକ ଅଭିଜ୍ଞତା ଏବଂ ଦକ୍ଷତା, ତାଙ୍କ ସହିତ କାର୍ଯ୍ୟ କରିଥିବା ଲୋକଙ୍କ ପାଇଁ ଆତ୍ମଶକ୍ତି ଓ ପ୍ରେରଣାର ଉତ୍ସ ଥିଲା । ସେ ଓଡିଶାର ଜନସାଧାରଣଙ୍କ ନିମନ୍ତେ ନିଜର ଜୀବନକୁ ସଂପୂର୍ଣ୍ଣ ରୂପେ ଉତ୍ସର୍ଗ କରିଥିଲେ ଏବଂ ଜନତାଙ୍କ ମଙ୍ଗଳ ପାଇଁ କାର୍ଯ୍ୟ କରୁଥିଲେ । ୧୯୬୩ ମସିହା ଜାନୁଆରୀ ମାସ ୨୩ ତାରିଖରେ ରାଜା ସାହେବ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

### ବିଜୟାନନ୍ଦ ପଟ୍ଟନାୟକ

ବିଜୟାନନ୍ଦ ପଟ୍ଟନାୟକ ହେଉଛନ୍ତି ବିଜୁ ପଟ୍ଟନାୟକ ନାମରେ ଜନପ୍ରିୟ ଓ ଅତି ଜଣାଶୁଣା । ୧୯୧୬ ମସିହା ମାର୍ଚ୍ଚ ମାସ ୫ ତାରିଖରେ ତାଙ୍କର ଜନ୍ମ । ପିତା ସ୍ୱର୍ଗତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ । ଶିକ୍ଷା ହେଲା ବି.ଏସ୍‌ସି ଷ୍ଟାଣ୍ଡାର୍ଡ । ଶ୍ରୀମତୀ ଜ୍ଞାନ ପଟ୍ଟନାୟକଙ୍କ ସହ ଶୁଭ ପରିଣୟ । ଦୁଇଟି ପୁତ୍ର ଓ ଗୋଟିଏ କନ୍ୟା । ପ୍ରାରମ୍ଭିକ ବୃତ୍ତି ଥିଲା ବ୍ୟବସାୟ । ବିମାନ ବିଦ୍ୟା ଓ ଶିଳ୍ପରେ ଅଭିରୁଚି । ଜୀବନ କାଳରେ ୟୁ.କେ., ୟୁ.ଏସ୍.ଏ., ୟୁ.ଏସ୍.ଏସ୍.ଆର୍., ପ୍ୟାରିସ୍, ଇଣ୍ଡୋନେସିଆ ସମେତ ଅନ୍ୟାନ୍ୟ ଦେଶକୁ ଯାତ୍ରା । ରାଜନୈତିକ କାର୍ଯ୍ୟକ୍ରମ । ବାଲ୍ୟକାଳରୁ ସାହସିକ ଜୀବନରେ ଆଗ୍ରହୀ । ଛାତ୍ର ଜୀବନରେ କଟକଠାରୁ ପେଶୱାର୍ ପର୍ଯ୍ୟନ୍ତ ସାଇକେଲ୍‌ରେ ଦୁଃସାହସିକ ଯାତ୍ରା । ଇଣ୍ଡିଆନ୍ ନାସ୍‌ନାଲ୍ ଏଆର୍‌ୱେଜ୍‌ରେ ଯୋଗଦାନ ଓ ଏହାର ମୁଖ୍ୟ ପାଇଲଟ୍ ନିଯୁକ୍ତ । 'ଭାରତ ଛାଡ' ଆନ୍ଦୋଳନ



ସମୟରେ ଆତ୍ମଗୋପନରେ ଥିବା ନେତାଙ୍କୁ ସହାୟତା, ୩୦ ମାସ ପର୍ଯ୍ୟନ୍ତ ଜେଲ୍‌ରେ ରହଣି । ଇଣ୍ଡୋନେସିଆ ମୁକ୍ତି ଆନ୍ଦୋଳନ ସମୟରେ ନିଜ ଜୀବନକୁ ବାଜି ଲଗେଇ ଇଣ୍ଡୋନେସିଆ ଶାସକ ମୁଖ୍ୟଙ୍କୁ ଉଡାଜାହାଜରେ ନୂଆଦିଲ୍ଲୀ ଆଣିପାରିଥିଲେ । ୧୯୪୭ ମସିହାରେ ପାକିସ୍ଥାନର ଭାରତ ଆକ୍ରମଣ ସମୟରେ ସେ କାଶ୍ମୀରରେ ପ୍ରଥମ ଭାରତୀୟ ଉଡାଜାହାଜ ଅବତରଣ କରିଥିଲେ । ଓଡିଶା ପ୍ରତ୍ୟାବର୍ତ୍ତନ ପରେ ଶିଳ୍ପ ପ୍ରତିଷ୍ଠା ଦିଗରେ ଆଗ୍ରହ ପ୍ରକାଶ କରି ଅନେକ ଶିଳ୍ପ ପ୍ରତିଷ୍ଠା କରିଥିଲେ । ଗୋଟିଏ ଅବଧି ନିମନ୍ତେ ଓ.ପି.ସି.ସି.ର ସଭାପତି । ଏ.ଆଇ.ସି.ସିର ସଦସ୍ୟ । ୧୯୬୧ ମସିହାର ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ସମୟରେ ତାଙ୍କ ନେତୃତ୍ୱରେ କଂଗ୍ରେସ ଦଳର ଅଭୂତପୂର୍ବ ନିରଙ୍କୁଶ ସଂଖ୍ୟା ଗରିଷ୍ଠତା ହାସଲ । ୧୯୬୧ରୁ ୧୯୬୩ ମସିହା ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଥିଲେ ଓ 'କାମରାଜ' ଯୋଜନାରେ ଇସ୍ତଫା ଦେଇଥିଲେ । କଳିଙ୍ଗ ଏୟାର୍‌ୱେଜ୍ ପ୍ରତିଷ୍ଠା ତାଙ୍କର କୃତିତ୍ୱ ମଧ୍ୟରୁ ଅନ୍ୟତମ । ବିଜ୍ଞାନ ପୁରସ୍କାର ପ୍ରଦାନ ଲକ୍ଷ୍ୟରେ ୟୁନେସ୍କୋକୁ ୧,୦୦୦ ପାଉଣ୍ଡ ପୁରସ୍କାର ରାଶି ପ୍ରଦାନ । ୧୯୫୨, ୧୯୫୭, ୧୯୬୧ ମସିହାରେ ଯଥାକ୍ରମେ ଜଗନ୍ନାଥ ପ୍ରସାଦ, ସୋରଡା (ଗଂଜାମ) ଏବଂ ଚୌଦ୍ୱାର (କଟକ)ରୁ ଓଡିଶା ବିଧାନସଭାକୁ ନିର୍ବାଚିତ । ପୁନଶ୍ଚ, ୧୯୭୧ ଏବଂ ୧୯୭୪ ମସିହାରେ ରାଜନଗର (କଟକ)ରୁ ନିର୍ବାଚିତ । ୧୯୭୧ରୁ ୧୯୭୨ ମସିହା ଜୁନ୍ ମାସ ପର୍ଯ୍ୟନ୍ତ ଓଡିଶା ସରକାରଙ୍କ ଯୋଜନା ବୋର୍ଡର ଅଧ୍ୟକ୍ଷ । ୧୯୭୧ ମସିହା ଅକ୍ଟୋବରରେ ସଂଘଟିତ ମହାବାତ୍ୟାଜନିତ ପ୍ରଭୂତ କ୍ଷୟକ୍ଷତି ସମୟରେ ପୀଡିତ ଜନତା ବିଶେଷତଃ ରାଜନଗରବାସୀଙ୍କୁ ବହୁମୂଲ୍ୟ ସେବା ଓ ସହାୟତା ଯୋଗାଇବାରେ ସକ୍ରିୟ ଅଂଶ ଗ୍ରହଣ । ୧୯୭୭ ମସିହାରେ ସଂସଦକୁ ନିର୍ବାଚିତ ଏବଂ ୧୯୭୭ରୁ ୧୯୭୯ ମସିହା ପର୍ଯ୍ୟନ୍ତ କେନ୍ଦ୍ର କ୍ୟାବିନେଟ୍ ମନ୍ତ୍ରୀ । ୧୯୮୦ ମସିହାରେ କେନ୍ଦ୍ରାପଡା ସଂସଦୀୟ ନିର୍ବାଚନ ମଣ୍ଡଳୀରୁ ଲୋକସଭାକୁ ନିର୍ବାଚିତ । ୧୯୮୪ ଲୋକସଭା ନିର୍ବାଚନରେ କେନ୍ଦ୍ରାପଡା ସଂସଦୀୟ ନିର୍ବାଚନ ମଣ୍ଡଳୀରୁ ଲୋକସଭାକୁ ପୁଣି ଥରେ ନିର୍ବାଚିତ । ୧୯୮୫ ସାଧାରଣ ନିର୍ବାଚନରେ ଭୁବନେଶ୍ୱର ବିଧାନସଭା ଆସନରୁ ଓଡିଶା ବିଧାନସଭାକୁ ପୁନଶ୍ଚ ନିର୍ବାଚିତ । କେନ୍ଦ୍ରାପଡା ସଂସଦୀୟ ଆସନରୁ ଇସ୍ତଫା ଦେଇ ଓଡିଶା ବିଧାନସଭାରେ ବିରୋଧୀ ଦଳ ନେତା । ପୁନଶ୍ଚ, ୧୦ମ ଓଡିଶା ବିଧାନସଭା ନିର୍ବାଚନରେ ଭୁବନେଶ୍ୱର ବିଧାନସଭା ନିର୍ବାଚନ ମଣ୍ଡଳୀରୁ ଓଡିଶା ବିଧାନସଭାକୁ ନିର୍ବାଚିତ । ୧୯୯୦ ମସିହାରେ ତାଙ୍କର ସକ୍ରିୟ ନେତୃତ୍ୱ ବଳରେ ଜନତା ଦଳ ଓଡିଶା ବିଧାନସଭାର ତିନି ଚତୁର୍ଥାଂଶ ସଂଖ୍ୟା ଗରିଷ୍ଠତା ହାସଲ କରିଥିଲା, ଯାହା ଥିଲା ଅଭୂତପୂର୍ବ । ସେ ସର୍ବସମ୍ମତିକ୍ରମେ ଓଡିଶା ବିଧାନସଭାରେ ଜନତା ଦଳର ନେତା ନିର୍ବାଚିତ ହୋଇଥିଲେ ଏବଂ ତାଙ୍କ ଜନ୍ମଦିନ ମାର୍ଚ୍ଚ ମାସ ୫ ତାରିଖରେ ଓଡିଶାର ମୁଖ୍ୟମନ୍ତ୍ରୀ ରୂପେ ଅଭିଷିକ୍ତ ହୋଇଥିଲେ । ୧୯୯୫ ମସିହା ମାର୍ଚ୍ଚ ମାସରେ ପୁନଶ୍ଚ ଭୁବନେଶ୍ୱର ବିଧାନସଭା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ଏବଂ ବିରୋଧୀ ଦଳ ନେତା ହୋଇଥିଲେ । ପରେ ସେ ୧୯୯୬ ମସିହା ଜୁନ୍‌ରେ ଅନୁଷ୍ଠିତ ଲୋକସଭା ନିର୍ବାଚନରେ ଆସିକା ଏବଂ କଟକ ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ସେ ଉଭୟ ଆସନରୁ ନିର୍ବାଚିତ ହୋଇଥିଲେ । ଓଡିଶା ବିଧାନସଭାରୁ ଇସ୍ତଫା ଦେଇ ଆସିକା ଲୋକସଭା ନିର୍ବାଚନ ମଣ୍ଡଳୀରୁ ସେ ପ୍ରତିନିଧିତ୍ୱ କରିଥିଲେ । ଏହି ପ୍ରଖ୍ୟାତ ନେତା ୧୯୯୭ ମସିହା ଅପ୍ରେଲ ମାସ ୧୭ ତାରିଖରେ ନୂଆଦିଲ୍ଲୀର ଏସ୍‌କର୍ଟ ହସ୍‌ପିଟାଲ୍‌ରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଭୁବନେଶ୍ୱର



# ଚଇତି ପରବ

ଡକ୍ଟର ତ୍ରିନାଥ ପଟ୍ଟନାୟକ

ଚୈତ୍ର ଆସିଲେ ଚଇତାଳି ବାଆ ବହେ । ଚଇତ ବାଆ ସ୍ପର୍ଶରେ ପ୍ରତ୍ୟେକଙ୍କ ମନରେ ଉତ୍‌ଫୁଲ୍ଲ ସୃଷ୍ଟି ହୁଏ । ବସନ୍ତ ଋତୁର ଶେଷ ମାସ ହେଉଛି ଚୈତ୍ର ମାସ । ଚଇତାଳି ଛୁଇଁଥିବା ଯୋଗୁଁ ପ୍ରତି ବୃକ୍ଷଲତାରେ ନବପଲ୍ଲବ ଭରିଯାଏ । ସତେଯେମିତି ପ୍ରକୃତିରାଣୀ ସବୁଜ ଶାଢ଼ି ପିନ୍ଧି ଧରାକୁ ଓହ୍ଲାଇ ଆସିଛି । ବୃକ୍ଷଲତାରେ ଅସୁମାରି ଫୁଲରାଜି ବାସ ଚହଟାଇଥାନ୍ତି । ଆମ୍ରକୁଂଜର ଉହାଡ଼ରେ କୋଇଲିର କୁହୁତାନ, ଫୁଲେ ଫୁଲେ ଭଅଁରମାନଙ୍କର ଗୁଣୁଗୁଣୁ ଗୁଞ୍ଜନ, ମଧୁ ଅନ୍ୱେଷୀ ମଧୁ ମକ୍ଷୀଙ୍କର ନର୍ତ୍ତନ, ପଥିକ ମନରେ ଭାବାନ୍ତର ସୃଷ୍ଟି କରେ ।

ଏଇ ମାସରେ ମଧୁ ପାର୍ବଣ ଅର୍ଥାତ ବାସନ୍ତିକ ଦୁର୍ଗାପୂଜା, ରଙ୍ଗକ୍ରୀଡ଼ା ଚୈତ୍ର ପ୍ରତିପଦା ସୃଷ୍ଟି ଆରମ୍ଭର ଆଦ୍ୟ ଦିବସ, ମତ୍ସ୍ୟାବତାର ଜୟନ୍ତୀ, ଆଶୋକାଷ୍ଟମୀ, ରାମନବମୀ, ଲିଙ୍ଗରାଜଙ୍କ ରକୁଣା ରଥଯାତ୍ରା, ହିଙ୍ଗୁଳା ଯାତ୍ରା ଓ ଚୈତ୍ର ପୂର୍ଣ୍ଣିମା ପର୍ବ ପାଳନ କରାଯାଏ । ଚଇତ ପୁନେଇଁ ଓଡ଼ିଶାର ପୁରପଲ୍ଲୀର ଏକ ମୁଖ୍ୟ ପର୍ବ । ସେଥିପାଇଁ ଚୈତ୍ର ପୂର୍ଣ୍ଣିମାକୁ ଚଇତ ପରବ ଭାବେ ସାରା ଓଡ଼ିଶାରେ ଲୋକମାନେ ପାଳନ କରିଥା'ନ୍ତି । ଏହା ଓଡ଼ିଆ ଜନସାଧାରଣଙ୍କର ଏକ ଲୋକପ୍ରିୟ ପର୍ବ ।

ଚଇତ ପୁନିଅଁ ଦିନ ଓଡ଼ିଶାର ଅଧିକାଂଶ ଗ୍ରାମରେ ଜନ୍ତାଳ ହୁଏ । ଜନ୍ତାଳ ହେଉଛି ଗାଁର ସର୍ବସାଧାରଣ ମିଳନ ଉତ୍ସବ ତଥା ବଣଭୋଜି । ଏମିତି ଗାଁ ନାହିଁ ଯେଉଁ ଗାଁରେ କି ଗ୍ରାମ ଦେବତୀ ନାହାନ୍ତି । ଗାଁ ମୁଣ୍ଡରେ ଛାୟାପ୍ରଦ ବର, ଅଶ୍ୱତ୍ଥ କିମ୍ବା ନିମ୍ବ ଚାକୁଣ୍ଡା ଗଛ ତଳେ ଦେବୀଙ୍କ ଆସ୍ଥାନ ଥାଏ । ଦେବୀଙ୍କ ନିକଟରେ କେବଳ ଖିରି ଖେଚୁଡ଼ି ଭୋଗହୁଏ । ଏଠି ଧର୍ମ କିମ୍ବା ଜାତିର ଭେଦଭାବ ରୁହେ ନାହିଁ ।

ଦୋଳପୂର୍ଣ୍ଣିମା ଗୋପାଳ ଜାତିର ମୁଖ୍ୟ ପର୍ବ ଭଳି କୈବର୍ତ୍ତ, ଗୁଡ଼ିଆ ତଥା ଅନ୍ୟାନ୍ୟ ତଫସିଲଭୁକ୍ତ ଜାତି ଅନ୍ତର୍ଭୁକ୍ତ ଜାତିମାନେ ଚଇତମାସ ସାରା ପର୍ବ ପାଳନ କରନ୍ତି ଓ ଚୈତ୍ର ପୂର୍ଣ୍ଣିମାଠାରୁ ବୈଶାଖ ଅଷ୍ଟମୀ ପର୍ଯ୍ୟନ୍ତ ସେମାନେ ଗାଁ ଗାଁ ବୁଲି ଘୋଡ଼ାନାଚ କରିଥାନ୍ତି ।

ଚଇତି ଘୋଡ଼ା ନାଚ ବହୁ ପ୍ରାଚୀନ । ଏ ବିଷୟ ସନ୍ଥପୁରୁଷ ଅଚ୍ୟୁତାନନ୍ଦ 'କୈବର୍ତ୍ତ ଗୀତା'ରେ ସମସ୍ତ କଥା ବର୍ଣ୍ଣନା କରିଛନ୍ତି । ଓଡ଼ିଶାର ଉପକୂଳ ଅଞ୍ଚଳ ନଦୀନାଳରେ ଭରା । ନଦୀପାର ହେବାର ଏକମାତ୍ର ମାଧ୍ୟମ ଥିଲା ଡଙ୍ଗା । ଏହି ଡଙ୍ଗାକୁ କେଉଟମାନେ ଚଳାଉଥିଲେ । ଏମାନଙ୍କୁ ନାଉରୀ କୁହାଯାଉଥିଲା । ସେମାନେ ଡଙ୍ଗାର ଦେବତା ରୂପେ ଅଶ୍ୱମୁଖୀ ବାଶେଳୀଙ୍କୁ ପୂଜା କରୁଥିଲେ । ଲୋକରତ୍ନ କୁଂଜବିହାରୀ ଦାଶ ଲୋକଗୀତ ସଂଚୟର ମୁଖବନ୍ଧରେ କହିଛନ୍ତି–

''ଜାଲିଆ, ନାଉରୀ, ଚୁଡ଼ାକୁଟା ପ୍ରଭୃତି ହେଉଛନ୍ତି ନିଆଳୀ କୈବର୍ତ୍ତ । ଏହି ନିଆଳୀ କୈବର୍ତ୍ତ, କୁଳାଚାର ଅନୁସାରେ ଶିଉଳି, ଧୀବର ଓ ସାହୁ ଗୁଡ଼ିଆମାନେ ହେଉଛନ୍ତି ଦାସ ରାଜାଙ୍କ ବଂଶଧର । ଏମାନଙ୍କ ମଧ୍ୟରେ

ସାହୁ ଗୁଡ଼ିଆଙ୍କ ଛଡ଼ା ଅନ୍ୟମାନେ ଯୁଗଯୁଗ ଧରି ବାଶଳୀ ମୁଣ୍ଡ ପୂଜା କରି ଆସୁଛନ୍ତି।''

**ଚଇତ ପର୍ବରେ ଘୋଡ଼ା ପୂଜାର ପରଂପରା**

କିମ୍ବଦନ୍ତୀ କୁହେ ଶ୍ରୀରାମଚନ୍ଦ୍ର ବନବାସକୁ ଗଲାବେଳେ ବାଟରେ ସର୍ଯ୍ୟୁ ନଦୀ ପଡ଼ିଲା । ଦାସ ରାଜା ନାମରେ ଜଣେ କେଉଟ ଡଙ୍ଗାରେ ବସାଇ ଶ୍ରୀରାମଚନ୍ଦ୍ର ଲକ୍ଷ୍ମଣ ଓ ସୀତାଙ୍କୁ ନଦୀପାର କରାଇ ଦେଇଥିଲେ । ଶ୍ରୀରାମଚନ୍ଦ୍ର ଖୁସି ହୋଇ ଦାସ ରାଜାଙ୍କୁ ଗୋଟିଏ ଘୋଡ଼ା ଉପହାର ଦେଇଥିଲେ । ସେହିଦିନୁ ଏହି ଘଟଣାର ସ୍ମୃତିରୂପେ କେଉଟମାନେ ଏ ପର୍ବ ପାଳି ଆସୁଛନ୍ତି । ଏହିଦିନ ସେମାନେ ଗୋଟିଏ କୃତ୍ରିମ ଘୋଡ଼ାର ରୂପକରି ତା'ରି ଭିତରେ ଜଣେ ଲୋକକୁ ପୂରାଇ ନାଚଗୀତ କରାନ୍ତି ।

**ଓଡ଼ିଶାର ବୋଇତ ବଣିଜ ଓ ଲୋକକଥା**

ଶୈଶବରେ ବ୍ୟାସଦେବ କ୍ରୀଡ଼ା କରିବା ନିମନ୍ତେ ଗୋଟିଏ ଅଶ୍ୱ ମାଗିଲେ । ତାଙ୍କୁ ତୁଷ୍ଟ କରିବା ନିମନ୍ତେ ବିନ୍ଧ୍ୟ ପର୍ବତରୁ ଗୋଟିଏ ଅଶ୍ୱ ଧରାହୋଇ ଆସିଲା । ଅଶ୍ୱକୁଳର ଏହା ହିଁ ପ୍ରଥମ ସୃଷ୍ଟି । ବ୍ୟାସଦେବ ଦାସ ରାଜାଙ୍କ କନ୍ୟା ଯୋଜନଗନ୍ଧାଙ୍କର ପୁତ୍ର । ଏ ସୂତ୍ରରେ କୈବର୍ତ୍ତମାନେ ମହାଭାରତ ଯୁଗ ଓ କୁରୁବଂଶର ପ୍ରତିଷ୍ଠାତା ସହିତ ସଂପୃକ୍ତ ।

ଆଉ ମଧ ଲୋକକଥାରେ ଅଛି, ଦାସରାଜା ପାଇଥିବା ଘୋଡ଼ାଟିକୁ ଧରି ବୋଇତରେ ସିଂହଳ ଯାତ୍ରା କରିଥିଲେ । ସେଠାରେ ଘୋଡ଼ା କେହି ଦେଖି ନଥିଲେ । ଏ ବିଚିତ୍ର ପଶୁକୁ ଦେଖି ସିଂହଳବାସୀ ଦାସରାଜାଙ୍କୁ ବହୁତ ଶ୍ରଦ୍ଧା କଲେ । ଦାସରାଜା ସିଂହଳରେ ରାଜତ୍ୱ କଲେ । ଦାସରାଜା– ଘୋଡ଼ାଟିକୁ ଲକ୍ଷ୍ମୀ ରୂପରେ ପୂଜା କରୁଥିଲେ । ଘୋଡ଼ା ରୂପକୁ ଲକ୍ଷ୍ମୀଙ୍କ ଆଶୀର୍ବାଦରୁ ସେ ଧନସଂପଦ ଓ ସୌଭାଗ୍ୟପ୍ରାପ୍ତ ହୋଇଥିଲେ । ଦାସରାଜା ଅଶ୍ୱର ମୃତ୍ୟୁରେ ଭାଙ୍ଗିପଡ଼ିଲେ ଏଣୁ ଦୈବୀବାଣୀ ହେଲା–

ଏହାକୁ ପୂଜିବ ଜନ୍ମେ ଜନ୍ମେ ଅବତରି
ଏହାର ନାମ ଯେ ଅଟେ ଅଶ୍ୱିନୀ ବାଶେଳୀ ।

ଭଗବାନ କହିଛନ୍ତି ଏହି ଦେବୀଙ୍କୁ ପୂଜିଲେ ମୁକ୍ତି ମିଳିଥାଏ । ଏହି ବାଶେଳୀ ପୂଜା ସୁଦୂର ସିଂହଳ ଦ୍ୱୀପରେ ହେବାର ପ୍ରମାଣ ଘୋଡ଼ାନାଚ ଗୀତରୁ ମିଳେ–

କାଷ୍ଠରେ ନିର୍ମାଣ ଦେବୀ ସ୍ଥାପନ ହୋଇଲୁ
ସିଂହଳ ଦ୍ୱୀପେ ମାଗୋ ବାଶେଳୀ ବୋଲାଇଲୁ ।

**ଚୈତିଘୋଡ଼ା ଓ କୈବର୍ତ୍ତ ଗୀତା**

ମହାପୁରୁଷ ଅଚ୍ୟୁତାନନ୍ଦ କେଉଟମାନଙ୍କର ଉତ୍ପତ୍ତି ଓ ପର୍ବପର୍ବାଣିକୁ ପାଥେୟ କରି ଏକ ପୁସ୍ତକ ଲେଖିଛନ୍ତି, ଯାହାର ନାମ 'କୈବର୍ତ୍ତ ଗୀତା' । 'କୈବର୍ତ୍ତ ଗୀତା'ରେ ଉଲ୍ଲେଖ ଅଛି, ପ୍ରଳୟ ସମୟରେ ଭଗବାନ ବଟପତ୍ର ଉପରେ ଶୟନ କରିଥିଲେ । ଭୀଷଣ ପବନ ହେଲା ଓ ବଟପତ୍ର ଆନ୍ଦୋଳିତ ହେଲା । ଭଗବାନ କାନମୂଳ ମଳିରୁ ଗୋଟିଏ ପୁରୁଷକୁ ଜନ୍ମ ଦେଲେ । କାନମୂଳରୁ ଓ ମଳିରୁ ଜାତ ହୋଇଥିବା ଯୋଗୁଁ ତାହାକୁ କୈବର୍ତ୍ତ ବୋଲି କୁହାଗଲା । ତା'ପରେ ସେହି ପୁରୁଷ କଣ୍ଡିଆ ଧରିବାରୁ ବଟପତ୍ର ସ୍ଥିର ହେଲା । ଏହି ପୁରୁଷଟିର ନାମ ଦାସରାଜା ।

ସମୁଦ୍ରରେ ସନ୍ତରଣ କରୁଥିବା ଅବସ୍ଥାରେ ରାଘବବାଳିଆ ମାଛ ଦାସରାଜାକୁ ଗିଳିଦେଲା । ଭଗବାନ ଏହା ଜାଣିପାରି ରାଘବର ପେଟ ଚିରି ଦାସରାଜାକୁ ଉଦ୍ଧାର କରିଥିଲେ । ସେହିଦିନଠାରୁ କୈବର୍ତ୍ତମାନଙ୍କର ଶତ୍ରୁ ହେଲେ ମାଛ । ସେବେଠାରୁ କୈବର୍ତ୍ତମାନେ ମାଛ ଶିକାର କରି ଆସୁଛନ୍ତି ।

**ଚଇତି ଘୋଡ଼ା ପୂଜା ଓ କୈବର୍ତ୍ତମାନଙ୍କର ପର୍ବ ପାଳନ**

ଚଇତ ପୂର୍ଣ୍ଣିମୀ ଦିନ କୈବର୍ତ୍ତମାନେ ନିଜ ନିଜ ଗ୍ରାମରେ ଏକତ୍ର ହୋଇ ବାଉଁଶ ବୁଦାକୁ ପୂଜା କରନ୍ତି । ଗୋଟିଏ ନିଖୁଣ ବାଉଁଶକୁ କାଟିକରି ନିଅନ୍ତି । ପାର୍ବତୀଙ୍କୁ ସ୍ମରଣ କରି ବତା ଚିରନ୍ତି । ବାରଖଣ୍ଡ ବତା ହୁଏ । ସେଥିରେ ଘୋଡ଼ାର ପଞ୍ଜରା ତିଆରି ହୁଏ । କାଠରେ ନିର୍ମିତ ଘୋଡ଼ାମୁଣ୍ଡ ଏହି ପଞ୍ଜରା ଦେହରେ ଯୋଡ଼ାଯାଏ । ଘୋଡ଼ାକୁ ପାଟ ଶାଢ଼ିରେ ସଜାଇ ତା'ବେକରେ ମନ୍ଦାର

ଫୁଲହାର ଲମ୍ବାଇ ଦିଆଯାଏ । ବାଉଁଶ ବତାରେ ନିର୍ମିତ ଏହି ଘୋଡ଼ା ଖୋଳ ମଧ୍ୟରେ ଜଣେ ଅଣ୍ଟା ପର୍ଯ୍ୟନ୍ତ ପଶି ଘୋଡ଼ାକୁ ନଚାଇଥାଏ ।

ଚଇତ ପୂର୍ଣ୍ଣିମା ଦିନ ପ୍ରତ୍ୟେକ କୈବର୍ତ୍ତଙ୍କ ଘରେ ସଜ ବସେ । ଯେଉଁମାନେ ଜାଲଦ୍ୱାରା ମାଛ ଧରନ୍ତି ସେମାନେ ଜାଲକୁ ମଧ୍ୟ ଏହି ଦିନ ପୂଜା କରନ୍ତି । ଢୋଲ ଓ ଯୋଡି ମହୁରୀ ବାଜେ । ହୁଳହୁଳି ଧ୍ୱନିରେ ଘର ଉଚ୍ଛୁଳି ପଡ଼େ । ଜାଲୁଆ ଓ ନାଉରୀ କୈବର୍ତ୍ତମାନେ ନଈକୂଳରେ ନିଜନିଜର ଡଙ୍ଗାକୁ ଧୋଇ, ସେଥିରେ ଚିତା ପକାନ୍ତି । ନବବସ୍ତ୍ର ଥୋଇ ଭୋଗରାଗ ପୂଜା କରନ୍ତି । ଆରିଶା ପିଠା ପୂଜା ହୁଏ । ଡଙ୍ଗାକୁ ବନ୍ଦାପନା କରାଯାଏ ।

ଚଇତି ଘୋଡ଼ାକୁ ପୂଜା କରିବା ଦ୍ୱାରା ଧନ, ଜନ ଗୋପଲକ୍ଷ୍ମୀ ପ୍ରାପ୍ତ ହୋଇଥାଏ, 'କୈବର୍ତ୍ତ ଗୀତା'ରେ ଉଲ୍ଲେଖ ଅଛି–

ନିରାକାର ଅଙ୍ଗୁ ଏ ବାଶେଳୀ ଅଟେ ଜାଣ
ଏହାଙ୍କୁ ପୂଜିଲେ ପାଇ ବଇକୁଣ୍ଠେ ସ୍ଥାନ ।
ମାନସିକ କରି ଯେହୁ ବାଶେଳୀ ପୂଜିବ
ଅପୁତ୍ରିକ ହୋଇଥିଲେ ପୁତ୍ର ସେ ଲଭିବ ।

ଯେଉଁ କୈବର୍ତ୍ତମାନେ ଆର୍ଥିକ ଅନଟନ କିମ୍ବା ଅନ୍ୟାନ୍ୟ କାରଣରୁ ଚଇତି ଘୋଡ଼ା ବା ବାଶେଳୀ ପୂଜା କରିପାରନ୍ତି ନାହିଁ ସେମାନଙ୍କ ପାଇଁ ପୁରାଣରେ ଅନ୍ୟ ବ୍ୟବସ୍ଥା ମଧ୍ୟ ଅଛି । ଢିଙ୍କି ଉପରେ ବାଶେଳୀ ବା ଘୋଡ଼ାମୁଣ୍ଡ ସ୍ଥାପନ କରି ପୂଜା କରିପାରିବ । ସେଥିପାଇଁ କୁହାଯାଇଛି– 'ଢିଙ୍କି ମୁଣ୍ଡେ ଅଶ୍ୱ ମୁଣ୍ଡକୁ ଥାପିବ । ଅଶ୍ୱିନୀ ବାଶେଳୀ ପୂଜା ତହିଁ ଯେ କରିବ ।' କାରଣ ଢିଙ୍କି ମଧ୍ୟ କୈବର୍ତ୍ତମାନଙ୍କର ନିଜ ବୃତ୍ତି ଅବଲମ୍ବନ ନିମନ୍ତେ ମାଧ୍ୟମ । ସେମାନେ ଢିଙ୍କିରେ ଚୁଡ଼ା କୁଟି ପରିବାରର ଭରଣପୋଷଣ କରିଥାନ୍ତି । ଏଣୁ ସେମାନେ ମନେକରନ୍ତି ଢିଙ୍କିରେ ଲକ୍ଷ୍ମୀ, ବାଶେଳୀ ଓ ସ୍ୱୟଂ ବିଶ୍ୱକର୍ମା ବିରାଜମାନ କରିଛନ୍ତି ।

### ଚୈତିଘୋଡ଼ା ନାଚ

ଚୈତ୍ର ମାସରେ ଅଶ୍ୱମୁଖୀ ବାଶେଳୀ ଠାକୁରାଣୀ ନାମରେ କୈବର୍ତ୍ତମାନେ ଗ୍ରାମେ ଗ୍ରାମେ ଘୋଡ଼ାନାଚ ଦେଖାନ୍ତି । ଏହି ନାଚ ଅତ୍ୟନ୍ତ ମନୋରମ । ଘୋଡ଼ାକୁ ନଚାଇବା ଲୋକକୁ ରାଉତ ଓ ଯେଉଁ ସ୍ତ୍ରୀ ଲୋକ ଦୁଇଜଣ ସହାୟ କରୁଥାନ୍ତି ସେମାନଙ୍କୁ ରାଉତାଣୀ କୁହାଯାଏ । ଏମାନେ ବିଭିନ୍ନ ଅଙ୍ଗଭଙ୍ଗୀ ଦେଖାଇ ନୃତ୍ୟ କରିଥାନ୍ତି । ବିଷୟବସ୍ତୁ ବିଭିନ୍ନ ପୁରାଣରୁ ଆସିଥାଏ ।

ଯଥା–

ଧୋବ ଧୋବଲିଆ ବାଉଁଶ ଫାଳିଆ
କାଠରେ ହୋଇଛି ଘୋଡ଼ା
ତା' ଉପରେ ବସି କୈବର୍ତ୍ତ ରାଜା
ବାଶେଳୀ ପାଉଛି ପୂଜା ।

ଘୋଡ଼ାମୁଣ୍ଡେ ଦେଲି ସିନ୍ଦୂର କଜଳ
ସିପାହି ମୁଣ୍ଡେ ଚନ୍ଦନ
ସତେ ହୋଇଥିବୁ ସିଦ୍ଧ ବାଶୁଳେଇ
ଘୋଡ଼ାମୁଣ୍ଡେ ପରଶନ । (ପଲ୍ଲୀଗୀତ ସଂଚୟନ)

ଏହି ନୃତ୍ୟରେ ବୋଲା ଯାଉଥିବା ଗୀତ ଅଶ୍ୱମୁଖା ବାଶୁଳୀ ଦେବୀଙ୍କର ବହୁ ପ୍ରଶଂସାରେ ରଚିତ ହୋଇଥାଏ । ବୈଦିକ ଯୁଗରେ ଅଶ୍ୱକୁ ଅଶ୍ୱମେଧ ଯଜ୍ଞରେ ପୂଜା କରାଯାଏ । ଓଡ଼ିଶାର ପ୍ରତ୍ୟେକ ଗାଁ ମୁଣ୍ଡରେ ସ୍ଥାପିତ ଦେବୀମାନଙ୍କର ନିକଟରେ ମାଟିଘୋଡ଼ା ମଧ୍ୟ ଦେଖାଯାଏ । ରାଉତ ରାଉତାଣୀ ବୋଲୁଥିବା ଗୀତରେ ନିଗୂଢ଼ ଦର୍ଶନର ଛାପ ଥାଏ । ମାତ୍ର ଗାଁ ଦାଣ୍ଡରେ ବୋଲାଯାଉଥିବା ଗାଉଁଲୀ ନରନାରୀ ବୁଝିପାରୁ ନଥିଲେ ମଧ୍ୟ ମନଯୋଗ ସହକାରେ ଶୁଣୁଥାନ୍ତି । ସେଥିରୁ ଗୋଟିଏ ଉଦାହରଣ ଏଠାରେ ଦିଆଗଲା–

ଦଣ୍ଡିକେରୀ ମାଛ ଘର ଛାଉଅଛି
କେରାଣ୍ଡି ଭିତରେ ବତା
ଚିଲ ହିଁ ଧରିଛି ଛତା ।

ଏହି ଘୋଡ଼ାନାଚରେ ଢୋଲ ଯୋଡ଼ି ମହୁରୀ ବାଜେ । ରାଉତ (କୈବର୍ତ୍ତ) ନିଜ ହାତରେ ରାମତାଳି ଧରି ବଜାଉଥାଏ । ଏହି ରାମତାଳି ପ୍ରଭୁ ରାମଚନ୍ଦ୍ର ଦାସରାଜାକୁ ଦେଇଥିଲେ ବୋଲି କିମ୍ବଦନ୍ତୀ ଅଛି ।

ଚଇତ ପୂର୍ଣ୍ଣମାଠାରୁ ଆଠଦିନ ଏହି ଯାତ ହୁଏ । ଓଡ଼ିଶାର ଉପକୂଳ ଅଞ୍ଚଳରେ ଏହି ଘୋଡ଼ାନାଚ ହୁଏ । ଏବେ କୈବର୍ତ୍ତ ବ୍ୟତୀତ ଅନ୍ୟ ଜାତିର ଲୋକମାନେ ମଧ୍ୟ ଘୋଡ଼ାନାଚ କଲେଣି । ଏହା ଆମ ଓଡ଼ିଶାର ଏକ ଲୋକ ସଂସ୍କୃତି ଓ ଲୋକନୃତ୍ୟ । ପୁରୀ ଜିଲ୍ଲା, କଟକ ଜିଲ୍ଲା ଓ ବାଲେଶ୍ୱର ଅଞ୍ଚଳରେ ମଧ୍ୟ ଘୋଡ଼ାନାଚ ହୁଏ । 'କୈବର୍ତ୍ତ ଗୀତା'ରେ ଝଙ୍କଡ, କାକଟପୁର ଓ ନିଆଳୀ କଥା ଉଲ୍ଲେଖ ଅଛି । ପ୍ରାଚୀ ନଦୀ କୂଳରେ ଦାସରାଜା ବାସ କରୁଥିଲେ ବୋଲି ସେଥିରେ ଧାରଣା ଦିଆଯାଇଛି ।

### ଚଇତି ପର୍ବ ଦଣ୍ଡନାଚ

ସାଧାରଣତଃ ମହାବିଷୁବ ସଂକ୍ରାନ୍ତିର ପୂର୍ବ ଦିନକୁ ମେରୁ ଯାତ୍ରା ବୋଲି କୁହନ୍ତି । ଏହିଦିନର ଚଇତି ମାସରେ ଆରମ୍ଭ ହୋଇଥିବା ଦଣ୍ଡ ଯାତ୍ରା ଶେଷହୁଏ । କେହି କେହି ସେହି ଦିନକୁ ମିଶାଇ ପୂର୍ବରୁ ଏକୋଇଶ ଦିନ, କେହି କେହି ତେର ଦିନ, କେହି କେହି ନଅଦିନ, ଆଉ କେତେକ ତିନି ଦିନଠାରୁ ଦଣ୍ଡନାଚ ଆରମ୍ଭ କରିଥାନ୍ତି । ଏହି ନାଚରେ ବ୍ରାହ୍ମଣଠାରୁ ଚଣ୍ଡାଳ ଯାଏଁ ସମସ୍ତେ ଯୋଗ ଦେଇଥାନ୍ତି । ମାଳୀ ଓ ବ୍ରାହ୍ମଣମାନେ ଦେବତା ଶିବ ଏବଂ କାଳୀଙ୍କର ପୂଜା ବିଧାନ କରିସାରିବା ପରେ ଅଖଣ୍ଡ ଅଗ୍ନି ସଂଯୋଗ ହୁଏ । ଏହା ମାଟି ପାତ୍ର ଓ ଏହାକୁ ଦଣ୍ଡ କୁହାଯାଏ । ଦଣ୍ଡୁଆ ବା ଭୋଗତା ନାମରେ ଅଭିହିତ ନିଷ୍ଠାବାନ୍ ବ୍ୟକ୍ତିମାନେ ଏଥିରେ ଯୋଗ ଦେଇଥାନ୍ତି । କଠୋର ଦଣ୍ଡ ସହି ଏହି ବିଧି ରକ୍ଷା କରାଯାଉଥିବାରୁ ଏହାକୁ 'ଦଣ୍ଡ' ବୋଲି କୁହାଯାଇଥାଏ । 'ଦଣ୍ଡ' ଯାତ୍ରାରେ ଦୁଇଟି ବେତ ପୂଜା କରାଯାଏ, ଏହାକୁ ଗୌରୀ ବେତ ବୋଲି କୁହାଯାଏ । ପତାକା ଭଳି କେତୋଟି ଛିଟକନା ଓହଳି ଥାଏ । ବହୁତ ଫୁଲମାଳ ଦିଆଯାଇଥାଏ । ସାତଗୋଟି ନୃତ୍ୟର ସମାହାର ହେଉଛି ଦଣ୍ଡଯାତ୍ରା । ମୁଖ୍ୟ ନାୟିକା ହେଉଛନ୍ତି ଚଢ଼େୟା ଓ ଚଢ଼େୟାଣୀ । ଏହା ବ୍ୟତୀତ ବୈଷ୍ଣବ, ଯୋଗୀ, ପତରାସଉରା, ଦହିଖୋଳ, ବାଇଧନ, ବୀଣାକାର । ବୈଷ୍ଣବ ଯୋଗୀ ଯୋଗିଆଣୀ ପ୍ରଭୃତି ବାହାରନ୍ତି ।

### ଓଡ଼ିଶାର ବିଭିନ୍ନ ଦେବୀ ପୀଠରେ ଚଇତି ପର୍ବ

ଓଡ଼ିଶାର ଆଠଗୋଟି ଦେବୀ ପୀଠ ବିଶେଷ ଭାବରେ ବିଖ୍ୟାତ । ବାଣପୁରରେ ଭଗବତୀ, ପୁରୀରେ ବିମଳା, କାକଟପୁରରେ ମଙ୍ଗଳା, ଝଙ୍କଡ଼ରେ ଶାରଳା, ଯାଜପୁରରେ ବିରଜା, ବାଙ୍କିରେ ଚର୍ଚ୍ଚିକା, ସମ୍ବଲପୁରରେ ସମଲାଇ ଓ ତାଳଚେରରେ ହିଙ୍ଗୁଳା । ଏହା ବ୍ୟତୀତ ତାରାତାରିଣୀ (ଗଞ୍ଜାମ) ଓ ତାରିଣୀ (କେନ୍ଦୁଝର)ର ମଧ୍ୟ ପ୍ରସିଦ୍ଧ ଦେବୀ ପୀଠ । ଏହି ପୀଠମାନଙ୍କରେ ଚଇତ ମାସରେ ପର୍ବ ପାଳନ ହୁଏ ଏବଂ ଝାମ ଯାତ୍ରା ହୁଏ । ପଣା ସଂକ୍ରାନ୍ତି ଦିନ ବ୍ରତଧାରୀ ପାଟୁଆମାନେ ନିଆଁ ଜଳୁଥିବା ସାତଟି ଗାତରେ ଏକାଦି କ୍ରମେ ଖାଲି ଗୋଡ଼ରେ ଚାଲିଯାନ୍ତି ଅଥଚ ସେମାନଙ୍କ ଗୋଡ଼ରେ ଫୋଟକା ହୁଏ ନାହିଁ । ବାଉରୀ, କଣ୍ଡରା, ପାଣ, ଡମ ଆଦି ଜାତିର ଭାଇମାନେ ସାଧାରଣତଃ ପାଟୁଆ ହୁଅନ୍ତି । ପାଟୁଆ ନାଚୁଥିବା ବେଳେ ଘଣ୍ଟ ବାଜେ ବୋଲି ଏମାନଙ୍କୁ ଘଣ୍ଟ ପାଟୁଆ କୁହାଯାଏ । କେହି କେହି ଏକୋଇଶ ଦିନ ତ କେହି ଏକମାସ ପର୍ଯ୍ୟନ୍ତ ବ୍ରତ ରଖିଥାନ୍ତି । ପାଟୁଆମାନେ ପ୍ରତିଦିନ ଅରୁଆ ହବିଷାନ୍ନ ଖାଇ ପବିତ୍ର ରହି ଏ ବ୍ରତ ପାଳନ କରନ୍ତି । ଗାଁ ଗାଁ ବୁଲି କୁମ୍ଭରେ ମା'ଙ୍କ ପ୍ରତିନିଧି ରୂପେ ସଜାଇ ବାହାରି ଥାନ୍ତି । ଘଣ୍ଟ ଘଣ୍ଟାର ତାଳେ ତାଳେ ପାଟୁଆ ବେତ ଧରି ନାଚେ । ଗୋଡ଼କୁ ଛନ୍ଦି, ବଙ୍କେଇ ପାଟୁଆ ଗାଁର ଏ ମୁଣ୍ଡରୁ ସେ ମୁଣ୍ଡକୁ ନାଚି ନାଚି ଚାଲେ ।

ତାଳଚେରର ମା' ହିଙ୍ଗୁଳାଙ୍କ ପର୍ବ ଚଇତି ପର୍ବ ରୂପେ ପାଳନ ହୁଏ । ହିଙ୍ଗୁଳା ଯାତ୍ରାର ପୂଜାକର୍ମ ଚୈତ୍ର ମାସ ପ୍ରଥମ ଗୁରୁବାରଠାରୁ ଆରମ୍ଭ ହୋଇ ଏହି ସମୟରେ ପରଂପରା ଅନୁଯାୟୀ ହିଙ୍ଗୁଳାଙ୍କ ସହିତ ବଡ଼ ମଣ୍ଡପରେ କୁଟେଇଶୁଣି ଓ କରଡ଼େଇଙ୍କର ଆଳମ ପୂଜା ହୁଏ ।

### ଆଦିବାସୀମାନଙ୍କର ଚଇତି ପର୍ବ

ଚଇତି ପର୍ବ ଓଡ଼ିଶାର ଆଦିବାସୀ ଜନଜାତି ଭାଇଭଉଣୀମାନେ ମଧ୍ୟ ପାଳନ କରିଥାନ୍ତି । ବିଶେଷତଃ କନ୍ଧ, ତରଭା, ରଣା, ଭୂମିଆଁ, ଡମ୍ବ, ପରଜା, ସଉରା ଇତ୍ୟାଦି ଚଇତ ମାସରେ ଗୀତଗାଇ ମାଦଳର ତାଳେ ତାଳେ ନାଚିଥାନ୍ତି । ସ୍ତ୍ରୀ ଲୋକମାନେ ମଧ୍ୟ ଏହି ଚଇତି

ପର୍ବ ନାଚ ଗାନରେ ଯୋଗ ଦେଇଥାନ୍ତି । କାରଣ ଏହି ସମୟରେ ଜମିବାଡ଼ି କାମ ସରିଯାଇଥାଏ । ଫସଲ ମଧ୍ୟ ଅମଳ ହୋଇ ଘରେ ଗଚ୍ଛିତ ଥାଏ । ଏଣୁ ଅବସର ବେଳ । ମଜା କରିବା, ଆନନ୍ଦ କରିବା ସହିତ ନାଚଗୀତରେ ମାତିଯିବାକୁ ଏ ସମୟରେ ଆଦିବାସୀମାନେ ବହୁତ ଭଲ ପାଆନ୍ତି । ପୂର୍ବେ ଶିକାର ପର୍ବ ରୂପେ ଚଇତି ପର୍ବ ଆଦିବାସୀମାନଙ୍କର ଶ୍ରେଷ୍ଠ ପର୍ବ ଥିଲା । ମାତ୍ର ଏବେ ମଣିଷ ବଣ ଜଙ୍ଗଲ ଧ୍ୱଂସ କରିଦେବା ପରେ ବଣ ଜଙ୍ଗଲରେ ଜୀବଜନ୍ତୁ ନାହାନ୍ତି । ସେଥିକୁ ପୁଣି ସରକାରୀ କଟକଣା । ଏଣୁ ଆଦିବାସୀ ଯୁବକ ପାରିଧି କରିବା ପାଇଁ ଚଇତ ପର୍ବରେ ଏବେ ବଣ ଜଙ୍ଗଲକୁ ଯାଉନାହିଁ । ଶିକାର ନାହିଁ ମାତ୍ର ପରଂପରା ନଷ୍ଟ ହୋଇଯାଇନି । ନାଚ ଗୀତ ପୂର୍ବଭଳି ଆଦିବାସୀମାନଙ୍କ ଗାଁରେ ଲାଗିରହିଛି ।

ଚଇତି ପର୍ବ ହେଉଛି ପ୍ରେମ ଋତୁର ପର୍ବ । ଧାଙ୍ଗଡ଼ା ଧାଙ୍ଗଡ଼ି ଚଇତ ମାସକୁ ମନଭରି ଉପଭୋଗ କରନ୍ତି । ଶାଳ ଫୁଲର ବାସ୍ନା ସେମାନଙ୍କୁ ଆନମନା କରେ । ନାଚ ଗୀତରେ ସେମାନେ ମସ୍‌ଗୁଲ ହୋଇଯା'ନ୍ତି ଏବଂ ବହୁତ ବିଭାଘର ମଧ୍ୟ ହୁଏ ।

ନାଚଗୀତ ଭୋଜିଭାତ ଭିତରେ ଆଦିବାସୀମାନଙ୍କର ଚଇତି ପରବ ଶେଷ ହୋଇଯାଏ । ସେମାନେ ପୁଣି ବଣ ପାହାଡ଼ ଡଙ୍ଗର, ଝୋଲାକୁ ଫେରିଯାଆନ୍ତି, କୃଷି କାର୍ଯ୍ୟ କରିବା ପାଇଁ । ସେମାନେ ପୁଣି ଅପେକ୍ଷା କରନ୍ତି ଆସନ୍ତା ଚଇତ ମାସକୁ, ଚଇତ ପର୍ବକୁ ।

ଚୈତ୍ର ମାସରେ ବାଲେଶ୍ୱର ଜିଲ୍ଲା ଓ ମୟୂରଭଞ୍ଜ ଜିଲ୍ଲାରେ, ସାତଦିନ ବ୍ୟାପୀ ଉଡ଼ାଯାତ୍ରା ପାଳନ କରାଯାଏ । କାଳିସୀମାନେ ନାଚନ୍ତି । ଦେବୀ କାଳିସୀ ଦେହରେ ଉତୁରି ବହୁ ଆଗତ ଭବିଷ୍ୟ କଥା କୁହାନ୍ତି । ସେହି ଅବସ୍ଥାରେ ନାଚି ନାଚି ଦେବତା ବିଜେ କରିଥିବା ସ୍ଥାନ ଯାଏଁ ଆସନ୍ତି । ଆଦିବାସୀମାନେ ଢୋଲ, ମହୁରୀ, ଚାଙ୍ଗୁ, ନାଗରା, ଡାବ ପ୍ରଭୃତି ବାଦ୍ୟ ବଜାଇଥାନ୍ତି । ଏହି କାଳିସୀମାନେ କଣ୍ଟା ଦୋଳିରେ ଝୁଲିବା, ଶୂଳ ଉପରେ ବସିବା ପ୍ରଭୃତି ଚମତ୍କୃତ କଥାମାନ ଦେଖାଇଥାନ୍ତି ।

### ଚୈତ୍ର ପୂର୍ଣ୍ଣିମାରେ ଭାଗବତ ମେଳଣ

ରାଧାକୃଷ୍ଣଙ୍କ ପ୍ରେମର ନିଦର୍ଶନ ସ୍ୱରୂପ ଦୋଳପର୍ବ ଓଡ଼ିଶାରେ ପାଳନ କରାଯାଇଥାଏ । ଉତ୍କଳର ପଲ୍ଲୀ ଜୀବନ ଉତ୍‌ଫୁଲ ହୋଇଉଠେ ।

କିନ୍ତୁ ଓଡ଼ିଶାର ପୁରପଲ୍ଲୀରେ ଚୈତ୍ର ପୂର୍ଣ୍ଣିମାକୁ ଭାଗବତ ମେଳଣ ରୂପେ ପାଳନ କରାଯାଇଥାଏ । ଗାଁ ମୁଣ୍ଡ ମେଳଣ ପଡ଼ିଆରେ ଭାଗବତ ବିମାନ ସବୁ ଆସି ଏକତ୍ରିତ ହୁଅନ୍ତି, ମେଳଣରେ ସଂପୃକ୍ତ ଗ୍ରାମର ବିମାନ ଥାନାପତି ହୁଅନ୍ତି । ରାତିରେ ଅପେରା, ପାଲା, ଘୋଡ଼ାନାଚ ଦାସକାଠିଆ ପ୍ରଭୃତି ହୁଏ । ବିମାନ ଆସିଲା ବେଳେ ରୋଶନି, ଷଣ୍ଢନାଚ, ଗୋଟିପୁଅ ନାଚ, ରାଜାରାଣୀ ନାଚ ପ୍ରଭୃତି ପ୍ରଦର୍ଶନ କରାଯାଏ । ବିମାନ ଆଗରେ ଚାମର ପଡୁଥାଏ । ଖୋଳ ତାଳ ମଧ୍ୟ ବାଜୁଥାଏ । ଚଇତି ପର୍ବ ଏକ ସାମାଜିକ ମିଳନର ପର୍ବ । ବନ୍ଧୁତ୍ୱର ଋତୁ ।

ଆଲୋକ ନଗର
ନିଆଳୀ, ଜିଲ୍ଲା– କଟକ



# 'ବନ୍ଦେ ଉତ୍କଳ ଜନନୀ' ଦିବସର ମହନୀୟତା

**ମଧୁସୂଦନ ପଟ୍ଟନାୟକ**

କପିଳ ସଂହିତାର ଉଲ୍ଲିଖିତ ତଥ୍ୟାନୁସାରେ କୁହାଯାଇଛି, 'ଜଗତ ମଧ୍ୟରେ ଭାରତ ହିଁ ଶ୍ରେଷ୍ଠ ଦେଶ । ଭାରତ ମଧ୍ୟରେ ଉତ୍କଳ ଭଳି ଭୂଖଣ୍ଡ ମହିମଣ୍ଡଳରେ ବିରଳ ।'

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ଭାଷାରେ 'ଜଗତ ସରସେ ଭାରତ କମଳ, ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ'– ଜଗତ ରୂପକ ପୁଷ୍କରିଣୀରେ ଯଦି ଭାରତ ଏକ ପଦ୍ମଫୁଲ ହୁଏ, ତେବେ ତା'ର କେଶର ହେଉଛି ପବିତ୍ର ନୀଳାଚଳ ପୀଠ ଉତ୍କଳ ।

ପୂର୍ବରେ ଓଡ଼ିଶାର ଚତୁଃସୀମା ଥିଲା – ଉତ୍ତରରେ ଗଙ୍ଗାନଦୀଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ଓ ପୂର୍ବରେ ମହୋଦଧିଠାରୁ ପଶ୍ଚିମରେ ଅମରକଣ୍ଟକ ପର୍ଯ୍ୟନ୍ତ । ଏହି ଭୂଖଣ୍ଡ ଓଡ୍ର, କଳିଙ୍ଗ, ତ୍ରିକଳିଙ୍ଗ, ଉତ୍କଳ, ତୋଷଳ ଓ କଙ୍ଗୋଦ ଆଦି ବହୁ ନାମରେ ନାମିତ ଥିଲା । ଏସବୁ ଭାବ ଭାଷା ଓ ଜାତୀୟତା ଦୃଷ୍ଟିରୁ ଅଭିନ୍ନ ଥିଲା । ଏଠାରେ ଚୈତ, ଭଞ୍ଜ, ସୋମ, ଗଙ୍ଗ, ସୂର୍ଯ୍ୟ ଓ ଭୋଇ ବଂଶର ରାଜାମାନେ ରାଜତ୍ୱ କରି ଅକ୍ଷୟ ଯଶର ଅଧିକାରୀ ହୋଇଥିଲେ ।

ଏପରିକି ଖ୍ରୀଷ୍ଟପୂର୍ବ କାଳରୁ ଓଡ଼ିଆମାନେ ପୂର୍ବାଞ୍ଚଳରେ ବିଶାଳ ସାମ୍ରାଜ୍ୟ ଗଠନ କରି ଦରିଆପାର ଦେଶମାନଙ୍କରେ ଉପନିବେଶ ସ୍ଥାପନ କରିଥିଲେ । ମହାଭାରତ ଯୁଦ୍ଧରେ ଓଡ଼ିଆମାନେ ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଥିଲେ । ମୌର୍ଯ୍ୟଯୁଗରେ ସମ୍ରାଟ୍ ଚନ୍ଦ୍ରଗୁପ୍ତ ସମଗ୍ର ଭାରତ ଜୟ କଲେ ମଧ୍ୟ ଓଡ଼ିଶା ଜୟ କରିବାକୁ ସାହସ କରିନଥିଲେ । ସମ୍ରାଟ୍ ଅଶୋକ କଳିଙ୍ଗ ଯୁଦ୍ଧରେ ଓଡ଼ିଆମାନଙ୍କ ଅଭୂତପୂର୍ବ ରଣକୌଶଳରେ ପ୍ରୀତ ହୋଇ ଚଣ୍ଡାଶୋକରୁ ଧର୍ମାଶୋକରେ ପରିବର୍ତ୍ତିତ ହୋଇଥିଲେ ।

ଖ୍ରୀ.୧୫୬୮ରେ ଏବଂ ପରେ ଆଫଗାନିସ୍ଥାନ ମୋଗଲ, ମରହଟ୍ଟାମାନେ ଓଡ଼ିଶାରେ ନିଜ ନିଜର ଆଧିପତ୍ୟ ବିସ୍ତାର କରିଥିଲେ । ଖ୍ରୀ.୧୮୦୩ରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ଇଂରେଜମାନଙ୍କ ବିରୁଦ୍ଧରେ ଓଡ଼ିଶାର ପାଇକମାନେ ବିଦ୍ରୋହ କରି 'ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମୀ' ସମ୍ମାନରେ ଖ୍ୟାତ ହେଲେ । ଏହି ବିଦ୍ରୋହ ହେତୁ ଓଡ଼ିଶାକୁ ଖଣ୍ଡ ଖଣ୍ଡ କରି ଓଡ଼ିଶାର ଉତ୍ତରାଂଶ ବଙ୍ଗପ୍ରଦେଶରେ, ପଶ୍ଚିମାଂଶ ମଧ୍ୟପ୍ରଦେଶରେ ଓ ଦକ୍ଷିଣାଂଶ ମାନ୍ଦ୍ରାଜ ପ୍ରଦେଶରେ ରହିଗଲା ।

୧୮୮୨ ଖ୍ରୀଷ୍ଟାବ୍ଦରେ ଉତ୍କଳ ସଭା ତରଫରୁ ଭାଷାସୂତ୍ରରେ ଓଡ଼ିଶା ପ୍ରଦେଶ ଗଠନ ଦାବୀ ଉପସ୍ଥାପନ କରାଗଲା । ଉତ୍କଳ ସମ୍ମିଳନୀରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ସମୂହର ଏକତ୍ରୀକରଣ ଓ ଓଡ଼ିଆଙ୍କ ସ୍ୱାର୍ଥରକ୍ଷା ଏହାର ମୂଳ ଲକ୍ଷ୍ୟ ଥିଲା । ଇଂରେଜମାନେ ୧୮୯୬ରେ ସମ୍ବଲପୁର ଅଞ୍ଚଳରେ ସରକାରୀ ସ୍ତରରେ ହିନ୍ଦୀ ଭାଷାର ବ୍ୟବହାର ପାଇଁ ଆଦେଶ ଦେଲେ । ଏହାଦ୍ୱାରା ପ୍ରବଳ ଜନ ଅସନ୍ତୋଷ ବୃଦ୍ଧି ପାଇଲା । ୧୮୯୭ରେ ମଧୁବାବୁ ନିଜ ଚେଷ୍ଟାରେ ବିଲାତ ଯାଇ ଏହି ସରକାରୀ ଆଦେଶ ପ୍ରତ୍ୟାହାର ପାଇଁ ବିଲାତ ସରକାରଙ୍କୁ ଅନୁରୋଧ କଲେ । ତତ୍କାଳୀନ ଭାଇସ୍ରାୟ ଲର୍ଡ଼ କର୍ଜନ ସମସ୍ୟାକୁ ଧ୍ୟାନ

କରି ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ କରିବା ସହ ଏହି ଅଞ୍ଚଳକୁ ଓଡ଼ିଶା ଡିଭିଜନ୍‌ରେ ମିଶାଇବା ପାଇଁ ପ୍ରସ୍ତାବ ଦେଲେ । ସେହି ଅନୁସାରେ ୧୯୦୨ରେ ପୂର୍ବ ଆଦେଶ ପ୍ରତ୍ୟାହୃତ ହୋଇ ସମ୍ବଲପୁରରେ ଓଡ଼ିଆ ଭାଷା ପୁନଃ ପ୍ରଚଳନ ହେଲା ।

୧୯୧୧ରେ ବଙ୍ଗପ୍ରଦେଶରୁ ଅଲଗା କରାଯାଇ ବିହାର–ଓଡ଼ିଶା ଗୋଟିଏ ପ୍ରଦେଶ ହେଲା । ୧୯୧୯ରେ ଚେମସ୍‌ଫୋର୍ଡ଼ ଓ ମଣ୍ଟେଗୁଙ୍କ ନେଇ ଗଠିତ ଶାସନ ସଂସ୍କାର କମିଟି ନିକଟରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଦାବୀ ଉପସ୍ଥାପନ କରାଗଲା । ୧୯୩୧ରେ ଗୋଲଟେବୁଲ୍ ବୈଠକ ଲଣ୍ଡନରେ ବସିଥିଲା ଏବଂ ଓଡ଼ିଶାର ଦାବୀ ପୁନର୍ବାର କରାଗଲା । ଦୁଃଖର କଥା ଓଡ଼ିଶା ଖଣ୍ଡିତ ହୋଇ ରହିଲା । ଷଢ଼େଇକଳା ଓ ଖରସୁଆଁ ଓଡ଼ିଶାରେ ମିଶାଇବା ପାଇଁ ଆନ୍ଦୋଳନରେ ବେଙ୍ଗପାଣିଆ ଓ ସୁନୀଲ ସହିଦ୍ ହେଲେ । ପରିଶେଷରେ ୧୯୩୬ ମସିହା ଅପ୍ରେଲ ୧ ତାରିଖରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ପାଇଲା ।

ଏହି ଐତିହାସିକ ଆନ୍ଦୋଳନରେ ଓଡ଼ିଆ ଭାଷାର ସୁରକ୍ଷା ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ଯେଉଁମାନେ ସଂଗ୍ରାମ କରିଥିଲେ, ସେମାନେ ହେଲେ ଫକୀରମୋହନ ସେନାପତି, ରାଧାନାଥ ରାୟ, ଗୌରୀଶଙ୍କର ରାୟ, ବିଚିତ୍ରାନନ୍ଦ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ମଧୁସୂଦନ ରାଓ, ଗଙ୍ଗାଧର ମେହେର, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ, ଖଲିକୋଟ ମହାରାଜା ରାମଚନ୍ଦ୍ର ମହାରାଜା ଓ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ପ୍ରମୁଖ ଆହୁରି ଅନେକ ।

ଆସନ୍ତୁ, ଆଜିର ଏହି ପବିତ୍ର ଦିବସରେ ଓଡ଼ିଶାକୁ ଅଧିକ ବିକାଶମୁଖୀ ଓ ଗୌରବମୟ କରିବା ପାଇଁ ଶପଥ ନେବା ଓ ଓଡ଼ିଆ ଭାଷାକୁ ଜୀବନର ପ୍ରତ୍ୟେକ ସ୍ଥଳରେ ଲେଖାରେ ଓ କଥାରେ ବ୍ୟବହାର କରି ଗର୍ବ ଅନୁଭବ କରିବା ।

କୈବଲ୍ୟ, ଦଉତୋଟା, ପୁରୀ

# ରଙ୍ଗର ପରବ ହୋଲି

ସୁଷମା ଲେଙ୍କା

ଦୋଳ ବେଦି ସବୁ ଚମକୁଛି ଆଜି
ହୁଏ ଖାଲି ଝିଲିମିଲି
ନାନା ଜାତି ଫୁଲେ ସଜାଇ ଫଗୁଣ
ଆସିଛି ରଙ୍ଗର ହୋଲି ।
ସୌନ୍ଦର୍ଯ୍ୟରେ ଭରି ପ୍ରକୃତିର ରାଣୀ
ଧରଣୀକୁ କରେ ରଣୀ
ବିମାନରେ ବସି କୃଷ୍ଣଙ୍କ ସହିତ
ପୂଜା ପାଏ ରାଧା ରାଣୀ ।
ଫଗୁଣର ହୋଲି ଭାରି ମନ ଲୋଭା
ପୁଲକିତ କରେ ମନ
ଚଣା ଆମ୍ବ କଷି ବିମାନେ ଝୁଲଇ
ଆସିଛି ଦୋଳ ମେଳଣ ।
ଆମ୍ର କାନନରେ କୁହୁ କୁହୁ ତାନ
ଶୁଣି ହୁଏ ଆନ ମନା



ଫଗୁଣ ଆସିଛି ସାତ ରଙ୍ଗ ନେଇ
ହୋଲି ଖେଳିବାକୁ ସିନା ।
ସେନେହ ଶରଧା ଭକତି ପ୍ରୀତିରେ
ଖୁସିର ପଣତ ମେଲି
ରାଧାକୃଷ୍ଣ ପଦେ କରି ପ୍ରଣିପାତ
ଆସରେ ଖେଳିବା ହୋଲି ।
କି ସୁନ୍ଦର ଆହା ଯୁଗଳ ମୂରତି
ହୃଦୟରେ ଶାନ୍ତି ଭରି
ପ୍ରଭୁଙ୍କ ଆଶିଷ ସଦା ଝରୁଥାଉ
ଏତିକି କରେ ଗୁହାରି ।

ଖଣ୍ଡଗିରି ବିହାର
କୋଳଥିଆ, ଭୁବନେଶ୍ୱର

# ଶତାବ୍ଦୀର ସୂର୍ଯ୍ୟ ଓ ସ୍ୱତନ୍ତ୍ର ଉତ୍କଳର ଐଶ୍ୱର୍ଯ୍ୟ ମଧୁବାବୁ

**ପ୍ରଫୁଲ୍ଲ କୁମାର ଦାସ**

ବୀର ଓଡ଼ିଆ ଜାତିର ଗୌରବମୟ ଇତିହାସରେ ଶତାବ୍ଦୀର ସୂର୍ଯ୍ୟ ଓ ସ୍ୱତନ୍ତ୍ର ଉତ୍କଳର ଐଶ୍ୱର୍ଯ୍ୟ ବାରିଷ୍ଟର ମଧୁସୂଦନ ଦାସଙ୍କ ଅଭୁଲା କୀର୍ତ୍ତି ଓ ମନଲୋଭା ସ୍ମୃତି ଯୁଗ ଯୁଗ ଧରି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଥିବ । ଯେତେଦିନ ପର୍ଯ୍ୟନ୍ତ ଏ ଓଡ଼ିଆ ଜାତି ମହାକାଳ ଧମନୀରେ ଜଳଗଙ୍ଗା ହୋଇ ବହୁଥିବ ସେତେଦିନ ପର୍ଯ୍ୟନ୍ତ ଓଡ଼ିଆର କୀର୍ତ୍ତିମାନ, ସ୍ୱାଭିମାନ, ଯୋଗଜନ୍ମା ମହାପୁରୁଷ, ଉତ୍କଳଗୌରବ ମଧୁବାବୁ ଆଧୁନିକ ଓଡ଼ିଶାର ବିଶ୍ୱକର୍ମା ହୋଇ ରହିଥିବେ । ତାଙ୍କ ଭଳି ଆଦର୍ଶ ବ୍ୟକ୍ତିତ୍ୱ ଓ ପ୍ରଭାବଶାଳୀ ନେତୃତ୍ୱ ଯାହାର ପଟାନ୍ତର ଇତିହାସରେ ନାହିଁ । ଓଡ଼ିଶା ମାଟି ଓ ଓଡ଼ିଆ ଜାତି ପାଇଁ ତାଙ୍କ ଅବଦାନର କଳନା ଓ ତୁଳନା ନାହିଁ । ତାଙ୍କ ପରି ଜଣେ ଉଜ୍ଜ୍ୱଳ ପୁରୁଷ, ବରେଣ୍ୟ ବରପୁତ୍ରଙ୍କୁ କୋଳରେ ଧାରଣ କରି ସ୍ୱର୍ଣ୍ଣପ୍ରସୂ, ରତ୍ନଗର୍ଭା, ବୀରଭୋଗ୍ୟା ଉତ୍କଳ ଜନନୀ ଶତଧନ୍ୟା ହୋଇଛି । ଯାହାଙ୍କ ସାଂସ୍କୃତିକ ସ୍ୱାଭିମାନରେ ସ୍ୱୟଂ ଇତିହାସର ଧୈର୍ଯ୍ୟଚ୍ୟୁତି ଘଟେ । ଉତ୍କଳୀୟ ଜାତୀୟତାର ସେ ଏକ ସ୍ୱତନ୍ତ୍ର ମନ୍ତ୍ର ଗଙ୍ଗା । ଜାତୀୟ ସ୍ତରରେ ରାଜନୀତି କ୍ଷେତ୍ରରେ ସୁଖ୍ୟାତି ଅର୍ଜନ କରିଥିବା ଏକମାତ୍ର ଓଡ଼ିଆ ରାଜନୀତିଜ୍ଞ ଥିଲେ ସ୍ୱାଭିମାନୀ ପୁରୁଷ ସିଂହ ମଧୁବାବୁ । ଐତିହ୍ୟମୟ ଓଡ଼ିଶାର ମହନୀୟ କୀର୍ତ୍ତି କୋଣାର୍କର ସମୁଜ୍ଜ୍ୱଳ ମୁଖଶାଳା । ଯାହାର ବୈଦୁର୍ଯ୍ୟର ଆଭା ଓ ବିଭାରେ ଏ ଜାତି ଯୁଗେ ଯୁଗେ ଉଦ୍‌ଭାସିତ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ତାଙ୍କର ଅସୀମ ଦେଶପ୍ରୀତି, ସୀମାହୀନ ଜାତିପ୍ରୀତି, ଚରମ ତ୍ୟାଗ, ଗଭୀର ଅଧ୍ୟବସାୟ, ଆନ୍ତରିକ ନିଷ୍ଠା ଓ ବିଚକ୍ଷଣ ଦୂରଦର୍ଶିତା ତାଙ୍କୁ ଏ ମାଟି, ପାଣି ପବନରେ ଆଜି ବି ଜୀବନ୍ତ କରି ରଖିଛି । ସେ ଥିଲେ ଓଡ଼ିଆ ଜାତିର ପ୍ରାଣବାୟୁ, ଯେଉଁଠି କେବଳ ମୈତ୍ରୀ, ପ୍ରୀତି ଓ ଭ୍ରାତୃତ୍ୱର ଗୁଣ ବାଆ ସୁଲୁସୁଲୁ ହୋଇ ବହେ ।

ସତ୍ୟ, ନ୍ୟାୟ ଓ ସାଧୁତା ପ୍ରଦର୍ଶନ କରି ବୀର ଓଡ଼ିଆ ଜାତିର ନୈତିକତାର ଗୌରବମୟ ହିମାଳୟ ପରମ୍ପରା ସୃଷ୍ଟି କରି ସେ ସମଗ୍ର ବିଶ୍ୱ ବସୁଧାକୁ କୋଟି ଐଶ୍ୱର୍ଯ୍ୟରେ ବିସ୍ମିତ କରିପାରିଥିଲେ । ଫଳରେ ଇତିହାସର ହେମମୟ ବକ୍ଷରେ ତାଙ୍କର କର୍ମମୟ ସ୍ମୃତିକୀର୍ତ୍ତିର ଅଲିଭା ଅଭୁଲା ଔପନ୍ୟାସିକ କାହାଣୀ ସ୍ୱାଭିମାନର ଶୋଭାମୟ ସାହାଣୀ ହୋଇଛି । ଓଡିଶାର ଐକ୍ୟ ସଂହତିର ସୁମହାନ୍ ଉତ୍କଳ ସମ୍ମିଳନୀର ଉଗ୍ର ଆହ୍ୱାନ ଯାହାର ଫଲ୍‌ଗୁରେ ମମତା ମଂଜୁଳ ଓଡିଆ ଜାତି ଓ ଓଡିଆ ଭାଷା ମାଟିରୁ ଆକାଶ ଚୁମିଛି । ସଂଗ୍ରାମ ଓ ସ୍ୱାଭିମାନ ଯାହାର ଆଶା ଆକାଶର ଇନ୍ଦ୍ରଧନୁ । ଭାରତୀୟ ରାଜନୈତିକ ଇତିହାସକୁ ନୂତନ ବିପ୍ଳବର ଦିଶା ଓ ଦିଗନ୍ତ ଏବଂ ଦିଗ୍‌ଦର୍ଶନ ଦେଇ ଜନତା ଜନାର୍ଦ୍ଦନଙ୍କ ମହାନାୟକ ହୋଇଥିଲେ । ଉତ୍କଳ ଟ୍ୟାନେରୀ ଯାହାଙ୍କ ଐତିହାସିକ ସ୍ମୃତି । ଯାହାଙ୍କ ସ୍ଥିତି ଭିତିରେ କେବଳ କ୍ଷତି ହିଁ କ୍ଷତି । ତଥାପି ତାଙ୍କ ଆତ୍ମବିଶ୍ୱାସ ଓ ମନୋବଳରେ କେବେ ଆସି ନ ଥିଲା ବିଚ୍ୟୁତି । ସେ ବିନା ଦରମାରେ ରହିଥିଲେ ମନ୍ତ୍ରୀ । 'ରିକଲ୍ ବ୍ୟବସ୍ଥା' ତାଙ୍କ ବିଶ୍ୱ ଭାରତୀ । ସେ ଆଜୀବନ ତ୍ୟାଗୀ, ଭୋଗ କ'ଣ ଜାଣିବାକୁ ପ୍ରୟାସ କେବେ କରି ନ ଥିଲେ । ଶ୍ରମର

ମର୍ଯ୍ୟାଦାକୁ ବୁଝି କୃଷକ ଓ ଶ୍ରମିକଙ୍କୁ ସବୁବେଳେ ପ୍ରାଧାନ୍ୟତା ଦେଉଥିଲେ । ନାରୀ ଶିକ୍ଷାର ପ୍ରସାର ତାଙ୍କର ଅନବଦ୍ୟ ଅବଦାନ । ଗାନ୍ଧିଜୀଙ୍କ ଗ୍ରାମ୍ୟ ସ୍ୱରାଜ ଆନ୍ଦୋଳନ ପୂର୍ବରୁ ମଧୁବାବୁ ଓଡିଶାରେ ଏହି ଆନ୍ଦୋଳନର ଶୁଭାରମ୍ଭ କରିଥିଲେ । ଗାନ୍ଧିଜୀଙ୍କ ଅରଟ ଚିନ୍ତା ପୂର୍ବରୁ ସେ ମଧ କୁଟୀର ଶିଳ୍ପର ଶୁଭାରମ୍ଭ କରି ସୂତାକଳ ସ୍ୱପ୍ନ ଦେଖିଥିଲେ । ଏହିଭଳି ତାଙ୍କର ବହୁ କାର୍ଯ୍ୟକଳାପ ଓଡିଶା ପାଇଁ ଏକ ଉଜ୍ଜ୍ୱଳ ରାଜନୈତିକ ଭବିଷ୍ୟତର ସମ୍ଭାବନା ସୃଷ୍ଟି କରିଥିଲା । ଯାହା ଯୋଗୁଁ ଓଡିଆମାନଙ୍କ ମଧ୍ୟରେ ଏକ ନୂତନ ରାଜନୈତିକ ଚେତନାର ଅଭ୍ୟୁଦୟ ହେଲା । ଯାହା ଫଳରେ ଓଡିଶାର ଏକତ୍ରିକରଣ ଲକ୍ଷ୍ୟ ନେଇ ୧୯୦୩ ମସିହାରେ 'ଉତ୍କଳ ସମ୍ମିଳନୀ' ନାମକ ଏକ ସଂଗଠନ ଗଠନ କରିଥିଲେ । କ୍ରମେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ପାଇଁ ଜନ ଜାଗରଣ ସୃଷ୍ଟି ହେଲା ।

କାହାଣୀର ଲିପି କୋଣାର୍କର ସୁବର୍ଣ୍ଣ ମୁଖଶାଳା ହୋଇ ଗଢିଉଠିଛି । ଯେଉଁଠି ନ୍ୟାୟ ଆଦର୍ଶର ମୃଦୁ କମ୍ପନ ତୋଫାନ ସୃଷ୍ଟି କରୁଛି ।

୧୮୮୦ରୁ ୧୯୩୪ ପର୍ଯ୍ୟନ୍ତ ଦୀର୍ଘ ଯାତ୍ରାର ସେ ଥିଲେ ଅପ୍ରତିଦ୍ୱନ୍ଦ୍ୱୀ ଜନନାୟକ ଓ ଓଡିଶା ଇତିହାସର ନିୟାମକ । ଓଡିଆ ଭାଷା ଓ ଜାତିର ମହାସଂକଟ ବେଳେ ସେ ଧ୍ରୁବତାରା ପରି ମାର୍ଗଦର୍ଶକ ସାଜି 'ତୁ ପରା ବୋଲାଉ ଉତ୍କଳ ସନ୍ତାନ' କବିତା ରଚନା କରିଥିଲେ । ଉତ୍କଳ ସମ୍ମିଳନୀର କବି ବିଚିତ୍ରାନନ୍ଦ ବାରିକଙ୍କ ଭାଷାରେ– ''ଚିଲିକାର ନୀଳ ତରଙ୍ଗ, ବିମଳ ସୁଷମାରେ ଶୋଭିତ ଅଙ୍ଗ, ଭାର୍ଗବୀ ବ୍ରାହ୍ମଣୀ, ସୁବର୍ଣ୍ଣରେଖା, ବୁଢାବଳଙ୍ଗ ମଣି, ମହାନଦୀର କଳ କଳ ରାଗିଣୀ, ମା' ବୀର ପ୍ରସବିନୀ ଉତ୍କଳ ଜନନୀ, କଳା ସଂସ୍କୃତି ଓ ଚିନ୍ମୟୀ ରାଣୀ'' ଶବ୍ଦରେ ଆଜିବି ଇତିହାସ ବୁକୁରେ ସେଦିନର ସେ ସ୍ମୃତି ସଂକଳ୍ପ ଉନ୍ମାଦନା ଆଣେ । ଓଡିଶା ଇତିହାସରେ ମଧୁସୂଦନ ଦାସ ଥିଲେ ଜଣେ ଅଦ୍ୱିତୀୟ ଆଇନଜ୍ଞ, ରାଜନେତା,ସାମାଜିକ ସଂସ୍କାରକ, ଶିକ୍ଷାବିତ୍, କବି ଓ ସ୍ୱାଧୀନତା ସଂଗ୍ରାମୀ । ସେ ଓଡିଶାର କଟକ ଜିଲ୍ଲା ଅନ୍ତର୍ଗତ ସତ୍ୟଭାମାପୁର ଗ୍ରାମରେ ୧୮୪୮ ମସିହା ଅପ୍ରେଲ ୨୮ତାରିଖରେ ଜନ୍ମଲାଭ କରିଥିଲେ । ତାଙ୍କର ପିତାଙ୍କ ନାମ ଚୌଧୁରୀ ରଘୁନାଥ ଦାସ ଓ ମାତାଙ୍କ ନାମ ପାର୍ବତୀ ଦେବୀ ।

ଦୀର୍ଘ ବର୍ଷର ପ୍ରତୀକ୍ଷା ପରେ ଉତ୍କଳ ସମ୍ମିଳନୀର ଅମୂଲ୍ୟ ଅବଦାନ ପାଇଁ ଓଡିଶା ଏକ ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶ ରୂପରେ ୧୯୩୬ ମସିହା ଅପ୍ରେଲ ୧ ତାରିଖରେ ଗଠନ ହୋଇଥିଲା । ଊନବିଂଶ ଶତାବ୍ଦୀର ମଧୁବାବୁ ଜଣେ ଉଜ୍ଜ୍ୱଳ ତାରକା ଭାବରେ ପ୍ରଥମ ଓଡିଆ ଓ ପ୍ରଥମ ଭାରତୀୟ ମନ୍ତ୍ରୀ ଭାବେ ଦୁଇଥର ବିଲାତ ଯାଇ ବିଶ୍ୱରେ ସୁଖ୍ୟାତି ଅର୍ଜନ କରିଥିଲେ । ସଂଗ୍ରାମକେଶରୀ ମଧୁବାବୁଙ୍କୁ ସେ କାଳର ଶିଶୁମାନେ ତାଙ୍କୁ ଆଦର୍ଶ ଭାବି କହୁଥିଲେ– ''ପାଠ ପଢିବି କାଳିଆ ଘୋଡାରେ ଚଢିବି, ମଧୁବାବୁ ସଙ୍ଗେ ଲଢିବି ।'' ତାଙ୍କ ଉଦ୍ଦେଶ୍ୟରେ ଚନ୍ଦ୍ରଶେଖର ମିଶ୍ର ଲେଖିଛନ୍ତି– ''ଜୀବନର ରଣ ଶୁଝି ରଣ ଭୂମେ ଯୁଝି ଯୁଝି ପଡିଗଲା ଶେଷେ ଆଜି ସଂଗ୍ରାମ କେଶରୀ, ତାହାର ଜନମ ମାଟି ଯାଇଅଛି ଆଜି ଫାଟି ମାଆ କୋଳେ ଶେଷେ ବୀର ନେଇଅଛି ବରି ।'' ଓଡିଶା ଇତିହାସରେ ଏକ ଯୁଗାନ୍ତକାରୀ ଆୟ ସୃଷ୍ଟି କରି ୧୯୩୪ ମସିହା ଫେବୃଆରୀ ୪ ତାରିଖରେ ଉତ୍କଳ ଜନନୀଙ୍କ କୋଳରେ ଚିରଦିନ ପାଇଁ ଶୋଇଯାଇଥିଲେ ।

ଯେଉଁମାନଙ୍କର ସ୍ୱପ୍ନ-ସଂକଳ୍ପ-ସଂଗ୍ରାମ ପାଇଁ ମଧୁବାବୁଙ୍କ ସହିତ ଅବଲୁପ୍ତ ଓଡିଆ ଜାତିର ପ୍ରାଣରେ ବୈପ୍ଳବିକ ସ୍ପନ୍ଦନ ସୃଷ୍ଟି କରିଥିଲା ବିଶେଷ କରି ସେମାନଙ୍କ ମଧ୍ୟରେ ଉତ୍କଳମଣି ଗୋପବନ୍ଧୁ ଦାସ, ବ୍ୟାସକବି ଫକୀର ମୋହନ ସେନାପତି, ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ରାମଚନ୍ଦ୍ର ଭଂଜଦେଓ, ରାଜେନ୍ଦ୍ର ନାରାୟଣ ଭଂଜଦେଓ, ପଣ୍ଡିତ ନୀଳକଣ୍ଠ ଦାସ, କବିବର ରାଧାନାଥ ରାୟ, ସ୍ୱଭାବ କବି ଗଙ୍ଗାଧର ମେହେର, କର୍ମବୀର ଗୌରୀଶଙ୍କର, ଡକ୍ଟର ହରେକୃଷ୍ଣ ମହତାବ, କଳିଙ୍ଗ ସମ୍ରାଟ୍ ବିଜୁ ପଟ୍ଟନାୟକ ଓ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ପ୍ରମୁଖଙ୍କ ଅବଦାନକୁ ପବିତ୍ର ଉତ୍କଳ ଦିବସରେ ଶ୍ରଦ୍ଧାର ସହ ସ୍ମରଣ କରୁଛି । ଭବ୍ୟ ଭାରତର ଆତ୍ମା ଓଡିଶା । ଏ ରାଜ୍ୟର ଭାଷା,

ସାହିତ୍ୟ, ସଂସ୍କୃତି, କଳା, ଭାସ୍କର୍ଯ୍ୟ ଲୋକଜୀବନ ସବୁଥିରେ ପ୍ରାଣର ପ୍ରାଚୁର୍ଯ୍ୟ । ଯେଉଁଠି ବନ୍ଦେ ଉତ୍କଳ ଜନନୀ ଦେଶ ବନ୍ଦନାର ସ୍ୱର ଶୁଭେ, ସେଇଠି ହୃଦୟ ଲାଖି ରହେ ।

ଏହି ଲେଖକଙ୍କ ଭାଷାରେ–''ଗାଆଁରୁ ସହର ବନ୍ଦନା ଯା'ର ମହାମାନବ ହେ ଓଡିଆ ଛବି, ସଂଗ୍ରାମ ସିନ୍ଧୁ ପାର ହୋଇ ତୁମେ ଆଶା ଆକାଶର ଦୀପ୍ତରବି । ନବ ଉତ୍କଳର କାରିଗର ତୁମେ ସ୍ୱଦେଶ ପ୍ରେମର ଚିତ୍ରକର, କୋଟି ଓଡିଆର ସ୍ପନ୍ଦିତ କଣ୍ଠେ ବନ୍ଦିତ ହୁଏ ବୀର ଜାତିର ସ୍ନିଗ୍ଧ ନୂପୁର । ମାତୃଭୂମିର ମାତୃଭାଷାରେ ଭରି ଦେଲ ସ୍ନେହ କବିତା ବିଥି । ଉତ୍କଳ ଗଳାରେ ସେ କବିତା ମାଳା ଶିଳାଶିଳ୍ପରେ ଛନ୍ଦାଇ ଦେଲ ଉଚ୍ଚ ଆଶାର ପ୍ରଜ୍ଞାଗୀତି । ଓଡିଆ ବୋହୂଟି ଜାହ୍ନବୀ ସାଜେ କଳିଙ୍ଗ କନ୍ୟା ଆଖ୍ୟା ନେଇ । ଏ ବୀର ଓଡିଆ ବ୍ୟାକୁଳେ ଡାକେ, ଫେରିଆସ ............... ଆହେ ମରଣଜୟୀ ।''

ଆଧୁନିକ ଓଡିଶାର ନିର୍ମାତା, ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ କୁଳବୃଦ୍ଧ ତଥା ଉତ୍କଳର ବରପୁତ୍ର ଉତ୍କଳଗୌରବ ମଧୁସୂଦନ ଦାସ ସାହିତ୍ୟରେ ଜଣେ ଉଚ୍ଚକୋଟୀର ବାଗ୍ମୀ ଥିଲେ ଓ ତାଙ୍କର ଅଗ୍ନିବର୍ଷୀ କବିତା ରସୋତ୍ତୀର୍ଣ୍ଣ ଓ ଭାବନାତ୍ମକ, ଯାହା ଓଡିଆଙ୍କ ମୁହଁରେ ସ୍ରୋତସ୍ୱିନୀ ହୋଇ ବହି ଯାଇଥିଲା ଏବଂ ତାଙ୍କ ଅନୁରୋଧକ୍ରମେ ଆଧୁନିକ ସାହିତ୍ୟର ଯୁଗସ୍ରଷ୍ଟା କବିବର ରାଧାନାଥ ରାୟ ସୁମଧୁର ଲଳିତ ଦେଶାତ୍ମବୋଧକ କବିତା 'ଭାରତ ଗୀତିକା' ରଚନା କରି ଉତ୍କଳ ସମ୍ମିଳନୀ ମଣ୍ଡପରେ ଗାନ କରିଥିଲେ । ମଧୁବାବୁଙ୍କ ଆତ୍ମଜୀବନୀକୁ ନେଇ କଥାଶିଳ୍ପୀ ସୁରେନ୍ଦ୍ର ମହାନ୍ତି 'କୁଳବୃଦ୍ଧ' ଓ 'ଶତାବ୍ଦୀର ସୂର୍ଯ୍ୟ' ପୁସ୍ତକ ରଚନା କରିଥିଲେ, ଯାହା ଓଡିଆ ଜାତିର ବତୀଘର ସଦୃଶ । ଯେଉଁଠି ବିପୁଳ ବିପ୍ଳବର ବ୍ୟାପ୍ତି ଓ ଶାଣିତ ଶବ୍ଦର ଝଙ୍କାରର ଦୀପ୍ତିରେ ଆମେ ବାଣ୍ଟିପାରୁ ହର୍ଷ, ଉଲ୍ଲାସ ଏବଂ ସମ୍ଭାବନା, ସଦ୍‌ଭାବନା ଓ ସମଭାବନାର ନୂଆ ବର୍ଷ । ଏ ମାଟିର କାଳଜୟୀ କୃତି, କୀର୍ତ୍ତି ସ୍ମୃତିର କୋଣାର୍କ, ଯାହାର ପାଣି ପବନରେ ପାରିଜାତ ବାସ୍ନାର ମହକ । ''ମହୁଲ ଫୁଲର ମହକିତ ବାସ ଚମ୍ପାର ଗହନ ବନ, ଶ୍ରାବଣର ଶୀତଳତା ପରଶରେ ଏ ମାଟିର ମନପ୍ରାଣ, ବନ ପରବତ କାନନ ଯାହାର ଚିର ଅମୃତ ଯା' ଜଳ, ମଧୁର ମଳୟ ପରଶରେ ସଦା ଭରିଦିଏ ଦେହେ ବଳ, ଲକ୍ଷେ ସାଗର ଲକ୍ଷେ ବନାନୀ ଦେଖେ ଏ ନିରୀହ ଆଖି । ଏ ଓଠେ ହସରେ ଏ ମନ ଗହୀରେ ସ୍ୱପ୍ନକୁ ହୁଏ ମାଖି ।''

ମଧୁବାବୁଙ୍କ ଭାଷାରେ, ମୁଁ ମୋର ଭାବ ଜାତିକୁ ଦେଇଛି । ତାହା ଗୋଡରେ ମାଡିପାର ବା କଣ୍ଠରେ ଧାରଣ କରିପାର, ତାହା ଜାତିର । ମୋର କୌଣସି ଅଧିକାର ନାହିଁ । ହେ ଉତ୍କଳବାସୀ ତୁମେ ଆଳସ୍ୟ ତ୍ୟାଗ କର । ସାହସ ଓ ଧୈର୍ଯ୍ୟ ଧରି କାମ କରିଯାଅ । ମଧୁବାବୁଙ୍କୁ ଚିର ସ୍ମରଣୀୟ କରିବା ପାଇଁ ଓଡିଶା ସରକାର ମଧୁବାବୁ ପେନସନ୍ ଯୋଜନା କରିଛନ୍ତି । ଯେଉଁମାନେ ଏ ମାଟିର ଜୀବନଧାରାକୁ କରିଛନ୍ତି ଉର୍ବର, ପ୍ରତିଟି ସଂଗ୍ରାମକୁ ତେଜୀୟାନ୍ ଆଉ ନିଜର ରକ୍ତର ବିନିମୟରେ ମୁକ୍ତିର ସୂର୍ଯ୍ୟକୁ କରିଛନ୍ତି ବହ୍ନିମାନ, ସେମାନଙ୍କ ମଧ୍ୟରେ ମଧୁବାବୁ ସର୍ବଦା ଆୟୁଷ୍ମାନ ।

ସମ୍ପାଦକ, ଗୋପବନ୍ଧୁ ସାହିତ୍ୟ ସଂସଦ
ଚାନ୍ଦବାଲି, ଜିଲ୍ଲା–ଭଦ୍ରକ



# ଓଡ଼ିଆ ନବବର୍ଷ
# ମହାବିଷୁବ ପଣା ସଂକ୍ରାନ୍ତି ଓ ଝାମୁଯାତ୍ରା

**କମଳ କୁମାର ରାଉତ**

ଉତ୍କଳ ପ୍ରଦେଶ ଏକ ଦେବଭୂମି ଓ ଏ ଭୂମିର ଆରାଧ୍ୟ ଦେବତା ପ୍ରଭୁ ଶ୍ରୀଜଗନ୍ନାଥ । ଓଡ଼ିଆ ନବବର୍ଷ – ମହାବିଷୁବ ପଣା ସଂକ୍ରାନ୍ତି ଦିନ ପ୍ରଭୁ ଜଗନ୍ନାଥଙ୍କ ପାଦପଦ୍ମରେ ସମର୍ପିତ କରାଯାଇ ଜ୍ୟୋତିଷମାନଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା ପଞ୍ଜିକା ପ୍ରଣୟନ କରାଯାଏ । ଉକ୍ତ ପଞ୍ଜିକା ଓଡ଼ିଆମାନଙ୍କୁ ପର୍ବପର୍ବାଣି, ଓଷାବ୍ରତ, ବିଧିବିଧାନ, ନୀତିନିର୍ଘଣ୍ଟ ବିଷୟରେ ଅବଗତ କରିବା ସହିତ ଜୀବନ ଶୈଳୀକୁ ମଧ୍ୟ ନିୟନ୍ତ୍ରିତ କରିଥାଏ ।

ହିନ୍ଦୁ ଧର୍ମରେ ପୃଥିବୀର କ୍ରାନ୍ତିପଥକୁ ବାର ଭାଗ, ବାର ମାସ ଓ ବାର ରାଶିରେ ବିଭକ୍ତ କରାଯାଇଛି । ଯେଉଁ ରାଶି ସହିତ ବିଷୁବ ରେଖା ସଂଯୁକ୍ତ ହେଉଥିଲା ସେହି ମାସକୁ ରାଶି ଅନୁସାରେ ନାମିତ କରାଯାଉଥିଲା ଓ ସେହି ଦିନକୁ ସଂକ୍ରାନ୍ତି ବା ମାସର ପହିଲା (ପ୍ରଥମ ଦିନ) ଏବଂ ତା'ର ପୂର୍ବଦିନକୁ ମାସାନ୍ତ ବା ଗତମାସର ଶେଷ ଦିନ କୁହାଯାଏ । ମେଷ ରାଶିରେ ବିଷୁବରେଖାର ସଂଯୁକ୍ତ ହେତୁ ବୈଶାଖମାସର ସଂକ୍ରାନ୍ତିଠାରୁ ମେଷ ମାସ ଆରମ୍ଭ ହୁଏ । ଏଣୁ ଏହି ଦିନଟି ବର୍ଷର ପ୍ରଥମ ମାସ ପହିଲା ହୋଇଥିବାରୁ ଓଡ଼ିଆମାନେ ଏହି ଦିନଟିକୁ 'ନବବର୍ଷ' ଭାବରେ ପାଳନ କରିଥାଆନ୍ତି । ଏହି ସଂକ୍ରାନ୍ତି ଦିନ ମେଷ ରାଶିରେ ସୂର୍ଯ୍ୟ ବିଷୁବରେଖା ଉପରେ ଅବସ୍ଥାନ କରିଥିବାରୁ ଏହାକୁ ମଧ୍ୟ ମହାବିଷୁବ ସଂକ୍ରାନ୍ତି କୁହାଯାଏ । ଏହିଦିନଠାରୁ ସୂର୍ଯ୍ୟ ଉତ୍ତରାୟଣ ହୁଅନ୍ତି ଏବଂ ଆମେ ପୃଥିବୀର ଉତ୍ତରଗୋଲାର୍ଦ୍ଧରେ ବସବାସ କରୁଥିବାରୁ ସୂର୍ଯ୍ୟଙ୍କର ଉତ୍ତରାୟଣ କାଳ ଆମମାନଙ୍କ ପାଇଁ ଅତ୍ୟନ୍ତ ପବିତ୍ର ଓ ଦିବ୍ୟ ସମୟ ଅଟେ । ଗୀତାରେ ଉଲ୍ଲେଖ ଅଛି, ସୂର୍ଯ୍ୟଙ୍କର ଉତ୍ତରାୟଣ କାଳରେ ମନୁଷ୍ୟର ମୃତ୍ୟୁ ଘଟିଲେ ସେ ବ୍ରହ୍ମପ୍ରାପ୍ତି ହୁଏ ଅର୍ଥାତ୍ ମୋକ୍ଷଲାଭ କରେ । ପୌରାଣିକ କଥାବସ୍ତୁ ଅନୁସାରେ ଏହିଦିନ ଭଗବାନ ଶ୍ରୀରାମଙ୍କର ରାଜ୍ୟାଭିଷେକ ହୋଇଥିଲା । ଏହିଦିନଠାରୁ ଧର୍ମରାଜ ଯୁଧିଷ୍ଠିରଙ୍କର ସିଂହାସନ ଆରୋହଣ, ଭଗବାନ ଶ୍ରୀକୃଷ୍ଣଙ୍କ ସ୍ୱ ଧାମ ପ୍ରତ୍ୟାବର୍ତ୍ତନ ଓ କଳିଯୁଗ ଆରମ୍ଭ ହୋଇଥିଲା । ମହାରାଜା ବିକ୍ରମାଦିତ୍ୟ ଏହିଦିନ ଶକମାନଙ୍କୁ ପରାସ୍ତ କରି ସିଂହାସନ ଆରୋହଣ କରିଥିଲେ ଏବଂ ଏହିଦିନଠାରୁ ନବରାତ୍ରି ବାସନ୍ତୀ ଦୁର୍ଗାପୂଜା ଆରମ୍ଭ ହୋଇଥାଏ । ପ୍ରଭୁ ଶ୍ରୀରାମଙ୍କ ପରମଭକ୍ତ ହନୁମାନଙ୍କର ଏହିଦିନ ଜନ୍ମତିଥି ହୋଇଥିବାରୁ ହିନ୍ଦୁମାନେ ଏହି ଦିନଟିକୁ ହନୁମାନ ଜୟନ୍ତୀ ଭାବରେ ପବିତ୍ରତାର ସହିତ ପାଳନ କରନ୍ତି । ଏହିଦିନ ଗୌତମ ବୁଦ୍ଧ 'ଦିବ୍ୟଜ୍ୟୋତି' ପ୍ରାପ୍ତ ହୋଇଥିବାରୁ ବୌଦ୍ଧ ଧର୍ମାବଲମ୍ବୀମାନେ ଏହାକୁ ଏକ ବଡ଼ ପର୍ବ ଭାବରେ ପାଳନ କରିଥାଆନ୍ତି । ପଞ୍ଜାବରେ ଏହିଦିନ ପୁରୁଷମାନେ ମୁଣ୍ଡରେ ପଗଡ଼ି ବାନ୍ଧି ଭାଙ୍ଗଡା ନୃତ୍ୟ ଏବଂ ମହିଳାମାନେ ଶିଦ୍ଧା ନୃତ୍ୟ କରନ୍ତି । ଏହିଦିନ ଗୁରୁ ଗୋବିନ୍ଦ ସିଂହ ଆନନ୍ଦପୁର ନିକଟରେ ଥିବା କେଶଗଡ଼ ସାହିବଠାରେ ଖାଲସାପନ୍ଥ ପ୍ରତିଷ୍ଠା କରି ଶିଖ୍ମାନଙ୍କର ଧର୍ମଗୁରୁ ହୋଇଥିଲେ ।

ପ୍ରାୟ ସବୁ ଦେବୀପୀଠରେ ଏହିଦିନ ଚଣ୍ଡୀପାଠ, ହୋମଯଜ୍ଞ କରାଯାଇଥାଏ । ବହୁ ଦୂରଦୂରାନ୍ତରୁ ଲୋକମାନେ ଆସି ଦେବୀଙ୍କୁ ଶାଢି, ଶଙ୍ଖା, ସିନ୍ଦୂର ଆଦି

ଅର୍ପଣ କରି ଭୋଗ ଲଗାନ୍ତି ଓ ନୂତନ ବର୍ଷ ସେମାନଙ୍କର ସୁଖମୟ ହେଉ ବୋଲି ମା'ଙ୍କ ପାଖରେ ମିନତି କରିଥାଆନ୍ତି । ଗ୍ରାମମାନଙ୍କରେ ଥିବା ଗ୍ରାମଦେବତୀଙ୍କ ନିକଟରେ ମଧ୍ୟ କୋଠଭୋଗ, ହୋମ ଓ ପୂଜାର୍ଚ୍ଚନା ହୁଏ । ଗ୍ରାମବାସୀମାନେ ନିଜ ନିଜ ଚଉରାରେ ବସୁନ୍ଧରା କରି ଠେକିରେ ମାସକ ପର୍ଯ୍ୟନ୍ତ ପ୍ରତିଦିନ ପାଣି ଦିଅନ୍ତି, ଯେପରିକି ଟୋପାଟୋପା ପାଣି ତୁଳସୀ ଗଛ ଉପରେ ପଡ଼େ । ଏହିଦିନଠାରୁ ସୂର୍ଯ୍ୟଙ୍କର ତେଜ ବଢି ଚାଲିବାରୁ ଗ୍ରୀଷ୍ମର ପ୍ରକୋପ ମଧ୍ୟ ବୃଦ୍ଧି ପାଏ । ତୃଷ୍ଣା ନିବାରଣ ପାଇଁ ଏହିଦିନ ବେଲ, ଶାକରର ପଣା ଓ ଜଳଛତ୍ର ଦିଆଯାଏ । ତେଣୁ ଏହାକୁ ଓଡ଼ିଆ ଘରେ 'ପଣା ସଂକ୍ରାନ୍ତି' ବୋଲି କହିଥାଆନ୍ତି । ଏହିଦିନ ଗୃହକର୍ତ୍ତାମାନେ ବ୍ରାହ୍ମଣମାନଙ୍କୁ ପଣାଦାନ, ବିଞ୍ଚଣା ଦାନ, ଖାଦ୍ୟ, ଛତୁଆ ଦାନ ଇତ୍ୟାଦି କରାଇ ଦକ୍ଷିଣା ପ୍ରଦାନ ପୂର୍ବକ ଧର୍ମାର୍ଜନ କରିଥାଆନ୍ତି । ବହୁ ଧନୀ ଶ୍ରେଣୀର ଲୋକମାନେ ମଧ୍ୟ ଏହିଦିନ ଭିକାରିମାନଙ୍କୁ ଭୋଜନ ସହିତ ଦକ୍ଷିଣା ଏବଂ ବସ୍ତ୍ରଦାନ କରିଥାଆନ୍ତି ।

ଏହିଦିନ କାକଟପୁର ମା' ମଙ୍ଗଳା, ଝଙ୍କଡ଼ର ମା' ଶାରଳା, ବାଣପୁରର ମା' ଭଗବତୀ, ବାଙ୍କୀର ମା' ଚର୍ଚ୍ଚିକା, ଯାଜପୁରର ମା' ବିରଜା ଆଦି ଶକ୍ତିପୀଠରେ 'ଝାମୁଯାତ୍ରା' ଅନୁଷ୍ଠିତ ହୋଇଥାଏ । ମହାବିଷୁବ ସଂକ୍ରାନ୍ତିର କିଛିଦିନ ପୂର୍ବରୁ ସେବକମାନେ ଦେବୀଙ୍କର ଘଟକୁ ବହନ କରି, କାଠଗୋଡ ପିନ୍ଧି, ଗୋଡ଼ରେ ଘୁଙ୍ଗୁର ବାନ୍ଧି, ରଙ୍ଗବେରଙ୍ଗର ଘାଗରା ପୋଷାକରେ ଗ୍ରାମଗ୍ରାମ ବୁଲି ଘଣ୍ଟ ବଜାଇ ନାଚ କରନ୍ତି । ଏହି ଘଟ ନିକଟରେ ଗ୍ରାମବାସୀମାନେ ଏକତ୍ରିତ ହୋଇ ଭୋଗ ଲଗାନ୍ତି ଏବଂ ଘଟର ସିନ୍ଦୂର ଓ ଫୁଲକୁ ମା'ଙ୍କର ସନ୍ତକ ଭାବରେ ଗ୍ରହଣ କରି ସେବକଙ୍କୁ ଦକ୍ଷିଣା ଦିଅନ୍ତି । କୌଣସି ଦୂରାରୋଗରୁ ମୁକ୍ତ ହେବାପାଇଁ ବା କୌଣସି କାର୍ଯ୍ୟରେ ସଫଳ ହେବା ପାଇଁ ଗ୍ରାମବାସୀମାନେ ସେହି ସମୟରେ ଘଟକୁ ମୁଣ୍ଡିଆ ମାରି ଝାମୁ ଚଲା ପାଇଁ ମାନସିକ କରିଥାଆନ୍ତି । ମହାବିଷୁବ ସଂକ୍ରାନ୍ତି ଦିନ ମା'ଙ୍କର ସମ୍ମୁଖରେ ଦୁଇ ଫୁଟ୍ ଓସାର, ଏକଫୁଟ ଗଭୀର ଓ ବାର ଫୁଟ ଲମ୍ବର ପହି ଖୋଳାଯାଇ ଏହାକୁ ଗୋବରରେ ଲେପନ କରି ଉକ୍ତ ସ୍ଥାନକୁ ଅତି ଶୁଦ୍ଧ କରାଯାଇଥାଏ । ପ୍ରାୟତଃ ମଧ୍ୟାହ୍ନ ସମୟରେ ପହି ଭିତରେ କାଠ କୋଇଲା ଭର୍ତ୍ତି କରି ନିଆଁ ରଡ଼ କରାଯାଏ । କିଛି ସମୟ ଅନ୍ତରରେ ସେହି ରଡ଼ ନିଆଁରେ ଝୁଣା ମଧ୍ୟ ପକାଯାଉଥାଏ । ପହିର ଆରମ୍ଭ ଏବଂ ଶେଷ ମୁଣ୍ଡରେ ଏକ କୁଣ୍ଡରେ ପାଣି ରଖାଯାଇଥାଏ । ଝାମୁରେ ଚାଲିବା ପୂର୍ବରୁ ଏବଂ ପରେ ଗୋଡ଼ ଓଦା କରିବାକୁ ପଡ଼ିଥାଏ । ମାନସିକଧାରୀମାନେ ପାଟ ଘଣ୍ଟୁଆଙ୍କ ନିର୍ଦ୍ଦେଶ ମୁତାବକ 'ଝାମୁଚଲା' ଜଣକ ପରେ ଜଣେ ସମାପନ କରିଥାଆନ୍ତି । ଏହି ସମୟରେ ଘଣ୍ଟ, ବାଜା, ମହୁରୀ ଆଦି ବାଦ୍ୟ ସହିତ ଚଢେୟା ଓ ଚଢେୟାଣୀ ନାଚ ମଧ୍ୟ ଚାଲିଥାଏ । ଉକ୍ତ ସ୍ଥାନଟି ଝୁଣା, ଧୂପ ଓ ଗୁଗୁଳର ବାସ୍ନାରେ ମହକି ଉଠେ । ହୁଳହୁଳି ଓ ଶଙ୍ଖଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହୋଇଉଠେ । ପିଲାଛୁଆଠାରୁ ଆରମ୍ଭ କରି ବୁଢାବୁଢୀ ପର୍ଯ୍ୟନ୍ତ ବହୁ ଲୋକ ସମାବେଶ ହୋଇ ମା'ଙ୍କର କୃପାଲାଭ କରିଥାଆନ୍ତି ।

ପ୍ରକୃତପକ୍ଷେ ବିଚାର କଲେ ଆମେ ଏହି ସିଦ୍ଧାନ୍ତରେ ଉପନୀତ ହେବା ଯେ, ଓଡ଼ିଆଙ୍କର ନବବର୍ଷ ପୌରାଣିକ ଯୁଗରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ କେତେ ଘଟଣାର ଅୟମାରମ୍ଭ, ତାହା ବର୍ଣ୍ଣନାତୀତ ଅଟେ ।

ଘର ନଂ– ୧୨୯୧, ଦ୍ୱିତୀୟ ପର୍ଯ୍ୟାୟ
ଡୁମୁଡୁମା ହାଉସିଂବୋର୍ଡ କଲୋନୀ
ଭୁବନେଶ୍ୱର



# ସନ୍ଥକବି ଭୀମଭୋଇ

ସଚ୍ଚିଦାନନ୍ଦ ବେହେରା

ଆକାଶବାଣୀ କଟକ ବେତାର କେନ୍ଦ୍ରର ସକାଳ ଭକ୍ତି ସଙ୍ଗୀତ ହେଉ ଅଥବା ସନ୍ଧ୍ୟାର ଗ୍ରାମାଞ୍ଚଳର ଖଞ୍ଜଣି ଭଜନ ହେଉ, ଏ ସବୁଥିରେ ସନ୍ଥକବି ଭୀମଭୋଇଙ୍କର ଭଜନ ଶୁଣିବାକୁ ଆମକୁ ଏକ ସ୍ୱତନ୍ତ୍ର ତଥା ନିଆରା ଲାଗେ । ତାଙ୍କର ଭଜନ ଓଡ଼ିଶାବାସୀଙ୍କ ମନକୁ ଯେତିକି ଆନନ୍ଦ ଦେଇଛି, ସେତିକି ନିଷ୍କାମ ଭକ୍ତି, ଆଧ୍ୟାତ୍ମିକତା, ସଂଯମତା, ଶୃଙ୍ଖଳା, ସତ୍ୟ ଓ ଅହିଂସାର ମାର୍ଗକୁ ଯିବା ପାଇଁ ପ୍ରଭାବିତ କରିଛି । ସତ୍ୟ ମହିମା ଧର୍ମକୁ ପ୍ରଚାର ଓ ପ୍ରସାର କରିବା କ୍ଷେତ୍ରରେ କବିଙ୍କ ଏକାନ୍ତ ନିଷ୍ଠା ଓ ସାଧନା ଦ୍ୱାରା ହିଁ ତାହା ସମ୍ଭବ ହୋଇଛି । ଯାହା ଫଳରେ ତାଙ୍କର ସାରସ୍ୱତ ସୃଷ୍ଟିସମ୍ଭାର ଚିରସ୍ମରଣୀୟ ହୋଇ ରହିଛି । କବିଙ୍କର ରଚନାବଳୀ 'ବ୍ରହ୍ମ ନିରୂପଣ ଗୀତା', 'ନିର୍ବେଦ ସାଧନା', 'ସ୍ତୁତି ଚିନ୍ତାମଣି', 'ଭଜନମାଳା', 'ଛାନ୍ଦ', 'ଚଉତିଶା', 'ମାଳିକା' ଆଦି ଅମରକୃତି ଓଡ଼ିଆ ସାହିତ୍ୟର ବାଣୀଭଣ୍ଡାରକୁ ଋଦ୍ଧିମନ୍ତ କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ସତ୍ୟ ମହିମା ଧର୍ମ ମାଧ୍ୟମରେ ଜଗତର ଏହି ଅମ୍ଲାନ ସାହିତ୍ୟ ଆତ୍ମପ୍ରକାଶ କରିଛି । ଏହି ଭାବଧାରାରେ ଅନୁପ୍ରାଣିତ ଅନେକ ଭଜନ ଆମ ଉତ୍କଳର ଧାର୍ମିକ, ସାମାଜିକ, ସାହିତ୍ୟିକ ଓ ସାଂସ୍କୃତିକ ଜନଜୀବନକୁ ଗଭୀର ଭାବରେ ପ୍ରଭାବିତ କରିଛି । ବରେଣ୍ୟ କବି ଭୀମଭୋଇଙ୍କ ରଚନା ଓଡ଼ିଆ ଜାତିର ଇତିହାସରେ ଏକ ଯୁଗାନ୍ତକାରୀ ଅଧ୍ୟାୟ ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗ ୧୮୫୦ ମସିହାରେ ସନ୍ଥକବି ଭୀମଭୋଇ ରେଢ଼ାଖୋଲ ଅଞ୍ଚଳର ଏକ ଦରିଦ୍ର ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ବାଲ୍ୟକାଳରୁ ଦାରିଦ୍ର୍ୟର ତୀବ୍ର କଷାଘାତ ମଧ୍ୟରେ ନିଷ୍ପେଷିତ ହୋଇ କାଳାତିପାତ କରୁଥିଲେ । କବି ତାଙ୍କ ଜୀବନର ଦୁଃଖମୟ ଘଟଣାବଳୀକୁ ନିଜର ଶ୍ରେଷ୍ଠ ରଚନା ''ସ୍ତୁତି ଚିନ୍ତାମଣି'' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ।

ବାସ୍ତବରେ ଦୁଃଖ ସମୟର ଯେଉଁ ଭାବ କବିତାର ରୂପ ନେଇଥାଏ, ତାହା କାଳବକ୍ଷରେ ଅମଳିନ ହୋଇ ରହିଯାଇଥାଏ । ଇଂରାଜୀ କବି ସେଲୀଙ୍କ ଭାଷାରେ, "Our sweetest songs are those that tell of saddest thought".

ଭୀମଭୋଇ ଜଙ୍ଗଲରେ ଗୋରୁ ଚରାଇବା ସମୟରେ ଫଳମୂଳ ଖାଇବା ଏବଂ ଝରଣାର ପାଣି ପିଇ ଭୋକ ଶୋଷ ମେଣ୍ଟାଇବାର ଦୁଃଖ କଷ୍ଟ ତାଙ୍କୁ ବ୍ୟଥିତ କରିଥିଲା । ସେ ତାହା ନିର୍ବିଘ୍ନରେ ସହି ଯାଉଥିଲେ । ତାଙ୍କ ଲେଖାକୁ ତତ୍‌କାଳୀନ କିଛି ଈର୍ଷାପରାୟଣ ଲୋକଙ୍କ ଟାହି ଟାପରା, ନିନ୍ଦା ଓ ଭର୍ତ୍ସନା କବିଙ୍କୁ ଅଧିକ ଦୁଃଖ ଦେଇଛି ସତ, ହେଲେ କବି ସେଥିପ୍ରତି ବିଚଳିତ ହୋଇ ନାହାନ୍ତି କିମ୍ବା ଭାଙ୍ଗି ପଡ଼ି ନାହାନ୍ତି । ନିଜେ ନିଜ ପାଖରେ ପ୍ରତିଶ୍ରୁତିବଦ୍ଧ ହୋଇ ଗ୍ରନ୍ଥ ରଚନା କରିଛନ୍ତି । କାହାର ସ୍ୱୀକୃତିକୁ ଅପେକ୍ଷା ନ କରି ତାଙ୍କର ଆରାଧ୍ୟ ଗୁରୁ ମହିମା ସ୍ୱାମୀଙ୍କ ଚରଣରେ ଆଶ୍ରିତ ହୋଇ କହିଛନ୍ତି, ମୋତେ ଯିଏ ଯେତେ ନିନ୍ଦା ଓ ଭର୍ତ୍ସନା କରିଛନ୍ତି, ତାହା ମୁଁ ମୋ ବେକରେ ମାଳ କରି ପିନ୍ଧିଛି ।

ଏହି କବିତା ପଂକ୍ତିଗୁଡ଼ିକରେ କବିଙ୍କର ବାସ୍ତବ ଜୀବନର ନିଖୁଣ ଚିତ୍ର ଫୁଟି ଉଠିଛି । 'Every poet is a Philosopher' । ପ୍ରତ୍ୟେକ କବି ଜଣେ ଜଣେ ଦାର୍ଶନିକ ଅଟନ୍ତି । କବି ଯେ କେବଳ ତାଙ୍କ ଜୀବନର ଦୁଃଖ ଜଞ୍ଜାଳ କଥାକୁ ପ୍ରକାଶ କରିଛନ୍ତି ତାହା ନୁହେଁ ବରଂ ସଂସାରକୁ ସଜାଡ଼ିବା ପାଇଁ ଏବଂ ଦିଗ୍‌ଦର୍ଶନ ଦେବା ପାଇଁ ଆଧ୍ୟାତ୍ମିକତାର ବାର୍ତ୍ତା ପ୍ରଚାର କରିଛନ୍ତି । ୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷର କରାଳ ଚିତ୍ର ଅତି ଲୋମହର୍ଷଣକାରୀ ଥିଲା । ଅନାହାରରେ ପ୍ରପୀଡ଼ିତ ମଣିଷ ମୃତ୍ୟୁବରଣ କରିବା ଏବଂ ଭୋକ ବିକଳରେ ଗଛର ପତ୍ରକୁ ଖାଇଯିବା ଇତ୍ୟାଦି ଥିଲା ହୃଦୟ ବିଦାରକ ଦୃଶ୍ୟ । ଠିକ୍ ସେତିକିବେଳେ ଅତ୍ୟାଚାରୀ ରାଜା ଓ ଜମିଦାରମାନଙ୍କ ଶୋଷଣ ଓ କଷଣ ପ୍ରଜାମାନଙ୍କୁ ଅଧିକ ବିଚଳିତ କରିଥିଲା, ତାହା ତାଙ୍କ ସାହିତ୍ୟକୃତିକୁ ଯେତିକି ବଳିଷ୍ଠ କରିଛି ସେତିକି ହୃଦୟସ୍ପର୍ଶୀ କରିଛି । କବି ଭୀମଭୋଇ ତାଙ୍କ ଆରାଧ୍ୟ ଗୁରୁ ମହିମା ସ୍ୱାମୀଙ୍କ ନିକଟରେ ଏଭଳି ଭୟଙ୍କର ଦୁଃଖଦୁର୍ଦ୍ଦଶାକୁ ଦୂର କରିବା ପାଇଁ କେତେବେଳେ ଆକୁଳ ନିବେଦନ ଓ ପ୍ରାର୍ଥନା କରିଛନ୍ତି ତ, ଆଉ କେତେବେଳେ ତାଙ୍କ ସାହିତ୍ୟରେ ଅଭିମାନରେ ପ୍ରତିବାଦ ମଧ୍ୟ କରିଛନ୍ତି । କହିଛନ୍ତି ତୁମେ ମହାପ୍ରଭୁ ହୋଇ ସକଳ ବୃଥା ହେଉଛି । ଆପଣ ଜୀବଜଗତ ସମସ୍ତଙ୍କୁ ସୃଷ୍ଟି କରିଛନ୍ତି, ଜନ୍ମ ଦେଇଛନ୍ତି, ଆପଣ ସଂସାରର ମାଲିକ । ପ୍ରଜାମାନଙ୍କୁ ପାଳିବା ଆପଣଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ ।

ମହିମା ସ୍ୱାମୀଙ୍କ ପ୍ରତି କବିଙ୍କର ଏହି ଅଭିମାନ ଓ ବିପ୍ଳବୀୟ ଚିନ୍ତାଧାରା ବେଶ୍ ପ୍ରାଣସ୍ପର୍ଶୀ ହୋଇଛି । କବି ତାଙ୍କର ଗୁରୁ ମହିମା ସ୍ୱାମୀଙ୍କ ନିକଟରେ ପ୍ରକାଶ କରିଛନ୍ତି ଯେ, ଆପଣଙ୍କ ନିର୍ଦ୍ଦେଶ ଅନୁସାରେ ମୁଁ ଲୋକମାନଙ୍କୁ ଯେଉଁ ଉପଦେଶ ଦେଉଛି ଏବଂ ସତ୍ୟ ଅହିଂସା ଓ ଆଧ୍ୟାତ୍ମିକ ବାର୍ତ୍ତା ପ୍ରଚାର ଓ ପ୍ରସାର କରିବାକୁ ଯାଉଛି, ତାହା ମୋ ପାଇଁ ଫଳପ୍ରଦ ନ ହୋଇ ନିନ୍ଦା, ଅପବାଦର ହାଟ ବସି ଯାଉଛି । ତାହା କବିଙ୍କ ଭାଷାରେ ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇଛି ।

କବିଙ୍କ ଲେଖାରେ ଭକ୍ତିଭାବ ଯେପରି ଶାନ୍ତ, ସୁନ୍ଦର ଓ ଶୋଭାମୟ, ପ୍ରତିବାଦର ସ୍ୱର ସେତିକି କଠୋର ଏବଂ ଉପମାର ପ୍ରୟୋଗରେ କବିଙ୍କ କବିତ୍ୱ ଚାତୁରୀ ସରଳ ଓ ସାବଲୀଳ ହୋଇଛି । ମହିମା ସ୍ୱାମୀଙ୍କର ଶ୍ରେଷ୍ଠ ଶିଷ୍ୟ ଭକ୍ତକବି ଭୀମଭୋଇ ସୋନପୁର ଜିଲ୍ଲାର ଖଲିଆପାଲୀଠାରେ ୧୮୯୫ ମସିହା ଶିବ ଚତୁର୍ଦ୍ଦଶୀର ପୁଣ୍ୟତିଥିରେ ଇହଲୀଳା ସମ୍ବରଣ କରିଥିଲେ । ସେଠାରେ କବିଙ୍କର ଏକ ସମାଧି ପୀଠ ରହିଛି । ସେ ଏକାଧାରରେ ଥିଲେ ମାନବବାଦର ପୂଜାରୀ ଏବଂ ମହିମାଧର୍ମର ଉପାସକ । ଜୀବନର ମୂଲ୍ୟ, ବୟସରେ ନଥାଏ, ଥାଏ ସଫଳତାରେ । ଜୀବନକାଳ ଭିତରେ ଯେଉଁ ଯଶ, ଖ୍ୟାତି, ସୁନାମ ସେ ପାଇ ନ ଥିଲେ, ତାହା ତାଙ୍କର ଦେହତ୍ୟାଗ ପରେ ଆପେ ଆପେ ତାଙ୍କ ନାମ ସହିତ ଯୋଡ଼ି ହୋଇଯାଇଛି । ସେ ଥିଲେ ସମାଜ ସଂସ୍କାରକ, ଆଧ୍ୟାତ୍ମିକ ମାର୍ଗର ପଥିକ ଓ ସନ୍ଥକବି ।

ମହିମା ଗୋସ୍ୱାମୀଙ୍କ ପ୍ରତି ଭୀମ ଭୋଇଙ୍କ ପ୍ରଗାଢ଼ ଅନୁରକ୍ତି ହିଁ ତାଙ୍କୁ ସାରସ୍ୱତ ସାଧନାର ଶୀର୍ଷରେ ପହଞ୍ଚାଇ ପାରିଥିଲା । ସେ ଥିଲେ ଜଣେ ନିର୍ଭୀକ ଏବଂ ସ୍ପଷ୍ଟବାଦୀ କବି । ସମାଜର ନିନ୍ଦା ଓ ଅପବାଦକୁ ଖାତିର ନ କରି ମହିମା ଧର୍ମର ଏକନିଷ୍ଠ ଭକ୍ତ ଭାବରେ ପରିଚୟ ସୃଷ୍ଟି କରିଥିଲେ । ତାଙ୍କର ସାରସ୍ୱତ ସାଧନା ଯୁଗେ ଯୁଗେ କାଳଜୟୀ ହୋଇ ରହିଛି ଓ ରହିବ ଏଥିରେ ସନ୍ଦେହ ନାହିଁ । ତାଙ୍କର ଅମରବାଣୀ ଆଜି ବିଶ୍ୱବନ୍ଦିତ । ଯାହା ସମଗ୍ର ବିଶ୍ୱବାସୀଙ୍କୁ ଆକୃଷ୍ଟ କରିଛି ।

ଆଜି ଏହି ମହାନ୍ କବିଙ୍କ ଶ୍ରାଦ୍ଧଦିବସ ଅବସରରେ ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ମୋର ଶ୍ରଦ୍ଧାସୁମନ ଅର୍ପଣ କରୁଛି ।

ସୂଚନା ଅଧିକାରୀ
ଲୋକସମ୍ପର୍କ ଭବନ, ଭୁବନେଶ୍ୱର

# ଏଇ ଆମ ପ୍ରିୟ ଉତ୍କଳ ଭୂଇଁ

ରାଧାନାଥ ଦାସ

ଯା'ର ଗଉରବ-ସଉରଭ ଆଜି
ସବୁରି ପରାଣ ଯାଏରେ ଛୁଇଁ
ସୁଜଳା ସୁଫଳା ଶସ୍ୟ ଶ୍ୟାମଳା
ଏଇ ଆମ ପ୍ରିୟ ଉତ୍କଳ ଭୂଇଁ ।।୧।।
କେଉଁ ପୁଣ୍ୟ ବଳେ ଜନମି ତା' କୋଳେ
ତା' ପାଣି ପବନେ ବଢ଼ିଲୁ ଆମେ
ପାଇ ତା' ସେନେହ ଶରଧା ଆଶିଷ
ଗଢ଼ିଲୁ ନିଜକୁ ଏ ଧରା ଧାମେ ।।୨।।
ପଢ଼ିଲୁ ତା' ଗାଁ ଚାହାଳିରେ ପାଠ
ପହିଲି ଅକ୍ଷର ଚିହ୍ନି ଲେଖିଲୁ
କୁନି କୁନି ଓଠେ ମାଆ ମାଆ ଡାକି
ମାଆଠାରୁ ମାତୃଭାଷା ଶିଖିଲୁ ।।୩।।
କେତେ ଆପଣାର ଭାଷାଟିଏ ସିଏ
ନାଆଁଟି ତାହାର ଅଟେ ଓଡ଼ିଆ
କେଡ଼େ ମଧୁର ଏ ଭାଷାଟି ଆମର
କହିଲେ ଶୁଣିଲେ ଲାଗେ ବଢ଼ିଆ ।।୪।।
ମନ୍ଦିର ମାଳିନୀ, ବିଭବ ଶାଳିନୀ
ବଣ, ପାହାଡ଼ରେ ଭରା ଯା' କୋଳ
ନୀଳାଚଳେ ଯା'ର ବିଜେ ଜଗନ୍ନାଥ
ଏଇ ସେଇ ପୁଣ୍ୟ ଭୂମି ଉତ୍କଳ ।।୫।।
ମନୋଲୋଭା ଯା'ର ଶୋଭାର ସମ୍ଭାର
ଖଣିଜ ସଂପଦ କୋଳେ ସାଇତା
ମନେ ପଡ଼ିଯାଏ ଅତୀତର ସେଇ
ସାଧବ ପୁଅର ବଣିଜ କଥା ।।୬।।
ପାହାଡ଼ି ଝରଣା ଝରିଯାଏ ଯା'ର
ଦୁର୍ଗମ ପଥେ ସଂଗୀତ ଗାଇ
ଭଳି ଭଳି ପକ୍ଷୀ କାକଳୀର ସୁରେ
ତରୁଣ ଅରୁଣ ଆସଇ ଉଇଁ ।।୭।।
କେତେ ଯେ ତଟିନୀ ସର୍ପିଳ ଗତିରେ
ଏ ମାଟିରେ ବହି ଯାଆନ୍ତି ନିତି
କଳକଳ ନାଦେ ଗାଇ ଏ ଜାତିର
ଶାନ୍ତି, ମୈତ୍ରୀ, ପ୍ରଗତି ଗୀତି ।।୮।।
ବନାନୀରେ ଯା'ର ଭରା ଶ୍ୟାମଳିମା
ସୁନାର ଫସଲେ ହସଇ କ୍ଷେତ
ପର୍ବତ ଯା'ର ସବୁଜ ସୁନ୍ଦର
ଦୂରେ ଥାଇ ଚିତ୍ତ ହରଇ ସେତ ।।୯।।
ଶିଳ୍ପୀ ଯାହାର ନିହାଣ ମୁନରେ
ପାଷାଣ ଓଠରେ ଫୁଟାଏ ହସ
ଯେଉଁ ମାଟି ଲୋକ ନୃତ୍ୟ, ଗୀତରେ
ପୂରି ରହିଥାଏ ଆହା କି ରସ ।।୧୦।।
ଯାହାର ଓଡ଼ିଶୀ ନୃତ୍ୟ ଛନ୍ଦରେ
କି ଲାଳିତ୍ୟ ସତେ ରହିଛି ଭରି
ଚମ୍ପୂ, ଛାନ୍ଦ ଆଉ ଓଡ଼ିଶୀ ସଂଗୀତ
ସଭିଙ୍କର ଚିତ୍ତ ନିଅଇ ହରି ।।୧୧।।
ଚିର ଅମଳିନ ଏ ଜାତି ସଂସ୍କୃତି
ବାରମାସେ ଯା'ର ତେରଟି ଯାତ
ପର୍ବପର୍ବାଣିରେ ଦିନ ବିତେ ତା'ର
ଘରେ ଘରେ ପାଳି ଓଷା ଓ ବ୍ରତ ।।୧୨।।
କେତେ ଯେ ସଂଗ୍ରାମୀ କେତେ ବରପୁତ୍ର
କେତେ ବୈଜ୍ଞାନିକ, ଲେଖକ, କବି
କାଳଜୟୀ ହୋଇ ରଖିଗଲେ ଯଶ
ଏ ପୁଣ୍ୟ ଭୂମିରେ ଜନମ ଲଭି ।।୧୩।।
କୋଟି କୋଟି କଣ୍ଠେ ଝରିଯାଏ ଆଜି
ଯେଉଁ ଜନନୀର ବନ୍ଦନା ଗୀତି
ସେଇ ଉତ୍କଳ ଜନନୀ ଚରଣେ
ଏ ଜାତି ଜଣାଏ ତା'ର ପ୍ରଣତି ।।୧୪।।

ପଦ୍ମସାହି
ଆଠଗଡ଼ ଟାଉନ୍, କଟକ
ପିନ୍-୭୫୪୦୨୯

# ସୂଚନା ଓ ଲୋକସମ୍ପର୍କ ବିଭାଗର କାର୍ଯ୍ୟାବଳୀ

ସ୍ମିତା କର

ସୂଚନା ଓ ଲୋକସମ୍ପର୍କ ବିଭାଗ ଜନସାଧାରଣ ଓ ସରକାରଙ୍କ ମଧ୍ୟରେ ସେତୁ ସଦୃଶ କାର୍ଯ୍ୟ କରିଥାଏ । ଏହି ବିଭାଗ ଜନସାଧାରଣଙ୍କୁ ସରକାରଙ୍କ ବିଭିନ୍ନ ଯୋଜନା, ନୀତି ଏବଂ କାର୍ଯ୍ୟକ୍ରମ ସମ୍ପର୍କରେ ପ୍ରଚାର ପ୍ରସାର ଏବଂ ସୂଚନା ପ୍ରଦାନ କରିଥାଏ ତଥା ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମର ସଫଳ ରୂପାୟନ ଦିଗରେ ଜନସହଯୋଗ ସୁନିଶ୍ଚିତ କରିଥାଏ । ରାଜ୍ୟରେ କୋଭିଡ଼ ମହାମାରୀ ସଂକ୍ରମଣର ବ୍ୟାପକତାକୁ ରୋକିବାରେ ସମୟୋପଯୋଗୀ ପ୍ରାକ୍ ପ୍ରସ୍ତୁତି, ପ୍ରତିକାର ବ୍ୟବସ୍ଥା ଏବଂ ସୁପରିଚାଳନା ପାଇଁ ଆମ ରାଜ୍ୟ ସରକାର ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ଉଚ୍ଚ ପ୍ରଶଂସିତ ହୋଇଛନ୍ତି । ରାଜ୍ୟରେ ଘଟିଥିବା ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ, ଜରୁରିକାଳୀନ ପରିସ୍ଥିତି, ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ ସମୟରେ ରାଜ୍ୟ ସରକାରଙ୍କ ସୂଚନା ଓ ଲୋକସମ୍ପର୍କ ବିଭାଗର ପ୍ରତ୍ୟକ୍ଷ ଭୂମିକା ଓ କର୍ମତତ୍ପରତା ଏହି ସମୟରେ ସଦାସର୍ବଦା ଅନସ୍ୱୀକାର୍ଯ୍ୟ ରହିଆସିଛି । ରାଜ୍ୟରେ ସୁଶାସନ ଲକ୍ଷ୍ୟ ରଖି ରାଜ୍ୟ ସରକାରଙ୍କ ୫ 'ଟି' ଆଭିମୁଖ୍ୟ ଆଧାରରେ ଜନକୈନ୍ଦ୍ରିକ ଭିତ୍ତିରେ ସମସ୍ତ କାର୍ଯ୍ୟକ୍ରମର ଶତ ପ୍ରତିଶତ ସଫଳତାକୁ ସୁନିଶ୍ଚିତ କରିବା ପାଇଁ ଏହି ବିଭାଗ କାର୍ଯ୍ୟ କରିଆସୁଛି । ସରକାରୀ ସେବା ବିଷୟରେ ଜନମତ ସଂଗ୍ରହ କରି ଉତ୍ତରଦାୟିତ୍ୱ ବୃଦ୍ଧି କରିବା ଲକ୍ଷ୍ୟରେ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରଣୀତ 'ମୋ ସରକାର' କାର୍ଯ୍ୟକ୍ରମରେ ସୂଚନା ଓ ଲୋକସମ୍ପର୍କ ନିର୍ଦ୍ଦେଶାଳୟ ଏବଂ ଗୀତଗୋବିନ୍ଦ ସଦନ ପଠନାଗାରକୁ ଅନ୍ତର୍ଭୁକ୍ତ କରାଯାଇଛି । ପଠନାଗାରକୁ ଦୈନିକ ଅଧ୍ୟୟନ ପାଇଁ ଆସୁଥିବା ଛାତ୍ରଛାତ୍ରୀ ତଥା ସାଧାରଣ ପାଠକପାଠିକାମାନଙ୍କ ସଂଖ୍ୟା ବୃଦ୍ଧି ପ୍ରତି ଦୃଷ୍ଟି ଦେଇ ବିଭାଗ ପକ୍ଷରୁ ପଠନାଗାରର ନବୀକରଣ କାର୍ଯ୍ୟ ସମ୍ପାଦନ କରାଯାଇ ଏହାର କଳେବର ବୃଦ୍ଧି କରାଯାଇଛି । ବିଭାଗ ଦ୍ୱାରା ପରିଚାଳିତ ଭୁବନେଶ୍ୱରର ଜୟଦେବ ଭବନ ପରିସରରେ ଅବସ୍ଥିତ ଗୀତଗୋବିନ୍ଦ ସଦନ ପଠନାଗାର ସମେତ ରାଜ୍ୟରେ ୮୫ଟି ସୂଚନା କେନ୍ଦ୍ର ଓ ପଠନାଗାର କାର୍ଯ୍ୟ କରୁଛି । ଗୀତଗୋବିନ୍ଦ ସଦନ ପଠନାଗାରକୁ ପ୍ରତ୍ୟହ ଆସୁଥିବା ପାଠକପାଠିକାମାନଙ୍କୁ ସୁବିଧା ଯଥା- ସେମାନଙ୍କ ପାଇଁ ବାରକୋଡ୍ ପରିଚୟପତ୍ର ବ୍ୟବସ୍ଥା, ଇ-କ୍ୟାଟାଲଗିଂ ବ୍ୟବସ୍ଥା ଆଦି ନିମନ୍ତେ କାର୍ଯ୍ୟ ଜାରି ରହିଛି । ବିଭାଗ ଦ୍ୱାରା ପରିଚାଳିତ ଜୟଦେବ ଭବନର ଆଧୁନିକୀକରଣ କରାଯାଇ ସେଠାରେ ପ୍ରତ୍ୟହ ଅନୁଷ୍ଠିତ ହେଉଥିବା ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ ନିମନ୍ତେ ଇ-ବୁକିଂ ବା ଅନ୍‌ଲାଇନ୍ ବ୍ୟବସ୍ଥା ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଇଛି ।

ରାଜ୍ୟ ସରକାରଙ୍କ ୫ 'ଟି' ଆଭିମୁଖ୍ୟକୁ ଆଧାର କରି ସୂଚନା ଓ ଲୋକ ସଂପର୍କ ବିଭାଗର ୬ଟି ସେବା ଯଥା: ଇ-ବିଜ୍ଞାପନ, ଲାଇଭ୍ କମନ ଫିଡ୍, ଡିଜିଟାଲ ଆର୍କାଇଭିଂ, ଡିଜିଟାଲ ନ୍ୟୁଜ୍‌ରୁମ୍, ସୂଚନା ଅଧିକାର ଆଇନ ପୋର୍ଟାଲ୍ 'ଆର୍.ଟି.ଆଇ'.ପୋର୍ଟାଲ୍‌ର ଆଧୁନିକୀକରଣ ଏବଂ ଏଲ୍.ଇ.ଡି ଭିଡିଓ ୱାଲ୍ ଅନ୍ତର୍ଭୁକ୍ତ କରାଯାଇ ବିଭାଗର ରୂପାନ୍ତରୀକରଣ କାର୍ଯ୍ୟ ଦିଗରେ ପଦକ୍ଷେପ ଗ୍ରହଣ କରାଯାଇଛି ।

ରାଜ୍ୟରେ ଅସାଧାରଣ କୋଭିଡ-୧୯ ମହାମାରୀ ସ୍ଥିତିରେ ଏହି ବିଭାଗ ସାଧାରଣ ଜନତାଙ୍କ ହିତ ସାଧନ ନିମନ୍ତେ ଆଇ.ଇ.ସି. ବ୍ୟବସ୍ଥା ବା ସୂଚନା, ଶିକ୍ଷା ଓ ଯୋଗାଯୋଗ ପଦକ୍ଷେପ ଦ୍ୱାରା ମିଶନ ମୋଡ଼ରେ ସୂଚନା

ପ୍ରଦାନ କରିଆସିଛି । ବ୍ୟାପକ ସଚେତନତାମୂଳକ ଅଭିଯାନ ଓ ପ୍ରଚାର ପ୍ରସାର ପଦକ୍ଷେପ ଜରିଆରେ ତୃଣମୂଳ ସ୍ତରରୁ ସାଧାରଣ ଜନତାଙ୍କୁ ଏହି ବିଭାଗ ସୂଚନା ପ୍ରଦାନ କରିବା ସହିତ ସତର୍କ କରିଆସିଛି । ରାଜ୍ୟରେ ଅସାଧାରଣ କୋଭିଡ଼-୧୯ ମହାମାରୀ ସମୟରେ ଗଣମାଧ୍ୟମ ପରିଚାଳନା ରାଜ୍ୟ ସୂଚନା ଓ ଲୋକସମ୍ପର୍କ ବିଭାଗ ପାଇଁ ଏକ ବଡ ଆହ୍ୱାନ ଥିଲା, ଯାହାକୁ ବିଭାଗ ପକ୍ଷରୁ ସଫଳତାର ସହିତ ସଂପାଦନ କରାଯାଇଛି । ଏହି ମହାମାରୀ ସ୍ଥିତିରେ ସୂଚନା ଓ ଲୋକସମ୍ପର୍କ ବିଭାଗ ଦ୍ୱାରା ଲାଇଭ୍ କମନ ଫିଡ୍ ଟେକ୍ନୋଲୋଜି ମାଧ୍ୟମରେ ଗୀତଗୋବିନ୍ଦ ସଦନ ଭୁବନେଶ୍ୱରରୁ ସମସ୍ତ ଗଣମାଧ୍ୟମରେ ପ୍ରେସ୍ କନଫରେନ୍ସର ଏକ ସଙ୍ଗେ ସିଧା ପ୍ରସାରଣ କରାଯାଇଛି । ଅଭୂତପୂର୍ବ ଏହି ମହାମାରୀ ସମୟରେ ରାଜ୍ୟର ସମସ୍ତ ଜନସାଧାରଣଙ୍କୁ ମାସ୍କ ବ୍ୟବହାର, ଶାରୀରିକ ଦୂରତା ବଜାୟ ରଖିବା, ସାନିଟାଇଜର ବ୍ୟବହାର ଓ ବାରଂବାର ହାତ ଧୋଇବା, କୋଭିଡ଼ ସଂକ୍ରାନ୍ତୀୟ ପରୀକ୍ଷା ଆଦି ସଂପର୍କରେ ସଚେତନତାର ବାର୍ତ୍ତା ପ୍ରସାରଣ କରାଯାଇଥିଲା । ସଂଗରୋଧ କେନ୍ଦ୍ର ପରିଚାଳନା, କୋଭିଡ଼ କେୟାର କେନ୍ଦ୍ର, କୋଭିଡ଼ କେୟାର ହୋମ୍, ଅସ୍ଥାୟୀ ଚିକିତ୍ସା କେନ୍ଦ୍ର ପରିଚାଳନା, କୋଭିଡ଼ କଟକଣା କଡାକଡି ଅନୁପାଳନ ସମ୍ପର୍କିତ ନିୟମାବଳୀର ପ୍ରଚାର ଓ ପ୍ରସାର, ଲକ୍‌ଡାଉନ୍, ସଟ୍‌ଡାଉନ ସମୟରେ ବ୍ୟାପକ ଜନସଚେତନତା, ଅଟକି ରହିଥିବା ଶ୍ରମିକମାନଙ୍କ ପ୍ରତ୍ୟାବର୍ତ୍ତନ ସମ୍ପର୍କିତ ସୂଚନା, ଚିକିତ୍ସା ସଂପର୍କିତ ପ୍ଲାଜ୍‌ମା ଥେରାପି ସମ୍ପର୍କରେ ସୂଚନା, କୋଭିଡ଼ ସ୍ଥିତିରେ ଲୋକମାନଙ୍କ ଜୀବନ ଜୀବିକା ନିର୍ବାହ କ୍ଷେତ୍ରରେ ବିଭିନ୍ନ ବିଭାଗ ପକ୍ଷରୁ କାର୍ଯ୍ୟକାରୀ ହେଉଥିବା ଯୋଜନାର କାର୍ଯ୍ୟାନ୍ୱୟନ ସଂପର୍କିତ ସୂଚନା ପ୍ରଦାନ କରାଯାଇ ବ୍ୟାପକ ଜନସଚେତନତା ସୃଷ୍ଟି ଦିଗରେ ସୂଚନା ଓ ଲୋକସମ୍ପର୍କ ବିଭାଗ ପ୍ରମୁଖ ଭୂମିକା ନିର୍ବାହ କରିଥିଲା । ପରବର୍ତ୍ତୀ ସମୟରେ ବିଭାଗ ପକ୍ଷରୁ ସରକାରଙ୍କ କୋଭିଡ଼ ଟିକାକରଣ କାର୍ଯ୍ୟକ୍ରମର ସଫଳତା ନିମନ୍ତେ ପ୍ରଚାର ପ୍ରସାର କାର୍ଯ୍ୟ କରାଯାଇଛି ।

ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀମାନଙ୍କ ସହିତ ଯୋଗାଯୋଗ ରଖାଯାଇ ଜିଲ୍ଲାସ୍ତରରୁ ରାଜ୍ୟସ୍ତର ପର୍ଯ୍ୟନ୍ତ କୋଭିଡ଼ ସଚେତନତାର ବାର୍ତ୍ତା ଡାକବାଜି ଯନ୍ତ୍ର ଦ୍ୱାରା ବ୍ୟାପକ ସଚେତନତା ସୃଷ୍ଟି କରାଯାଇଥିଲା । କୋଭିଡ଼ ସ୍ଥିତିରେ ସୂଚନା ଓ ଲୋକ ସଂପର୍କ ବିଭାଗ ପକ୍ଷରୁ ସ୍ୱତନ୍ତ୍ର ନ୍ୟୁଜ୍ ବୁଲେଟିନ୍ (ଦୃଶ୍ୟଶ୍ରାବ୍ୟ) ପ୍ରସ୍ତୁତ କରାଯାଇ ସାମାଜିକ ଗଣମାଧ୍ୟମରେ ପ୍ରତ୍ୟହ ସଚେତନତା ସୃଷ୍ଟି କରାଯାଇଥିଲା । ଏହି ସମୟରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ପକ୍ଷରୁ କୋଭିଡ଼ ସଚେତନତା ସଂପର୍କିତ ଲୋଗୋ ଏବଂ ପୋଷ୍ଟର ଆଦି ପ୍ରସ୍ତୁତ କରାଯାଇ ଜିଲ୍ଲାମାନଙ୍କୁ ଯୋଗାଇ ଦିଆଯାଇଥିଲା । ବିଭିନ୍ନ ମୋବାଇଲ୍ ନେଟ୍‌ୱର୍କ ଜରିଆରେ କୋଭିଡ଼ ନିୟମାବଳୀର କଡାକଡି ଅନୁପାଳନ ସମ୍ପର୍କିତ ବଲ୍‌କ ମେସେଜ୍ ବଲ୍‌କ ବାର୍ତ୍ତା ମୋବାଇଲ୍ ଫୋନ୍ ଜରିଆରେ ପ୍ରେରଣ କରାଯାଇଥିଲା । ରାଜ୍ୟରେ କୋଭିଡ଼ ମହାମାରୀ ସ୍ଥିତିରେ ମାନ୍ୟବର ସୁପ୍ରିମ୍‌କୋର୍ଟଙ୍କ ନିର୍ଦ୍ଦେଶ ଅନୁଯାୟୀ ପୁରୀ ରଥଯାତ୍ରା-୨୦୨୦ କୋଭିଡ଼ ନିୟମାବଳୀ ଅନୁପାଳନ ପୂର୍ବକ ଶୃଙ୍ଖଳାର ସହିତ ଅନୁଷ୍ଠିତ ହୋଇଥିଲା । ଦୂରଦର୍ଶନ ଏବଂ ସୂଚନା ଓ ଲୋକସମ୍ପର୍କ ବିଭାଗର ମିଳିତ ଉଦ୍ୟମରେ ଶ୍ରୀଗୁଣ୍ଡିଚା ଯାତ୍ରାଠାରୁ ଆରମ୍ଭ କରି ବାହୁଡା ଯାତ୍ରା, ସୁନାବେଶ, ନୀଳାଦ୍ରି ବିଜେ ଆଦି ଗୁରୁତ୍ୱପୂର୍ଣ୍ଣ ନୀତିର ସିଧା ପ୍ରସାରଣ ବିଶ୍ୱବାସୀଙ୍କ ଦର୍ଶନ ନିମନ୍ତେ ଲାଇଭ୍ କମନ୍ ଫିଡ୍ ବ୍ୟବସ୍ଥା ମାଧ୍ୟମରେ ସୁବିଧା କରାଯାଇଥିଲା ।

ରାଜ୍ୟରେ କୋଭିଡ଼-୧୯ ମହାମାରୀ ପରିପ୍ରେକ୍ଷୀରେ ପ୍ରତିଦିନ ସଦ୍ୟତମ ସୂଚନା ଗଣମାଧ୍ୟମକୁ ପ୍ରକାଶନ ଏବଂ ପ୍ରସାରଣ ନିମନ୍ତେ ପ୍ରେରଣ କରାଯାଉଛି । ଏଥିପାଇଁ ବିଭାଗରେ ଏକ ସ୍ୱତନ୍ତ୍ର ନ୍ୟୁଜ୍ ରୁମ୍ କାର୍ଯ୍ୟ କରୁଛି । ଲାଇଭ୍ କମନ୍ ଫିଡ୍ ଜରିଆରେ କୋଭିଡ଼ ସଂକ୍ରାନ୍ତୀୟ ବିବୃତିର ସମସ୍ତ ଫଟୋ ଓ ଭିଡିଓ ଆଦିକୁ ଭବିଷ୍ୟତ ଆବଶ୍ୟକତାକୁ ଦୃଷ୍ଟିରେ ରଖି ବିଭାଗ ପକ୍ଷରୁ ସଂରକ୍ଷଣ କରାଯାଉଛି । ସାମାଜିକ ଗଣମାଧ୍ୟମକୁ ଅଧିକ ଗୁରୁତ୍ୱ ଦିଆଯାଇ ବିଭାଗ ପକ୍ଷରୁ ଫେସ୍‌ବୁକ୍, ଟ୍ୱିଟର, ୟୁଟ୍ୟୁବ୍‌ରେ ନିୟମିତ ବିଭାଗୀୟ କାର୍ଯ୍ୟକ୍ରମ, ରାଜ୍ୟ ସରକାରଙ୍କ ପ୍ରମୁଖ ଜନହିତକାରୀ ବିକାଶମୂଳକ କାର୍ଯ୍ୟକ୍ରମ ଓ ଯୋଜନା ଆଦିର ସୂଚନା ଏବଂ ସଚେତନତା ବାର୍ତ୍ତା ପ୍ରଚାର ଓ ପ୍ରସାରଣ କରାଯାଉଛି । ବିଭାଗର ନିଜସ୍ୱ ପୋର୍ଟାଲ ଇ-ସମାଚାର ଜରିଆରେ ରାଜ୍ୟ ସରକାରଙ୍କ ବିଭିନ୍ନ ବିଭାଗରେ କାର୍ଯ୍ୟରତ ସୂଚନା ଅଧିକାରୀମାନଙ୍କ ପକ୍ଷରୁ ନିୟମିତ ବିଭିନ୍ନ ଗଣମାଧ୍ୟମକୁ ସମାଚାର ପ୍ରସାରଣ ଓ ପ୍ରକାଶନ ନିମନ୍ତେ ସୂଚନା ପ୍ରେରଣ କରାଯାଉଛି ।

ରାଜ୍ୟରେ ଘଟିଯାଇଥିବା ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ ଯଥା ଫାଇଲିନ୍, ଫନି ଅଥବା ବନ୍ୟା ବିପ୍ଳାତ ଆଦି ଦୈବୀ ଦୁର୍ବିପାକ ସମୟରେ ସାଧାରଣ ଜନତାଙ୍କୁ ସତର୍କ ଓ ସଜାଗ ରହିବା ନିମନ୍ତେ ସଚେତନତା ସୃଷ୍ଟି ଦିଗରେ ବିଭାଗ ପକ୍ଷରୁ ଯୁଦ୍ଧକାଳୀନ ଭିତ୍ତିରେ ସଦାସର୍ବଦା କାର୍ଯ୍ୟ ସମ୍ପାଦନ ହୋଇଥାଏ । ପ୍ରଳୟଙ୍କରୀ ବନ୍ୟା, ମହାବାତ୍ୟା ଆଦି ବିପର୍ଯ୍ୟୟ ସମୟରେ ଲୋକଙ୍କୁ ନିରାପଦ ସ୍ଥାନକୁ ସ୍ଥାନାନ୍ତର ନିମନ୍ତେ ଜରୁରିକାଳୀନ ସୂଚନା, ଉଦ୍ଧାର ଓ ରିଲିଫ୍ କାର୍ଯ୍ୟ ସମ୍ପର୍କିତ ତଥ୍ୟ ଗଣମାଧ୍ୟମକୁ ପ୍ରଦାନ, କ୍ଷୟକ୍ଷତି ଆକଳନ ବିବରଣୀ ତଥା ସଦ୍ୟତମ ସ୍ଥିତି ସମ୍ପର୍କିତ ସୂଚନା ପ୍ରଦାନ ଦିଗରେ ମଧ୍ୟ ବିଭାଗର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଆସିଛି । ରାଜ୍ୟରେ ପ୍ରଚଣ୍ଡ ରୌଦ୍ରତାପ ଓ ଅଂଶୁଘାତ ସମୟରେ ବିଭାଗ ପକ୍ଷରୁ ଜରୁରିକାଳୀନ ୨୪ ଘଣ୍ଟିଆ ନିୟନ୍ତ୍ରଣ କକ୍ଷ ଖୋଲାଯାଇ ସରକାରଙ୍କ ବିଭିନ୍ନ ବିଭାଗ ସହ ଯୋଗାଯୋଗ ରକ୍ଷା ଦ୍ୱାରା ଗଣମାଧ୍ୟମକୁ ସୂଚନା ପ୍ରଦାନ କରାଯାଇଥାଏ ।

ସୂଚନା ଓ ଲୋକସମ୍ପର୍କ ବିଭାଗ ପକ୍ଷରୁ ପ୍ରତିବର୍ଷ ଜାତୀୟ ଦିବସ, ରାଜ୍ୟସ୍ତରୀୟ ଓଡିଶା ଦିବସ ସମେତ ମୋଟ ୪୪ଟି ଦିବସ ଏବଂ ଉତ୍ସବ ପାଳନ କରାଯାଉଛି । ନୂଆଦିଲ୍ଲୀର ପ୍ରଗତି ମଇଦାନଠାରେ ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳାରେ ମଧ୍ୟ ସୂଚନା ଓ ଲୋକସମ୍ପର୍କ ବିଭାଗ ଯୋଗଦେଇ ଆସୁଛି । ପବିତ୍ର ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ନୂଆଦିଲ୍ଲୀରେ ଆୟୋଜିତ ଜାତୀୟସ୍ତରୀୟ ପରେଡ୍‌ରେ ବିଭାଗ ପକ୍ଷରୁ ପ୍ରଜ୍ଞାପନ ମେଢ ମଧ୍ୟ ଅଂଶଗ୍ରହଣ କରିଥାଏ । ବିଭାଗ ପକ୍ଷରୁ ପ୍ରସ୍ତୁତ ଓଡ଼ିଶା ଟାବ୍ଲୋ ବା ପ୍ରଜ୍ଞାପନ ମେଢ ନୂଆଦିଲ୍ଲୀରେ ଆୟୋଜିତ ସାଧାରଣତନ୍ତ୍ର ଦିବସ–୨୦୨୦ ପରେଡରେ ଦ୍ୱିତୀୟ ପୁରସ୍କାର ହାସଲ କରି ରାଜ୍ୟକୁ ଗୌରବାନ୍ୱିତ କରିବା ସଙ୍ଗେ ସଙ୍ଗେ ଆମ ରାଜ୍ୟର ସାଂସ୍କୃତିକ ଟ୍ରୁପ୍ ମଧ୍ୟ ପ୍ରଥମ ପୁରସ୍କାର ବିଜେତା ହେବାର ସୌଭାଗ୍ୟ ଅର୍ଜନ କରିଛନ୍ତି । ରାଜ୍ୟରେ କୋଭିଡ୍ କଟକଣା ଅନୁପାଳନ ଯୋଗୁଁ ବିଭାଗ ପକ୍ଷରୁ ଭର୍ଚୁଆଲ୍ ବ୍ୟବସ୍ଥାରେ ଜାତୀୟ ପ୍ରେସ୍ ଦିବସ, ରାଜ୍ୟସ୍ତରୀୟ ବିଭିନ୍ନ ବରପୁତ୍ରମାନଙ୍କର ଜୟନ୍ତୀ ଏବଂ ଶ୍ରାଦ୍ଧ ଦିବସ ପାଳନ କରାଯାଇଛି । କୋଭିଡ଼ କଟକଣା କୋହଳ ହେବା ପରେ ବର୍ତ୍ତମାନ ବିଭିନ୍ନ ରାଜ୍ୟସ୍ତରୀୟ ଉତ୍ସବ ଉଭୟ ମଂଚ ଓ ଭର୍ଚୁଆଲ୍ ବ୍ୟବସ୍ଥାରେ ପାଳନ ହେଉଛି । ସୂଚନା ଓ ଲୋକ ସଂପର୍କ ବିଭାଗ ପକ୍ଷରୁ ରାଜ୍ୟ ସ୍ତରୀୟ ସ୍ୱାଧୀନତା ଦିବସ–୨୦୨୦, ରାଜ୍ୟ ସ୍ତରୀୟ ସାଧାରଣତନ୍ତ୍ର ଦିବସ–୨୦୨୧ ଭଳି ଗୁରୁତ୍ୱପୂର୍ଣ୍ଣ ଜାତୀୟ ଦିବସ ପାଳନର ସିଧା ପ୍ରସାରଣ ବ୍ୟବସ୍ଥା ସମସ୍ତ ଗଣମାଧ୍ୟମରେ ଲାଇଭ୍ କମନ ଫିଡ୍ ଟେକ୍‌ନୋଲୋଜି ଜରିଆରେ କରାଯାଇଥିଲା । ବିଭାଗ ପକ୍ଷରୁ ବିଭିନ୍ନ ରାଜ୍ୟସ୍ତରୀୟ ଜୟନ୍ତୀ ପାଳନ ପରିପ୍ରେକ୍ଷୀରେ ବିଦ୍ୟାଳୟ ଏବଂ ମହାବିଦ୍ୟାଳୟ ସ୍ତରୀୟ ଛାତ୍ରଛାତ୍ରୀଙ୍କ ମଧ୍ୟରେ ବକ୍ତୃତା, ଚିତ୍ରାଙ୍କନ ଆଦି ପ୍ରତିଯୋଗିତା ଆୟୋଜନ କରାଯାଇ କୃତି ପ୍ରତିଯୋଗୀମାନଙ୍କୁ ଉତ୍ସବ ଅବସରରେ ପୁରସ୍କୃତ କରାଯାଏ ।

ବିଭାଗ ପକ୍ଷରୁ ସ୍ୱତନ୍ତ୍ର ଭାବେ ରାଜ୍ୟ ତଥା ଜିଲ୍ଲାସ୍ତରୀୟ ପ୍ରଦର୍ଶନୀ ଆୟୋଜନ କରାଯାଇଥାଏ । ଗ୍ରାମାଂଚଳ ଏବଂ ସହରାଂଚଳରେ ବିଭାଗ ପକ୍ଷରୁ ଆୟୋଜିତ ପ୍ରଦର୍ଶନୀରେ ରାଜ୍ୟ ସରକାରଙ୍କର ପ୍ରମୁଖ ଜନହିତକାରୀ ଯୋଜନା ଏବଂ କାର୍ଯ୍ୟକ୍ରମର ବ୍ୟାପକ ପ୍ରଚାର ପ୍ରସାର ଏବଂ ଜନସଚେତନତା ସୃଷ୍ଟି ଦିଗରେ ବିଶେଷ ପଦକ୍ଷେପ ଗ୍ରହଣ କରାଯାଉଛି । ବିଭାଗ ପକ୍ଷରୁ ମହାତ୍ମା ଗାନ୍ଧୀଙ୍କ ୧୫୦ତମ ଜନ୍ମଜୟନ୍ତୀ ଉତ୍ସବ ପାଳନ ପରିପ୍ରେକ୍ଷୀରେ ରାଜ୍ୟସ୍ତରୀୟ ସ୍ୱାଧୀନତା ଦିବସ–୨୦୧୯ ପାଳନ ଅବସରରେ ମହାତ୍ମା ଗାନ୍ଧୀଙ୍କ ଜୀବନୀ ସମ୍ପର୍କିତ ଫଟୋଚିତ୍ର ଏବଂ ସ୍ମୃତି ସମ୍ବଳିତ ସାମଗ୍ରୀର ବୃହତ୍ ପ୍ରଦର୍ଶନୀ ଭୁବନେଶ୍ୱରସ୍ଥିତ ପ୍ରଦର୍ଶନୀ ପଡିଆରେ ଆୟୋଜିତ ହୋଇଥିଲା । ପରବର୍ତ୍ତୀ ସମୟରେ କୋଭିଡ଼ ସ୍ଥିତି ଯୋଗୁଁ ରାଜ୍ୟ ତଥା ଜିଲ୍ଲାସ୍ତରୀୟ ପ୍ରଦର୍ଶନୀ ଆୟୋଜନ ନେଇ କଟକଣା ଲାଗୁ କରାଯାଇଥିଲା । ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ଆଦିବାସୀ ପ୍ରଦର୍ଶନୀ ପଡିଆରେ ଆଦିବାସୀ ମେଳା–୨୦୨୧ ପରିପ୍ରେକ୍ଷୀରେ ବିଭାଗ ପକ୍ଷରୁ ସ୍ୱତନ୍ତ୍ର ପ୍ରଦର୍ଶନୀଆୟୋଜିତ ହୋଇଥିଲା । ତତ୍‌ସହିତ ମାର୍ଚ୍ଚ ୫ ତାରିଖରେ ପଂଚାୟତିରାଜ ଓ ଲୋକସେବା ଦିବସ ଉପଲକ୍ଷେ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ଜୀବନୀ ଉପରେ ଆଧାରିତ ଫଟୋଚିତ୍ର ପ୍ରଦର୍ଶନୀ ମଧ୍ୟ ଆୟୋଜିତ ହୋଇଥିଲା ।

ରାଜଧାନୀ ନୂଆଦିଲ୍ଲୀର ଓଡିଶା ଭବନ ସମେତ ରାଜ୍ୟର ୫୦ଟି ପ୍ରମୁଖ ସ୍ଥାନରେ ଡିଜିଟାଲ୍ ଭିଡିଓ ୱାଲ୍ ସ୍ଥାପନ ବ୍ୟବସ୍ଥା ନିମନ୍ତେ ବିଭାଗ ପକ୍ଷରୁ ପ୍ରସ୍ତାବ ରହିଛି ।

ସୂଚନା, ଶିକ୍ଷା ଓ ଯୋଗାଯୋଗ (ଆଇ.ଇ.ସି) ବ୍ୟବସ୍ଥା ଜରିଆରେ ଏହି ବିଭାଗ ପକ୍ଷରୁ ସରକାରଙ୍କ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ ଏବଂ ଯୋଜନାର ସଫଳ ପ୍ରଚାର ପ୍ରସାର ନିମନ୍ତେ ରାସ୍ତା ପାର୍ଶ୍ୱରେ ହୋର୍ଡିଂ ସ୍ଥାପନ କରାଯାଉଛି । ତୃଣମୂଳ ସ୍ତରରେ ଗ୍ରାମାଂଚଳରୁ ଆରମ୍ଭ କରି ସହରାଂଚଳ ପର୍ଯ୍ୟନ୍ତ ସାଧାରଣ ଜନତାଙ୍କ ମଧ୍ୟରେ ସଚେତନତା ଓ ସତର୍କତା ସୃଷ୍ଟି ଦିଗରେ ବିଭାଗ ପକ୍ଷରୁ ପାରମ୍ପରିକ ଲୋକକଳା ଯଥା: ପାଲା, ଦାସକାଠିଆ, ଘୋଡାନାଚ, ପଥପ୍ରାନ୍ତ ନାଟକ ଜରିଆରେ ରାଜ୍ୟ ସରକାରଙ୍କ ବିଭିନ୍ନ ଜନକଲ୍ୟାଣକାରୀ ଯୋଜନାର ବାର୍ତ୍ତା ପ୍ରଚାର ପ୍ରସାର କରାଯାଉଛି । ପ୍ରଚାରପତ୍ର, ଲିଫ୍‌ଲେଟ୍, କ୍ଷୁଦ୍ର ପୁସ୍ତିକା, ରେଡିଓ ଜିଙ୍ଗଲ୍‌ସ, ଟି.ଭି.ସ୍ପଟ୍‌ସ, ସ୍କ୍ରୋଲ୍ ଏବଂ ଉପାଦେୟ ପୁସ୍ତିକା 'ଆଇନା' ଆଦି ଜରିଆରେ ମଧ୍ୟ ରାଜ୍ୟ ସରକାରଙ୍କ ପ୍ରଚାର ପ୍ରସାର କାର୍ଯ୍ୟକ୍ରମ ସୁଚାରୁରୂପେ କରାଯାଉଛି । ଜିଲ୍ଲା ପ୍ରଶାସନ ସହ ଯୋଗାଯୋଗ ରକ୍ଷା ଦ୍ୱାରା ବ୍ଲକ୍‌ଠାରୁ ଆରମ୍ଭ କରି ଉପଖଣ୍ଡ, ଜିଲ୍ଲା ଏବଂ ରାଜ୍ୟସ୍ତର ପର୍ଯ୍ୟନ୍ତ ସରକାରଙ୍କ ବିଭିନ୍ନ ଜନକଲ୍ୟାଣକାରୀ କାର୍ଯ୍ୟକ୍ରମର ସଫଳ ପ୍ରଚାର ପ୍ରସାର କରାଯାଉଛି । ବିଭାଗ ପକ୍ଷରୁ ରାଜ୍ୟ ସରକାରଙ୍କ ପ୍ରମୁଖ ବିକାଶମୂଳକ ଯୋଜନା, କାର୍ଯ୍ୟକ୍ରମ, ସଚେତନତା ବାର୍ତ୍ତା ଆଦି ଜାତୀୟ ଏବଂ ଆଂଚଳିକ ଦୂରଦର୍ଶନ ଚାନେଲ, ଆକାଶବାଣୀ ଏବଂ ଏଫ୍.ଏମ୍. ରେଡିଓ ଚାନେଲରେ ପ୍ରସାରଣ କରାଯାଉଛି ।

ବିଭାଗ ପକ୍ଷରୁ ବିଭିନ୍ନ ଜନକଲ୍ୟାଣକାରୀ ଯୋଜନା ସଂପର୍କିତ ସଫଳ କାହାଣୀ ଉପରେ ଆଧାରିତ ନିଜସ୍ୱ ପ୍ରସ୍ତୁତ ଟେଲି ମାଗାଜିନ୍ 'ଆମ କଥା, ଓଡିଶା କଥା' ଏବଂ 'ବିକାଶର ନବଦିଗନ୍ତ' ଆଂଚଳିକ ଦୂରଦର୍ଶନ କେନ୍ଦ୍ର ଜରିଆରେ ପ୍ରସାରଣ କରାଯାଉଛି । କୋଭିଡ଼ ସ୍ଥିତିରେ ଏହି କାର୍ଯ୍ୟକ୍ରମ ପ୍ରସ୍ତୁତି ବନ୍ଦ ରହିଥିବା ବେଳେ ବର୍ତ୍ତମାନ ଏହାର ପୁନଃ ପ୍ରସାରଣ କାର୍ଯ୍ୟ ଆରମ୍ଭ ହୋଇଛି ।

ରାଜ୍ୟରେ କାର୍ଯ୍ୟରତ ସାଂବାଦିକମାନଙ୍କ କଲ୍ୟାଣ ସ୍ୱରୂପ ରାଜ୍ୟ ସରକାର ସାଂବାଦିକ କଲ୍ୟାଣ ପାଣ୍ଠି ଜରିଆରେ ଆର୍ଥିକ ସହାୟତା ପ୍ରଦାନ କରୁଛନ୍ତି । ଓଡିଶାରେ କାର୍ଯ୍ୟରତ ସାଂବାଦିକ କଲ୍ୟାଣ ନିୟମାବଳୀ-୨୦୦୬ରେ ସଂଶୋଧନ ଅଣାଯାଇ ଓଡିଶା କାର୍ଯ୍ୟରତ ସାଂବାଦିକ କଲ୍ୟାଣ ନିୟମାବଳୀ-୨୦୨୦ କାର୍ଯ୍ୟକାରୀ କରାଯାଇଛି । ଏହାଦ୍ୱାରା ସାମ୍ବାଦିକମାନଙ୍କୁ ଅଧିକ ସୁବିଧା ପ୍ରଦାନ କରାଯାଉଛି । ରାଜ୍ୟ ସରକାର କାର୍ଯ୍ୟରତ ସାମ୍ବାଦିକମାନଙ୍କର ଜରୁରିକାଳୀନ ଚିକିତ୍ସା ସେବା ଓ ସହାୟତା ନିମନ୍ତେ ସାମ୍ବାଦିକ ତଥା ସେମାନଙ୍କ ପରିବାରବର୍ଗଙ୍କ ନିମନ୍ତେ ଗୋପବନ୍ଧୁ କର୍ମଜୀବୀ ସାମ୍ବାଦିକ ସ୍ୱାସ୍ଥ୍ୟବୀମା ଯୋଜନା କାର୍ଯ୍ୟକାରୀ କରିଛନ୍ତି । ଅଦ୍ୟାବଧି ଏଥିରେ ୬୯୪୪ ଜଣ କାର୍ଯ୍ୟରତ ସାମ୍ବାଦିକ ଓ ସେମାନଙ୍କ ପରିବାରକୁ ଅନ୍ତର୍ଭୁକ୍ତ କରାଯାଇଛି । ଓଡିଶା ପ୍ରେସ୍ ଆକ୍ରିଡିଟେସନ୍ ରୁଲ୍ ୧୯୯୪ ଅନୁଯାୟୀ ସ୍ୱତନ୍ତ୍ର କମିଟି ଦ୍ୱାରା ରାଜ୍ୟରେ ସାଂବାଦିକମାନଙ୍କ ଅଧିସ୍ୱୀକୃତି ପ୍ରଦାନ କରାଯାଉଛି । କୋଭିଡ଼ରେ ମୃତ୍ୟୁବରଣ କରିଥିବା କାର୍ଯ୍ୟରତ ସାମ୍ବାଦିକଙ୍କ ପରିବାରଙ୍କୁ ୧୫ ଲକ୍ଷ ଟଙ୍କାର ଅନୁକମ୍ପାମୂଳକ ଆର୍ଥିକ ସହାୟତା ରାଶି ରାଜ୍ୟ ସରକାରଙ୍କ ପକ୍ଷରୁ ଏହି ବିଭାଗ ଜରିଆରେ ପ୍ରଦାନ କରାଯାଉଛି ।

ସୂଚନା ଓ ଲୋକସମ୍ପର୍କ ବିଭାଗ ପକ୍ଷରୁ ରାଜ୍ୟ ସରକାରଙ୍କ ମାସିକ ମୁଖପତ୍ର ଉତ୍କଳ ପ୍ରସଙ୍ଗ ଏବଂ ଓଡିଶା ରିଭ୍ୟୁ ନିୟମିତ ପ୍ରକାଶ ପାଉଛି । ଓଡିଶାର କଳା, ସଂସ୍କୃତି, ପରଂପରା ଏବଂ ବିଭିନ୍ନ ସରକାରୀ ଯୋଜନା ସମ୍ବନ୍ଧିତ ଲେଖା ଉକ୍ତ ମୁଖପତ୍ରରେ ପ୍ରକାଶ ପାଇଥାଏ । ଏହା ବ୍ୟତୀତ ଓଡିଆ ଭାଷାର ପ୍ରଚାର ପ୍ରସାର ନିମନ୍ତେ ଅପ୍ରେଲ ମାସରେ ଏହି ମୁଖପତ୍ର ଦ୍ୱୟର ସ୍ୱତନ୍ତ୍ର ସଂଖ୍ୟା, ରଥଯାତ୍ରା ସ୍ୱତନ୍ତ୍ର ବିଶେଷାଙ୍କ ଏବଂ ଏହାର ଅନ୍ୟାନ୍ୟ ସ୍ୱତନ୍ତ୍ର ସଂସ୍କରଣ ମଧ୍ୟ ପ୍ରକାଶ ପାଇଥାଏ । ଅନ୍‌ଲାଇନ୍ ପାଠକମାନଙ୍କ ସୁବିଧା ନିମନ୍ତେ ଉତ୍କଳ ପ୍ରସଙ୍ଗ ଏବଂ ଓଡିଶା ରିଭ୍ୟୁର ଡିଜିଟାଲ ସଂସ୍କରଣ ବ୍ୟବସ୍ଥା କରାଯାଇଛି ।

ବିଭାଗ ପକ୍ଷରୁ ଓଡିଶା ରେଫରେନ୍ସ ଆନୁଆଲ (ଉଭୟ ଓଡିଆ ଏବଂ ଇଂରାଜୀ ଭାଷାରେ) ୨ ବର୍ଷରେ ଥରେ ପ୍ରକାଶିତ ହୋଇଥାଏ । ସେହିପରି ନିର୍ବାଚନ ସମୟରେ ଗଣମାଧ୍ୟମ ଓ ବିଭିନ୍ନ ଦଳୀୟ ପ୍ରତିନିଧିମାନଙ୍କୁ ସୂଚନା ପ୍ରଦାନ ନିମନ୍ତେ ବିଭାଗ ପକ୍ଷରୁ 'ଇଲେକ୍ସନ ବ୍ୟାକ୍ ଗ୍ରାଉଣ୍ଡର' ପୁସ୍ତକ ପ୍ରକାଶ ପାଇଥାଏ । ବିଧାନସଭା ବିବରଣୀର ରେକର୍ଡିଂ, ବିଭିନ୍ନ ସରକାରୀ ତଥା ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମରେ ଡାକବାଜି ଯନ୍ତ୍ର ବ୍ୟବସ୍ଥା, ଓଡ଼ିଶାର ମାନ୍ୟବର ରାଜ୍ୟପାଳଙ୍କ ବଜେଟ୍ ଅଭିଭାଷଣର ଓଡିଆ

ଅନୁବାଦ ଆଦି କାର୍ଯ୍ୟ ମଧ୍ୟ ବିଭାଗ ପକ୍ଷରୁ ସଂପାଦିତ ହୋଇଥାଏ ।

ରାଜ୍ୟ ସରକାରଙ୍କ ପ୍ରମୁଖ ବିକାଶମୂଳକ ଯୋଜନା ଓ କାର୍ଯ୍ୟକ୍ରମଗୁଡିକର ଶୁଭାରମ୍ଭ ଓ କାର୍ଯ୍ୟକାରିତା ନେଇ ବ୍ୟାପକ ଜନସେଚନତା ସୃଷ୍ଟି ଉଦ୍ଦେଶ୍ୟରେ ବିଭାଗ ପକ୍ଷରୁ ବିଭିନ୍ନ ସମ୍ବାଦପତ୍ରଗୁଡିକୁ ବିଜ୍ଞାପନ ପ୍ରେରଣ କରାଯାଉଛି । ଏହା ବ୍ୟତୀତ ସମସ୍ତ ସରକାରୀ ଟେଣ୍ଡର ବିଜ୍ଞପ୍ତି, ନିଯୁକ୍ତି ସଂବନ୍ଧୀୟ ବର୍ଗୀକୃତ ବିଜ୍ଞାପନ ଏବଂ ଭୂ-ଅଧିଗ୍ରହଣ ସଂପର୍କିତ ବିଜ୍ଞାପନଗୁଡିକ ମଧ୍ୟ ବିଭାଗ ପକ୍ଷରୁ ଦୈନିକ ସଂବାଦପତ୍ରରେ ନିୟମିତ ପ୍ରକାଶ କରାଯାଉଛି । ବିଭାଗ ପକ୍ଷରୁ ବିଭିନ୍ନ ସରକାରୀ କାର୍ଯ୍ୟାଳୟରୁ ଅନ୍‌ଲାଇନ୍ ବିଜ୍ଞାପନ (ପ୍ରିଣ୍ଟ ମିଡିଆ) ଗ୍ରହଣ କରାଯାଇ ପ୍ରକାଶନ ପାଇଁ ବ୍ୟବସ୍ଥା କରାଯାଇଛି । ସେହିପରି ଇଲେକ୍‌ଟ୍ରୋନିକ୍ସ ମିଡିଆ ନିମନ୍ତେ ଅନ୍ ଲାଇନ୍ ବିଜ୍ଞାପନ ଗ୍ରହଣ ଏବଂ ପ୍ରସାରଣର ବ୍ୟବସ୍ଥା ଗ୍ରହଣ କରାଯାଇଛି । ରାଜ୍ୟ ସରକାରଙ୍କ ବିଜ୍ଞାପନ ନୀତି -୧୯୯୮ ଅନୁଯାୟୀ ତଥା ସୂଚନା ଓ ଲୋକ ସଂପର୍କ ବିଭାଗ ବିଜ୍ଞପ୍ତି ସଂଖ୍ୟା-୪୯୨୮ ତା-୨୯.୦୪.୨୦୨୦ ଅନୁଯାୟୀ ରାଜ୍ୟ ସରକାରଙ୍କ ବିଭିନ୍ନ ପ୍ରତିଷ୍ଠାନ, ସରକାରଙ୍କ ପରିଚାଳନାଧୀନ ସମସ୍ତ ସଂସ୍ଥା, ନିଗମ, ବୋର୍ଡ ଆଦି ଦ୍ୱାରା ପ୍ରକାଶ ପାଇବାକୁ ଥିବା ବ୍ୟବସାୟିକ, ବର୍ଗୀକୃତ ଏବଂ ପ୍ରଜ୍ଞାପନଭିତ୍ତିକ ବିଜ୍ଞାପନଗୁଡିକ ସୂଚନା ଓ ଲୋକସମ୍ପର୍କ ବିଭାଗ ଜରିଆରେ ବିଭାଗ ଦ୍ୱାରା ଅନୁମୋଦିତ ତାଲିକା ଅନୁଯାୟୀ ବିଭିନ୍ନ ତାଲିକାଭୁକ୍ତ ଖବରକାଗଜ/ପତ୍ରିକା ଆଦିରେ ପ୍ରକାଶନ ନିମନ୍ତେ ସୁବ୍ୟବସ୍ଥା କରାଯାଉଛି । ବିଭାଗ ପକ୍ଷରୁ ଅନ୍‌ଲାଇନ୍ ବିଲିଂ ବ୍ୟବସ୍ଥା,ଅନ୍‌ଲାଇନ୍ ପେମେଣ୍ଟ ଆଦି ପଦକ୍ଷେପ ଗ୍ରହଣ କରାଯାଇଛି ।

ରାଜ୍ୟ ସରକାର ବିଭିନ୍ନ ୱେବ୍ ମିଡିଆରେ ବିଜ୍ଞାପନ ପ୍ରସାରଣ ନିମନ୍ତେ ୱେବ୍ ମିଡିଆ ବିଜ୍ଞପ୍ତି-୨୦୧୭ ପ୍ରଣୟନ କରିଛନ୍ତି । ୱେବ୍ ମିଡିଆ ପଞ୍ଜିକରଣର ଆଧାର ଏବଂ ମୂଲ୍ୟ ନିର୍ଦ୍ଧାରଣ ନିମନ୍ତେ ନିୟମାବଳୀ-୨୦୨୦ ବିଭାଗ ପକ୍ଷରୁ ପ୍ରଣୟନ କରାଯାଇଛି ।

ସୂଚନା ଓ ଲୋକ ସଂପର୍କ ବିଭାଗ ନୋଡାଲ ବିଭାଗ ଭାବେ ସୂଚନା ଅଧିକାର ଆଇନ୍‌ର ସଫଳ କାର୍ଯ୍ୟକାରିତା ଦିଗରେ ଆର୍.ଟି.ଆଇ ପୋର୍ଟାଲର ଆଧୁନିକୀକରଣ କାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରିଆସୁଛି । ବିଭାଗରେ ଆର୍.ଟି.ଆଇ. ପ୍ରକଳ୍ପ ପରିଚାଳନା ଶାଖା (ପ୍ରୋଜେକ୍ଟ ମ୍ୟାନେଜମେଣ୍ଟ ୟୁନିଟ୍) କାର୍ଯ୍ୟ କରୁଛି । ମୋବାଇଲ୍ ଆପ୍ଲିକେସନ ସହିତ ଇ-ରିପୋର୍ଟିଂ ବ୍ୟବସ୍ଥାକୁ ଆର୍.ଟି.ଆଇ ସେଣ୍ଟ୍ରାଲ ମନିଟରିଂ ମେକାନିଜିମ୍ (rti.odisha.gov.in) ସହ ସଂଯୁକ୍ତ କରାଯିବାର ବ୍ୟବସ୍ଥା ହୋଇଛି । ରାଜ୍ୟ ସ୍ତରରୁ ଜିଲ୍ଲାସ୍ତର ପର୍ଯ୍ୟନ୍ତ ଆଧୁନିକୀକରଣ କରାଯାଉଥିବା ଆର୍.ଟି.ଆଇ ପୋର୍ଟାଲ କାର୍ଯ୍ୟ ବର୍ତ୍ତମାନ ଗ୍ରାମପଂଚାୟତ ସ୍ତର ପର୍ଯ୍ୟନ୍ତ ସଂପ୍ରସାରଣ କରାଯାଉଛି । ଅଦ୍ୟାବଧି ୧୩,୭୮୨ ଜନ କର୍ତ୍ତୃପକ୍ଷ (ପବ୍ଲିକ୍ ଅଥରିଟି)ଙ୍କୁ ଆର୍.ଟି.ଆଇ ପୋର୍ଟାଲ୍‌ରେ ଅନ୍ତର୍ଭୁକ୍ତ କରାଯାଇଛି । ଏହି ପୋର୍ଟାଲରେ ଅନ୍ତର୍ଭୁକ୍ତ ଜନ କର୍ତ୍ତୃପକ୍ଷମାନଙ୍କର ସ୍ୱେଚ୍ଛାକୃତ ସୂଚନା, ସୂଚନା ଅଧିକାର ଅଧିନିୟମ-୨୦୦୫ ଧାରା -୪(୧)(ଖ) ଏବଂ ଧାରା-(୪)(୪)ଅନୁଯାୟୀ ନିୟମିତ ଅପ୍‌ଡେଟ୍ କରାଯାଉଛି ।

କମ୍ପ୍ୟୁଟରୀକୃତ ବ୍ୟବସ୍ଥା OSWAS (ଓଡିଶା ସେକ୍ରେଟାରିଏଟ୍ ୱାର୍କଫ୍ଲୋ ଅଟୋମେସନ୍ ସିଷ୍ଟମ)ରେ ଦୈନନ୍ଦିନ ବିଭାଗୀୟ କାର୍ଯ୍ୟ ନିର୍ବାହ କରାଯାଉଛି । ଏହା ବ୍ୟତୀତ ଇ-ଡେସ୍‌ପାଚ୍ ଜରିଆରେ ସରକାରୀ ଚିଠିପତ୍ରରେ ନିୟମିତ ପ୍ରେରଣ କାର୍ଯ୍ୟ ସମ୍ପାଦିତ ହେଉଛି । ସୂଚନା ଓ ଲୋକ ସଂପର୍କ ବିଭାଗ ଜରିଆରେ ରାଜ୍ୟର ୯ଟି ଜିଲ୍ଲାରେ କାର୍ଯ୍ୟ କରୁଥିବା ସୂଚନା କେନ୍ଦ୍ର ଓ ପାଠାଗାରରେ ଇ-ଲାଇବ୍ରେରୀ ପ୍ରକଳ୍ପ କାର୍ଯ୍ୟକାରୀ ହେଉଛି । ରାଜ୍ୟର ଅବଶିଷ୍ଟ ୨୧ଟି ଜିଲ୍ଲାରେ ସୂଚନା କେନ୍ଦ୍ର ଓ ପାଠାଗାରଗୁଡିକରେ ଇ-ଲାଇବ୍ରେରୀ ବ୍ୟବସ୍ଥା ପର୍ଯ୍ୟାୟକ୍ରମେ କାର୍ଯ୍ୟକାରୀ ହେବା ପାଇଁ ପଦକ୍ଷେପ ଗ୍ରହଣ କରାଯାଉଛି ।

ବିଭାଗରେ ଉପଲବ୍ଧ ପୁରୁଣା ତଥା ଦୁର୍ଲଭ ଫଟୋ, ପ୍ରାମାଣିକ ଚଳଚ୍ଚିତ୍ର, ସ୍ୱାଧୀନତା ସଂଗ୍ରାମୀ ତଥା ବିଶିଷ୍ଟ ବ୍ୟକ୍ତିବିଶେଷଙ୍କ ସ୍ୱର ରେକର୍ଡିଂ, ଗୁରୁତ୍ୱପୂର୍ଣ୍ଣ ଦସ୍ତାବିଜ୍ ଆଦିର ସଂରକ୍ଷଣ ଦିଗରେ ଡିଜିଟାଲ୍ ଆର୍କାଇଭିଂ ବ୍ୟବସ୍ଥା ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଉଛି ।

ଉପ ନିର୍ଦ୍ଦେଶିକା
ସୂଚନା ଓ ଲୋକସମ୍ପର୍କ ବିଭାଗ, ଭୁବନେଶ୍ୱର

# ରାଜଧାନୀର ଅନ୍ତୁଡ଼ିଶାଳ

ଗୋଲକ ବିହାରୀ ସିଂହ

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କରେ ଅନୁଧ୍ୟାନ କରିବା ପାଇଁ, ସାଇମନ୍ କମିଶନ୍ ସି. ଆର୍.ଅଟ୍‌ଲିଙ୍କ ଅଧ୍ୟକ୍ଷତାରେ ଗଠିତ ସବ୍ କମିଟି ଓଡ଼ିଶା ଡିଭିଜନ୍‌ର ଅନୁଗୁଳ, ଗଡ଼ଜାତ ପୁଞ୍ଜି, କେନ୍ଦ୍ରୀୟ ପ୍ରଦେଶର ଖଡ଼ିଆଳ ଜମିଦାରୀ ଏବଂ ମାନ୍ଦ୍ରାଜ ପ୍ରଦେଶର ଗଞ୍ଜାମ ଜିଲ୍ଲାକୁ ମିଶାଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବାକୁ ସୁପାରିସ୍ କରିଥିଲେ । ସେହି ସୁପାରିସ୍ ଆଧାରରେ ୧୯୩୩ ମସିହା ମାର୍ଚ୍ଚ ମାସରେ, ଇଂରେଜ ସରକାର ପ୍ରସ୍ତାବିତ ଓଡ଼ିଶା ପ୍ରଦେଶ ଶାସନ ସଂସ୍କାର ଉପରେ ଏକ ଶ୍ୱେତପତ୍ର ପ୍ରକାଶ କରିଥିଲେ, ଯେଉଁଥିରେ ଓଡ଼ିଶାକୁ ଏକ ରାଜ୍ୟପାଳ ଶାସିତ ପୂର୍ଣ୍ଣାଙ୍ଗ ପ୍ରଦେଶ ରୂପେ ଗଠନ କରିବାକୁ ଉଲ୍ଲେଖ ହୋଇଥିଲା ।

ପ୍ରସ୍ତାବିତ ଓଡ଼ିଶା ପ୍ରଦେଶର ବିଭିନ୍ନ ସମସ୍ୟା – ଯଥା ନୂତନ ରାଜଧାନୀ ପ୍ରତିଷ୍ଠା, ହାଇକୋର୍ଟ ପ୍ରତିଷ୍ଠା ତଥା ଜିଲ୍ଲା ପୁନର୍ଗଠନ ସମ୍ପର୍କରେ ଅନୁଧ୍ୟାନ କରିବା ନିମନ୍ତେ, ଭାରତ ସରକାରଙ୍କ ଏଫ୍ -୪୭/୩୩ ଆର୍. ୨୪.୬.୧୯୩୩ ତାରିଖ ରିଜୋଲ୍ୟୁସନ ଅନୁସାରେ, ସାର୍ ଜନ୍ ହବାକ୍‌ଙ୍କ ଅଧ୍ୟକ୍ଷତାରେ ଏକ ନଅ ଜଣିଆ ପ୍ରଶାସନିକ କମିଟି ଗଠନ କରାଯାଇଥିଲା । କମିଟିର ସେକ୍ରେଟାରୀ ଥିଲେ ମାନ୍ଦ୍ରାଜର ଶ୍ରୀ ଭେଙ୍କଟ ରାମସ୍ୱାମୀ, ଆଇ. ଇ. ଏସ୍ । ସେମାନଙ୍କର ପ୍ରାଥମିକ ସଭା ୧୯୩୩ ମସିହା ଜୁଲାଇ ୨-୩ ତାରିଖରେ କଟକରେ ଅନୁଷ୍ଠିତ ହୋଇଥିଲା ଏବଂ ସେଥିରେ ୯ ଜଣ ସଭ୍ୟ ଉପସ୍ଥିତ ରହି, ଓଡ଼ିଶାର ନୂତନ ରାଜଧାନୀ ଓ ଗ୍ରୀଷ୍ମନିବାସ ସ୍ଥାନ ଚିହ୍ନଟ ସମ୍ବନ୍ଧରେ ଆଲୋଚନା କରିଥିଲେ । ଏହି ସଭାରେ ସ୍ଥିର ହୋଇଥିଲା ଯେ, ବିଭିନ୍ନ ଅନୁଷ୍ଠାନ ବହୁସଂଖ୍ୟକ ସରକାରୀ ଓ ବେସରକାରୀ ଲୋକଙ୍କ ମତାମତ ଆଧାରରେ ନିଷ୍ପତ୍ତି ନିଆଯିବ । ତଦନୁଯାୟୀ କେତେକ ପ୍ରଶ୍ନ ବିଶିଷ୍ଟ ବ୍ୟକ୍ତି ଏବଂ ଅନୁଷ୍ଠାନଗୁଡ଼ିକୁ ପଠାଯିବ ଏବଂ ସେମାନଙ୍କଠାରୁ ସ୍ମାରକ ପତ୍ର ବା ଉତ୍ତର ପାଇଲା ପରେ ଅଗଷ୍ଟ ୨୧-୨୬ ତାରିଖରେ ରାଞ୍ଚିଠାରେ କମିଟିର ବୈଠକ ବସି ରିପୋର୍ଟ ପ୍ରସ୍ତୁତ କରିବ । କମିଟି ତାଙ୍କର ସେହି ଦ୍ୱିତୀୟ ବୈଠକରେ କଟକ ସହରକୁ ରାଜ୍ୟର ରାଜଧାନୀ ନିମନ୍ତେ ଉପଯୁକ୍ତ ସ୍ଥାନ ରୂପେ ବିବେଚନା କରି ସୁପାରିସ୍ କଲେ ।

୧୯୩୫ ମସିହାର ଭାରତ ଶାସନ ଆଇନ୍ ଅବଲମ୍ବନରେ ୧୯୩୬ ମସିହା ମାର୍ଚ୍ଚ ୩ ତାରିଖରେ ନୂତନ ଓଡ଼ିଶା ପ୍ରଦେଶ ଗଠନ ପାଇଁ ଇଂରେଜ ସମ୍ରାଟ୍‌ଙ୍କର ଆଦେଶନାମା ପ୍ରକାଶିତ ହେଲା । ସେହି ଆଦେଶନାମା ଅନୁସାରେ, ବାଲେଶ୍ୱର, କଟକ, ପୁରୀ, ଗଞ୍ଜାମ, କୋରାପୁଟ ଓ ସମ୍ବଲପୁରକୁ ନେଇ, ୧୯୩୬ ମସିହା ଅପ୍ରେଲ ୧ ତାରିଖ ଦିନ, ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶ ଗଠନ ହୋଇଥିଲା । ଏହା ଥିଲା ଓଡ଼ିଶା ଇତିହାସରେ ଏକ ସ୍ମରଣୀୟ ଦିବସ ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହେବାର ପରଦିନ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି କଟକର ବାରବାଟୀ କିଲ୍ଲାରେ ଗୋଟିଏ ''ଗାର୍ଡନ ପାର୍ଟିର'' ଆୟୋଜନ କରିଥିଲେ । ମଧୁପୁର, କନିକା, ଧରାକୋଟ, ବଡ଼ଖେମୁଣ୍ଡି, ଖଲ୍ଲିକୋଟ, ଚିକିଟି, ଖୋର୍ଦ୍ଧା, ଟିକିଲି ପ୍ରଭୃତି ରାଜାମାନଙ୍କ ସମେତ, ବିଶିଷ୍ଟ ଆଗନ୍ତୁକମାନଙ୍କ ମଧ୍ୟରେ ଥିଲେ ସିଂହଭୂମି,

ମେଦିନୀପୁର, ଓଡ଼ିଶାର ଗଡ଼ଜାତ ମାହଲ, ଶ୍ରୀକାକୁଲମ୍ ପ୍ରଭୃତି ବିଚ୍ଛିନ୍ନ ଅଞ୍ଚଳର ବିଶିଷ୍ଟ ଓଡ଼ିଆଭାଷୀ ଭଦ୍ରଲୋକ । ଅନ୍ୟୂନ ଦୁଇହଜାର ସଂଗଠକ ତଥା ଉତ୍ସାହୀ କର୍ମୀ ପାର୍ଟିରେ ଯୋଗ ଦେଇଥିଲେ । କଲିକତାର ଏକ ବଡ଼ କମ୍ପାନୀଦ୍ୱାରା ପ୍ରସ୍ତୁତ ଖାଦ୍ୟ ସମାଗ୍ରୀ ପରିବେଷଣ କରାଯାଇଥିଲା ।

ସେହି ସଭାରେ ନୂତନ ରାଜଧାନୀ ନିମନ୍ତେ ବିଶିଷ୍ଟ ନେତା ତଥା ଚିନ୍ତାନାୟକମାନେମାନେ ନିମ୍ନମତେ ଅଭିମତ ରଖିଥିଲେ –

୧. 'ଦୈନିକ ଆଶା' ଓ 'ନିୟୁ ଓଡ଼ିଶା' ପତ୍ରିକାର ସମ୍ପାଦକ ଶଶିଭୂଷଣ ରଥ – ଓଡ଼ିଶାର ରାଜଧାନୀ ଗଞ୍ଜାମର ରଙ୍ଗେଇଲୁଣ୍ଡାରେ ସ୍ଥାପିତ ହେଲେ ସବୁ ଦିଗରେ ଓଡ଼ିଶାର ସଂସ୍କୃତି ସମାନ ଭାବରେ ପ୍ରସାରିତ ହେବ ।

୨. 'ସମାଜ' ସମ୍ପାଦକ ରାଧାନାଥ ରଥ– ଓଡ଼ିଶାର ଐତିହାସିକ ରାଜଧାନୀ ହେଉଛି କଟକ । ରଙ୍ଗେଇଲୁଣ୍ଡା ପରି ଏଠାରେ ପାନୀୟ ଜଳର ଅଭାବ ହେବ ନାହିଁ । ବାରବାଟୀ କିଲ୍ଲାରେ ଓଡ଼ିଶାର ସେକ୍ରେଟାରୀଏଟ୍ ରହିବା, ସବୁ ଦିଗରୁ ସୁବିଧାଜନକ ।

୩. ରାୟବାହାଦୁର ଲୋକନାଥ ମିଶ୍ର– ଓଡ଼ିଶାର ମୁଖ୍ୟ ପବିତ୍ର ସ୍ଥାନ ନୀଳାଚଳ । ଯେଉଁଠାରେ ଦେବ ଦେବ ଶ୍ରୀଜଗନ୍ନାଥଙ୍କ ବିରାଟ ମନ୍ଦିର ବିଦ୍ୟମାନ । ମାନ୍ଦ୍ରାଜ ସହର ପରି ଏକ ବିରାଟ ମହୋଦଧି କୂଳରେ ଓଡ଼ିଶାର ରାଜଧାନୀ ସ୍ଥାପିତ ହେବା ଆବଶ୍ୟକ ।

୪. ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି – ମୋ ମତରେ ଖୋର୍ଦ୍ଧାପରି ଏକ ରେଲୱେ କେନ୍ଦ୍ରରେ ଓଡ଼ିଶାର ରାଜଧାନୀ ସ୍ଥାପିତ ହେଲେ ପ୍ରଚୁର ପରିମାଣରେ ସରକାରୀ ଜମି ସଙ୍ଗେ ପରିବହନ ସୁବିଧା ହେତୁ, ଓଡ଼ିଶାର ଶିଳ୍ପ ଓ ବାଣିଜ୍ୟର ପ୍ରସାର ପାଇଁ ଅନୁକୂଳ ବାତାବରଣ ସୃଷ୍ଟି ହୋଇପାରିବ ।

୫. ନୀଳମଣି ସେନାପତି– ସ୍ୱାସ୍ଥ୍ୟ ଓ ସ୍ଥାପତ୍ୟ ଦୃଷ୍ଟିରୁ ଭୁବନେଶ୍ୱର ହିଁ ଶ୍ରେଷ୍ଠ ସ୍ଥାନ । ସେଠାରେ ମଧ୍ୟ ପ୍ରଚୁର ସରକାରୀ ଜମି ରହିଅଛି । ଖଣ୍ଡଗିରି ନିକଟରେ ଯେଉଁ ଜଙ୍ଗଲ ମାଇଲ ମାଇଲ ଧରି ସୁବିସ୍ତୀର୍ଣ୍ଣ ହୋଇଛି, ତାହା କୂର୍ମ ପିଠି ଆକାରରେ ଥିବାରୁ ନୂତନ ସହର ସ୍ଥାପିତ ହେଲେ, ତାହା ବର୍ଷାଋତୁରେ ସନ୍ତସନ୍ତିଆ ହେବ ନାହିଁ । ମନ୍ଦିର ମାଳିନୀ ଭୁବନେଶ୍ୱର ହିଁ ଓଡ଼ିଶାର ରାଜଧାନୀ ପାଇଁ ଉପଯୁକ୍ତ ସ୍ଥାନ । ଏଠାରେ କେଦାର ଗୌରୀ କୂଳପାଦକ କଲିକତାକୁ ରପ୍ତାନି ହୁଏ, କାରଣ ଏଠାର ପାଣି ଅତି ନିର୍ମଳ ଓ ସ୍ୱାସ୍ଥ୍ୟ ପକ୍ଷରେ ଉତ୍ତମ ।

୬. ଚିକିଟି ରାଜକୁମାର ଗୌରଚନ୍ଦ୍ର ଦେବ– ଓଡ଼ିଶାର ରାଜଧାନୀ ଯେଉଁଠାରେ ହେଉ ପଛେ, ସେଥିରେ 'ଗ୍ରୀଷ୍ମ ନିବାସ' ପାଇଁ ପାଞ୍ଚହଜାର ଫୁଟର ଉଚ୍ଚ ଶିଖର ମହେନ୍ଦ୍ରାଚଳ ହିଁ ଉପଯୁକ୍ତ ସ୍ଥାନ । ଏଥିରେ କେହି ଆଦୌ ଅମତ ହେବେ ନାହିଁ ।

୭. ରାୟ ବାହାଦୁର ଲକ୍ଷ୍ମୀଧର ମହାନ୍ତି (କଟକ / ଆଳି)– କଟକ ଓଡ଼ିଶାର ବୃହତ୍ତମ ନଗର ଦୃଷ୍ଟିରୁ ତାହା ହିଁ ନବ ଓଡ଼ିଶାର ରାଜଧାନୀ ପାଇଁ ଉପଯୁକ୍ତ ସ୍ଥାନ, ତେବେ ପୁରୀରେ ବର୍ତ୍ତମାନ ଯେଉଁଠି ସର୍କିଟ୍ ହାଉସ୍ ଅଛି, ସେଠାରେ ଗଭର୍ଣ୍ଣର ହାଉସ୍ ସ୍ଥାପନା କରିବା ଆବଶ୍ୟକ ।

ଏ ଘଟଣା ପରେ ନୂତନ ରାଜଧାନୀ ସ୍ଥାନ ନିରୂପଣ ନେଇ, କଟକ ଓ ବ୍ରହ୍ମପୁର ସମ୍ବାଦପତ୍ରମାନଙ୍କରେ ବାକ୍ ବିତଣ୍ଡା ଲାଗି ରହିଲା । ରାଜଧାନୀ ଓ ଗ୍ରୀଷ୍ମ ନିବାସ ସମ୍ବନ୍ଧରେ ଓଡ଼ିଶାର ନେତୃତ୍ୱମଣ୍ଡଳୀରେ ଯେଉଁ ଉତ୍ତେଜନା ସୃଷ୍ଟି ହୋଇଥିଲା, ତାହାର ସମାଧାନ କରିବାକୁ ୧୯୩୬ ମସିହା ଅକ୍ଟୋବର ୫ ଓ ୬ ତାରିଖ ଦୁଇଦିନ, ପୁରୀ ଗଭର୍ଣ୍ଣର ହାଉସ୍‌ରେ ସାର୍ ଜନ୍ ହବାକ୍‌ଙ୍କ ଅଧ୍ୟକ୍ଷତାରେ ଓଡ଼ିଶାର ଉପଦେଷ୍ଟା କାଉନ୍‌ସିଲ୍ ବୈଠକ ବସିଲା । ଉଭୟ ଦଳରେ ତୀବ୍ର ବାଦାନୁବାଦ ହେବା ଦେଖି ଗଭର୍ଣ୍ଣର ଭୋଟ୍ ନେବାକୁ ସ୍ଥିର କଲେ । ଦେଖାଗଲା, ଓଡ଼ିଶାର ଅଧିକାଂଶ ସଭ୍ୟ କଟକ ସପକ୍ଷରେ ଭୋଟ୍ ଦେଇଛନ୍ତି । ବ୍ରହ୍ମପୁର ସପକ୍ଷବାଦୀ ସଭ୍ୟମାନେ ଅଳ୍ପ ଭୋଟ୍ ପାଇ ପ୍ରତିଯୋଗିତାରେ ହାରିଗଲେ । ତଥାପି ଉଭୟ ପକ୍ଷର ବାଦବିବାଦ ଲାଗି ରହିବା ଦେଖି, ଗଭର୍ଣ୍ଣର କେତେକ ବିଶିଷ୍ଟ ନିରପେକ୍ଷ ବ୍ୟକ୍ତିଙ୍କଠାରୁ ପରାମର୍ଶ ସଂଗ୍ରହ କରି ଭୁବନେଶ୍ୱରଠାରେ ରାଜଧାନୀ ସ୍ଥାପନ କରିବା ନିମନ୍ତେ ନିଷ୍ପତ୍ତି ନେଲେ । ତାହାହିଁ ଶେଷରେ କାର୍ଯ୍ୟକାରୀ ହେଲା । (ସୂତ୍ର – ଡଃ ସତ୍ୟନାରାୟଣ ରାଜଗୁରୁ, ଉତ୍କଳ ପ୍ରସଙ୍ଗ– ଅପ୍ରେଲ–ମଇ–୨୦୦୯)

ସ୍ୱତନ୍ତ୍ର ଓଡ଼ିଶା ଗଠନ ହେବା ପରେ, କଟକ ସହରକୁ ଅସ୍ଥାୟୀ ରାଜଧାନୀ ରୂପେ ବ୍ୟବହାର କରି, ନୂତନ ରାଜଧାନୀର ସ୍ଥାନ ନିରୂପଣ ନିମନ୍ତେ ଭାରତ ସରକାର ଜୋନ୍‌ସ କମିଟିକୁ ଦାୟିତ୍ୱ ଅର୍ପଣ କଲେ । ଏହି କମିଟିରେ ଏଫ.ଟି.ଜୋନ୍‌ସ ଅଧ୍ୟକ୍ଷ ଥିବାବେଳେ ଅନ୍ୟ ସଭ୍ୟମାନେ ଥିଲେ ଇ.ଆର. ସ୍ମିଥ୍ ,ଟି.ଏ.ଏସ୍.ଫିଲିପ୍‌ସ ଏବଂ ମି ଜେଫ୍ରିସ୍ । ଏମାନେ ଓଡ଼ିଶାର ବିଭିନ୍ନ ସ୍ଥାନ ବୁଲି ନିରୀକ୍ଷଣ କରିବା ପରେ ୧୯୩୬ ଅଗଷ୍ଟ ୧୯ ତାରିଖରେ କେନ୍ଦ୍ର ସରକାରଙ୍କୁ ଏକ ରିପୋର୍ଟ ଦେଇଥିଲେ । ଏହି ରିପୋର୍ଟରେ କଟକ ବନ୍ୟାପ୍ରବଣ ହୋଇଥିବାରୁ ଏବଂ ଅନୁକୂଳ ସୁବିଧା ସୁଯୋଗ ନ ଥିବାରୁ ଅନ୍ୟ କେତୋଟି ସ୍ଥାନର ନାମ ସୁପାରିସ୍ କରିଥିଲେ । ସେହି ରିପୋର୍ଟରେ ଖୋର୍ଦ୍ଧା, ଗୋପାଳପୁର ନିକଟସ୍ଥ ରଙ୍ଗେଇଲୁଣ୍ଡା, ନରାଜ, ବାରଙ୍ଗ ନାମ ଥିଲେ ମଧ୍ୟ ରଙ୍ଗେଇଲୁଣ୍ଡାକୁ ରାଜଧାନୀ କରିବାକୁ, କମିଟି ଅଗ୍ରାଧିକାର ଭିତ୍ତିରେ ସୁପାରିସ୍ କରିଥିଲେ । ବ୍ରହ୍ମପୁର ନିକଟସ୍ଥ ରଙ୍ଗେଇଲୁଣ୍ଡାକୁ ଉପଯୁକ୍ତ ସ୍ଥାନ ବୋଲି ମତ ଉପସ୍ଥାପନ କରାଯିବା ପରେ ଓଡ଼ିଶାରେ ଆଞ୍ଚଳିକ ମତଭେଦ ଦୃଷ୍ଟିଗୋଚର ହେଲା ଏବଂ ବିରୋଧାଭାସ ସହ ତୀବ୍ର ପ୍ରତିକ୍ରିୟାମାନ ପ୍ରକାଶ ପାଇଲା । ଆଞ୍ଚଳିକ ମନୋଭାବ ନେଇ ସମସ୍ତେ ନିଜ ନିଜ ଅଂଚଳରେ ରାଜଧାନୀ ପ୍ରତିଷ୍ଠା କରିବାକୁ ଅଡ଼ି ବସିଲେ । ଫଳତଃ ବହୁ ବିଚାର ଆଲୋଚନା ପରେ ରଙ୍ଗେଇଲୁଣ୍ଡାରେ ରାଜଧାନୀ ପ୍ରତିଷ୍ଠା ପ୍ରସ୍ତାବ ପ୍ରତ୍ୟାଖିତ ହେଲା ।

ଖ୍ରୀ:୧୯୩୭ରେ ଶ୍ରୀଯୁକ୍ତ ବିଶ୍ୱନାଥ ଦାଶଙ୍କ ନେତୃତ୍ୱରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ ହେବା ପରେ, ମନ୍ତ୍ରୀ ପରିଷଦ ରାଜଧାନୀ ପ୍ରତିଷ୍ଠା ପାଇଁ ସ୍ଥାନ ଚିହ୍ନଟ କରିବା ଉଦ୍ଦେଶ୍ୟରେ ଏକ ନୂଆ କମିଟି ଗଠନ କରିବାକୁ ପ୍ରସ୍ତାବ ଦେଲେ । ଓଡିଶାର ତତ୍କାଳୀନ ରାଜ୍ୟପାଳ ସାର୍ ଅଷ୍ଟିନ୍ ହବାକ୍, ଡେନ୍ ସାହେବଙ୍କ ଅଧକ୍ଷତାରେ ନୂତନ କମିଟି ଗଠନ କରି, ସ୍ଥାନ ନିରୂପଣ କରିବା ଦାୟିତ୍ୱ ପ୍ରଦାନ କଲେ । 'ଡେନ୍ କମିଟି' ନାମରେ ପରିଚିତ ଏହି କମିଟି ତାଙ୍କ ରିପୋର୍ଟରେ ଉପସ୍ଥାପନ କଲେ ଯେ, କଟକକୁ ରାଜଧାନୀ କରାଯାଇ, କ୍ରମେ କ୍ରମେ ତାହାର ସୀମା ରେଖା ଚୌଦ୍ୱାର ପର୍ଯ୍ୟନ୍ତ ସମ୍ପ୍ରସାରିତ ହେବ । ଏହି କମିଟି ଯୁକ୍ତି ଦର୍ଶାଇଥିଲା ଯେ, ବିଭିନ୍ନ ନଦୀ ଉପରେ ପୋଲ ହୋଇଗଲେ, ରାଜଧାନୀ ସହଜରେ ସବୁଦିଗକୁ ସମ୍ପ୍ରସାରିତ ହୋଇପାରିବ । ନୂଆ ରାଜଧାନୀର କୋଠାବାଡି ପାଇଁ ଯେତେ ଇଚ୍ଛା ସେତେ ଜାଗା ମିଳିବ ଓ ପାଣିର ସମସ୍ତ ଆବଶ୍ୟକତା ପୂରଣ ହୋଇପାରିବ । ଏହି ରିପୋର୍ଟ ଅବଲମ୍ୱନରେ ଓଡ଼ିଶା ବିଧାନ ସଭାରେ, ୧୯୩୭ ମସିହା ସେପ୍ଟେମ୍ବର ୨୪ ତାରିଖରେ, କଟକ-ଚୌଦ୍ୱାରକୁ ରାଜଧାନୀ କରିବା ନିମନ୍ତେ ପ୍ରସ୍ତାବ ଅନୁମୋଦିତ ହେଲା । ତଦନୁଯାୟୀ ଭାରତ ସରକାର କଟକରେ ରାଜଧାନୀ ନିର୍ମାଣ ନିମନ୍ତେ ୨୪ ଲକ୍ଷ ଟଙ୍କା ମଞ୍ଜୁର କଲେ ଏବଂ ରାଜଧାନୀ ନିର୍ମାଣ କାର୍ଯ୍ୟ ମଧ୍ୟ ଆରମ୍ଭ ହେଲା । ଠିକ୍ ଏହି ସମୟରେ (୧୯୩୯) ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯିବାରୁ କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲା । ତାହା ସହ ରାଜନୈତିକ ଇଚ୍ଛାଶକ୍ତି ତଥା ପ୍ରଶାସନିକ ଅଭିନିବେଶ ଅଭାବ ଯୋଗୁଁ ରାଜଧାନୀ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା ।

୧୯୪୪-୪୫ ମସିହା ବେଳକୁ, ଓଡ଼ିଶାର ରାଜ୍ୟପାଳ ଥିଲେ ହାଓଆର୍ଡ୍ଡ ଲୁଇସ୍ ଏବଂ ତାଙ୍କର ସ୍ୱତନ୍ତ୍ର ପରାମର୍ଶଦାତା ରୂପେ ଅବସ୍ଥାପିତ ହୋଇଥିଲେ ଆ.ସି.ଏସ୍ ଅଫିସର ଶ୍ରୀ ବି.କେ. ଗୋଖ୍‌ଲେ । ସେତେବେଳକୁ ନୂଆ ରାଜଧାନୀର ସ୍ଥାନ ନିରୂପଣ ନେଇ ବାଦ-ବିବାଦ, ଆନ୍ଦୋଳନ ବଳବତ୍ତର ରହିଥିଲା । ଅଭିଜ୍ଞ ଗୋଖ୍‌ଲେ ସମସ୍ୟାର ଆଶୁ ସମାଧାନ ନିମନ୍ତେ ତଥ୍ୟରାଜିର ସବିଶେଷ ଅନୁଶୀଳନ କରିବା ସହ, ଜନାକୀର୍ଣ୍ଣ କଟକ ସହର ତଥା ବନ୍ୟା ସମୟରେ କଟକର ଅବସ୍ଥା ଅନୁଧାନ କଲେ । ପରିଶେଷରେ ସେ ମତ ଦେଲେ ଯେ, କଟକ ବ୍ୟବସାୟିକ ତଥା ସାଂସ୍କୃତିକ କେନ୍ଦ୍ର, ଚୌଦ୍ୱାର ଶିଳ୍ପକେନ୍ଦ୍ର, ତଥା ଭୁବନେଶ୍ୱର ରାଜଧାନୀ ତଥା ପ୍ରଶାସନିକ କେନ୍ଦ୍ର ରୂପେ ବିକାଶିତ ହେବା ଆବଶ୍ୟକ । କଟକଠାରୁ ୨୦ ମାଇଲ ଦୂର ଭୁବନେଶ୍ୱର ନୂଆ ରାଜଧାନୀ ପାଇଁ ଅନୁକୂଳ ବୋଲି ସେ ସ୍ପଷ୍ଟ ମତ ଦେଇଥିଲେ । ରାଜଧାନୀ ପ୍ରତିଷ୍ଠା କାର୍ଯ୍ୟାନ୍ୱୟନ ଧାରା ପ୍ରଦର୍ଶନ କରିବା ସହ, ସେ ନିଜ ଯୋଜନାର ସବିଶେଷ ତଥ୍ୟ ଏକ ସାମ୍ବାଦିକ ସମ୍ମିଳନୀରେ ପ୍ରକାଶ କଲେ । ରାଜଧାନୀ ପ୍ରତିଷ୍ଠା ନେଇ ସେ ଯେଉଁ ନକ୍ସା ତିଆରି କରିଥିଲେ,ତାହାର ନାମ ଦେଇଥିଲେ

''ବୃହତ୍ତର କଟକ'' ବା ''ଗ୍ରେଟର କଟକ'' । ଏହି ପରାମର୍ଶ ଆସିବା ପରେ, ବହୁ ବିଚାର ଆଲୋଚନା, ତର୍କ ବିତର୍କ ପରେ ୧୯୪୫ରେ ରାଜ୍ୟ ଯୋଜନା ବିଭାଗ, ଭୁବନେଶ୍ୱର ଓ ମଞ୍ଚେଶ୍ୱରର ମଧ୍ୟବର୍ତ୍ତୀ ସ୍ଥାନରେ ନୂତନ ରାଜଧାନୀ ପ୍ରତିଷ୍ଠା ନିମନ୍ତେ ପ୍ରସ୍ତାବ ତଥା ପରାମର୍ଶ ଦେଲା ।

ଜଳବାୟୁ, ପରିବେଶ, ଐତିହ୍ୟରାଜି, ପ୍ରଚୁର ସରକାରୀ ଜମି ଉପଲବ୍ଧତା, ବିମାନଘାଟୀ ତଥା ରେଳ ଯୋଗାଯୋଗ ବ୍ୟବସ୍ଥାକୁ ଦୃଷ୍ଟିରେ ରଖି ଡଃ ହରେକୃଷ୍ଣ ମହତାବ ଭୁବନେଶ୍ୱରରେ ନୂଆ ରାଜଧାନୀ ପ୍ରତିଷ୍ଠା କରିବାକୁ ଅତ୍ୟନ୍ତ ଆଗ୍ରହୀ ଥିଲେ । ଜଣେ ଐତିହାସିକ ତଥା ଗବେଷକ ଭାବେ, ଭୁବନେଶ୍ୱରର ଭୌଗୋଳିକ ସ୍ଥିତି, ଉତ୍ତୁଙ୍ଗ ଇତିହାସ, ଗୌରବ ତଥା ଉତ୍କର୍ଷକୁ ଗଭୀର ଭାବେ ଅନୁଧ୍ୟାନ କରି, ଏକ ସମ୍ଭାବନାମୟ ସ୍ୱପ୍ନ ନେଇ, ଭୁବନେଶ୍ୱରରେ ରାଜଧାନୀ ପ୍ରତିଷ୍ଠା କରିବା ନିମନ୍ତେ ପ୍ରାୟ ସ୍ଥିର କରିସାରିଥଲେ । ହେଲେ ଆଞ୍ଚଳିକତା ଆଧାରରେ ଉପସ୍ଥାପିତ ରାଧାନାଥ ରଥଙ୍କର କଟକ-ଚୌଦ୍ୱାର ପ୍ରସ୍ତାବ, ବିଶ୍ୱନାଥ ଦାସଙ୍କର ରଙ୍ଗେଇଲୁଣ୍ଡା ଆଦି ପ୍ରସ୍ତାବ ତାଙ୍କୁ ବହୁତ ଆନ୍ଦୋଳିତ କରୁଥିଲା ।

ସେ ଅନୁଭବ କଲେ ଯେ, ଏହି ପ୍ରସ୍ତାବକୁ ଫଳପ୍ରଦ ଭାବେ କାର୍ଯ୍ୟକାରୀ କରିବା ପାଇଁ, ମୂଳ ଭୁବନେଶ୍ୱର ଗ୍ରାମସମୂହରେ କେହି ପ୍ରଭାବଶାଳୀ ନେତା ନାହାନ୍ତି । ତେଣୁ ଦୂରଦୃଷ୍ଟି, ପୂର୍ବାନୁଭୂତି ନେଇ ସେ ବାଳକାଟିର ମକଦ୍ଦମ ସତ୍ୟପ୍ରିୟ ମହାନ୍ତିଙ୍କୁ ନିଜର ସହଯୋଗୀ ରୂପେ ଗ୍ରହଣ କଲେ । ସେତେବେଳେ ଭୁବନେଶ୍ୱର ତଥା ଆଖପାଖ ଅଞ୍ଚଳରେ ସତ୍ୟପ୍ରିୟ ମହାନ୍ତିଙ୍କର ମକଦ୍ଦମ ହିସାବରେ ବହୁତ ସୁନାମ ତଥା ପ୍ରଭାବ ଥିଲା । ତାହାଛଡ଼ା ସେ କଂଗ୍ରେସ କର୍ମୀମାନଙ୍କୁ ବିଭିନ୍ନ ଭାବେ ସାହାଯ୍ୟ ସହଯୋଗ ମଧ୍ୟ କରୁଥିଲେ । ବିଶେଷ କରି ବ୍ୟକ୍ତିଗତ ରୂପେ ସତ୍ୟପ୍ରିୟଙ୍କର ମହତାବଙ୍କ ସହ ବ୍ୟକ୍ତିଗତ ଉତ୍ତମ ସମ୍ପର୍କ ମଧ୍ୟ ଥିଲା । ତେଣୁ ସେ ଭୁବନେଶ୍ୱରରେ ରାଜଧାନୀ ପ୍ରତିଷ୍ଠା ସମ୍ବନ୍ଧୀୟ ପରାମର୍ଶ ଓ ସାହାଯ୍ୟ ନିମନ୍ତେ ସତ୍ୟପ୍ରିୟଙ୍କୁ ଅନୁରୋଧ କଲେ ।

ସତ୍ୟପ୍ରିୟ ମହାନ୍ତି ତାଙ୍କର ଏହି ପ୍ରସ୍ତାବକୁ ସମର୍ଥନ କରିବା ସହ, ଯୁବଗୋଷ୍ଠୀର ପରିଚିତ ଯୁବକମାନଙ୍କୁ ଏକତ୍ରିତ କରି ଉତ୍ସାହିତ କରିବାକୁ ଲାଗିଲେ । ସେତେବେଳେ ଭୁବନେଶ୍ୱର ଅଞ୍ଚଳରେ ସୁନ୍ଦରପଦା ଓ ବଡ଼ଗଡ଼ ଗ୍ରାମର ବହୁତ ଆଧିପତ୍ୟ ଓ ପ୍ରଭାବ ଥାଏ । ତେଣୁ ସ୍ଥିର ହେଲା ଯେ, ଭୁବନେଶ୍ୱରରେ ନୂଆ ରାଜଧାନୀ ପ୍ରତିଷ୍ଠା ନିମନ୍ତେ ଜନମତ ସୃଷ୍ଟି କରିବା ନିମନ୍ତେ ବଡ଼ଗଡ ଗ୍ରାମରେ ଏକ ସଭା ତଥା ବୈଠକ କରାଯାଇ ପରବର୍ତ୍ତୀ କାର୍ଯ୍ୟପନ୍ଥା ସ୍ଥିର କରାଯିବ । ଲକ୍ଷ୍ମୀସାଗର ଓ ଝାରପଡ଼ାର ଯୁବକମାନଙ୍କ ସହଯୋଗରେ ଜନମତକୁ ପ୍ରଭାବିତ କରିବା ନିମନ୍ତେ ବ୍ୟବସ୍ଥା କରାଗଲା ।

ପ୍ରାରମ୍ଭିକ ପ୍ରସ୍ତୁତି ପରେ, ସତ୍ୟପ୍ରିୟ ମହାନ୍ତିଙ୍କ ଉଦ୍ୟମରେ ବଡ଼ଗଡ଼ ଗ୍ରାମର ପ୍ରସିଦ୍ଧ ପତିତପାବନ ମନ୍ଦିରରେ ଏକ ସଭା ଆୟୋଜନ କରାଯାଇ, ଡଃ ମହତାବଙ୍କୁ ନିମନ୍ତ୍ରଣ କରାଗଲା । ରେଳରେ ଆସି ବୁଦ୍ଧେଶ୍ୱରୀ ଷ୍ଟେସନରେ ଓହ୍ଲାଇବା ପରେ ଡଃ ମହତାବଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେବା ସହ, ବଳଦଗାଡ଼ିରେ ବସାଇ ସଂକୀର୍ତ୍ତନ କରି, ଢୋଲ ବାଜା, ବାଣଫୁଟା ସହ ସଭାସ୍ଥଳକୁ ପାଛୋଟି ନିଆଯାଇଥିଲା ।

ବାଲିଅନ୍ତା ଗାନ୍ଧୀ ଦାଶରଥି ମହାନ୍ତି(ବେନୁପୁର), ଧମିଲର ମହାଦେବ ମହାନ୍ତି, ବାଲିଅନ୍ତାର ଜମିଦାର ମଦନ ମୋହନ ହରିଚନ୍ଦନ ମହାପାତ୍ର, ଭିଙ୍ଗାରପୁର ଜମିଦାର ଗଙ୍ଗାଧର ଦାସ, ଚୌଧୁରୀ ନୀଳକଣ୍ଠ ଦାସ, ନହରକଣ୍ଟାର ଜମିଦାର ଦିବ୍ୟସିଂହ ମହାରଥୀ ମହାପାତ୍ର ଆଦି ପ୍ରତିଷ୍ଠିତ ବ୍ୟକ୍ତିବୃନ୍ଦ ଏହି ସଭାରେ ଯୋଗ ଦେଇଥିଲେ । ଏମାନଙ୍କ ବ୍ୟତୀତ ଏହି ସଭାରେ ସକ୍ରିୟ ଭାବେ ଭାଗନେଇଥିଲେ, ସୁନ୍ଦରପଦାର କାଳୁ ନନ୍ଦ, ରମେଶ ମିଶ୍ର, ବୀର ନନ୍ଦ, ପୁରୁଣା ଭୁବନେଶ୍ୱରର ରଘୁନାଥ ମହାପାତ୍ର, ଉଦୟ ନାଥ ପୂଜା ପଣ୍ଡା, ଲକ୍ଷ୍ମୀଧର ଗରାବଡୁ, ବଡ଼ଗଡ଼ ଗ୍ରାମର ମହେନ୍ଦ୍ର ସୁନ୍ଦରାୟ, ଭାଗିରଥୀ ଶ୍ରୀଚନ୍ଦନ, ସୁରେନ୍ଦ୍ର ସୁନ୍ଦରରାୟ, ଯୁଧିଷ୍ଠିର ସାମନ୍ତ ସିଂହାର, ହାଡିବନ୍ଧୁ ହାଲି ତଥା ପ୍ରଫୁଲ୍ଲ ଚନ୍ଦ୍ର ରାଏ । ଲକ୍ଷ୍ମୀସାଗରର ଝୁଲ ଲେଙ୍କା, ମେଣ୍ଢାଶାଳର ରଘୁନାଥ ବଡ଼ଜେନା ତଥା ଖୋର୍ଦ୍ଧାର ପ୍ରାଣନାଥ ପଟ୍ଟନାୟକ ମଧ୍ୟ ଏହି ସଭାରେ ଉପସ୍ଥିତ ଥିଲେ ।

ସଭାରେ ଉପସ୍ଥିତ ସ୍ଥାନୀୟ ଜମିଦାରବୃନ୍ଦ, କଂଗ୍ରେସ କର୍ମୀ ତଥା ଯୁବସମୂହ ମହତାବଙ୍କ ପ୍ରସ୍ତାବକୁ ଏକାନ୍ତକରଣରେ ସମର୍ଥନ କରିଥିଲେ । ଉପରୋକ୍ତ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସମେତ, ସେଦିନ ପତିତପାବନ ମନ୍ଦିର ପ୍ରାଙ୍ଗଣରେ ଉପସ୍ଥିତ ସମସ୍ତ ବ୍ୟକ୍ତିବିଶେଷ, ରାଜଧାନୀ ନିମନ୍ତେ ଭୁବନେଶ୍ୱରର ଦାବୀକୁ ଜୋରଦାର କରିବା ନିମନ୍ତେ ସହମତି ହେବା ସହ ବଜ୍ରଶପଥ ନେଇଥିଲେ । ସୂଚନାଯୋଗ୍ୟ ଯେ, ଏହି ସଭାରେ ପୁରୋଭାଗରେ ଥିଲେ ସୁନ୍ଦରପଦା, ବଡ଼ଗଡ଼, ଝାରପଡ଼ା ତଥା ଲକ୍ଷ୍ମୀସାଗର ଗ୍ରାମର ଯୁବକବୃନ୍ଦ । ସେବେଠାରୁ ଏମାନେ ସମସ୍ତେ ଡଃ ମହତାବଙ୍କର ପ୍ରିୟ ଓ ପାଖଲୋକ ବନିଯାଇଥିଲେ ।

ସତ୍ୟପ୍ରିୟ ମହାନ୍ତି ତଥା ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ପ୍ରୋତ୍ସାହନରେ ପତିତପାବନ ଦେବଙ୍କ ସମ୍ମୁଖରେ ରାଜଧାନୀ ନିର୍ମାଣ ନିମନ୍ତେ ଦୁର୍ବାର ଶପଥ ନିଆଯିବା ପରେ ତାହାକୁ କିପରି କାର୍ଯ୍ୟାନ୍ୱୟନ କରାଯିବ, ସେଥିନିମନ୍ତେ ଯୁବବାହିନୀ ପତିତପାବନ ମନ୍ଦିରରେ ନିୟମିତ ଭାବେ ବୈଠକ କରିବାକୁ ଲାଗିଲେ । ଭୁବନେଶ୍ୱରରେ ନୂତନ ରାଜଧାନୀ ଗଢାଗଲେ ନିର୍ମାଣଠାରୁ ଆରମ୍ଭ କରି ସମସ୍ତ ପ୍ରକାର ସହଯୋଗ ଦେବା ନିମନ୍ତେ ଏମାନେ ଡଃ ମହତାବଙ୍କୁ ନିର୍ଭର ପ୍ରତିଶ୍ରୁତି ପ୍ରଦାନ କରିଥିଲେ । ତେଣୁ ବଡ଼ଗଡ଼ର ସେହି ପ୍ରସିଦ୍ଧ ପତିତପାବନ ମନ୍ଦିରକୁ ନୂଆ ରାଜଧାନୀର ଅନ୍ତୁଡିଶାଳ କୁହାଯାଇଥାଏ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ବ୍ରିଟିଶ ସୈନ୍ୟମାନଙ୍କ ରହଣି ନିମନ୍ତେ ଭୁବନେଶ୍ୱରରେ କେତେଗୁଡିଏ ବାରାକ୍ ନିର୍ମାଣ କରାଯାଇଥିଲା । ତନ୍ମଧ୍ୟରୁ ଗୋଟିଏ ବାରାକ ବଡ଼ଗଡ଼ର ଅନତି ଦୂର ଷ୍ଟେସନ ନିକଟରେ ଥିଲା । ଏହି ଟିଣ ଛାତ ବାରାକରେ ରାଜ୍ୟ ପ୍ରଦେଶ କମିଟିର ଗୋଟିଏ ବୈଠକ ବସି ଭୁବନେଶ୍ୱରରେ ରାଜଧାନୀ ପ୍ରତିଷ୍ଠା କରିବା ନିଷ୍ପତ୍ତିକୁ ପୁଷ୍ଟି କରିଥିଲା । ମହତାବଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଏହି ବୈଠକରେ ମନ୍ତ୍ରୀମାନଙ୍କ ସହ ବରିଷ୍ଠ କଂଗ୍ରେସ ନେତାମାନେ ସର୍ବସମ୍ମତିକ୍ରମେ ଭୁବନେଶ୍ୱର ଉପରେ ମୋହର ମାରିଥିଲେ ।

ଏହା ପରେ, ଅର୍ଥାତ୍ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ଉଦ୍‌ଘୋଷିତ ହେବାର ଦଶ ବର୍ଷ ପରେ, ୧୯୪୬ ମସିହା ସେପ୍ଟେମ୍ବର ମାସ ୩୦ ତାରିଖ ଦିନ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବ, ଓଡ଼ିଶା ବିଧାନ ସଭାରେ, ଭୁବନେଶ୍ୱରରେ ରାଜଧାନୀ ପ୍ରତିଷ୍ଠା ନିମନ୍ତେ ପ୍ରସ୍ତାବ ଆଗତ କଲେ ଏବଂ ତାହା ବିଧାନସଭାରେ ସେହିଦିନ ସର୍ବସମ୍ମତିକ୍ରମେ ଅନୁମୋଦିତ ହୋଇଗଲା ।

ଡଃ ହରେକୃଷ୍ଣ ମହତାବ ତାଙ୍କ ଆତ୍ମଜୀବନୀ 'ସାଧନାର ପଥେ' ଦ୍ୱିତୀୟ ଭାଗରେ (ଭୁବନେଶ୍ୱର ରାଜଧାନୀ ସ୍ଥାପିତ ସମ୍ବନ୍ଧରେ) ଲେଖିଛନ୍ତି – ''ଏ ରାଜଧାନୀ ସ୍ଥାନ ନିରୂପଣ ମଧ୍ୟ ନିର୍ବିବାଦୀୟ ନ ଥିଲା । ୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ଦିନୁ ରାଜଧାନୀ ସମ୍ବନ୍ଧରେ ବାଦବିବାଦ ଚାଲି ଆସିଥିଲା । କେତେକଙ୍କ ମତରେ ଚୌଦ୍ୱାର ଆଡ଼କୁ କଟକ ବଢ଼ି ରାଜଧାନୀ ହେଉ । କେତେକ କହୁଥିଲେ ବ୍ରହ୍ମପୁର ନିକଟସ୍ଥ ରଙ୍ଗେଇଲୁଣ୍ଡାରେ ରାଜଧାନୀ ହେଉ । ଆଉ କେତେକ ଖୋର୍ଦ୍ଧାରେ ରାଜଧାନୀ ହେଉ ବୋଲି କହୁଥିଲେ । ଅବଶ୍ୟ କଟକରେ ରାଜଧାନୀ ରହୁ ବୋଲି ଏକ ଦୃଢ଼ମତ ଥିଲା । ଯୁଦ୍ଧ ବେଳେ ବିମାନଘାଟୀ ସ୍ଥାପନ ପାଇଁ ଯେତେବେଳେ ସ୍ଥାନ ନିର୍ଣ୍ଣୟ କରାଗଲା, ସେତେବେଳେ ଆମେରିକାର ସୈନ୍ୟବାହିନୀ ଭୁବନେଶ୍ୱରର ଜଙ୍ଗଲ ଭିତରେ ଏକ ବିଶାଳ ପ୍ରାନ୍ତରର ସନ୍ଧାନ ପାଇଲେ । ଜଙ୍ଗଲ ସଫା କରି ସେମାନେ ଏରୋଡ୍ରମ ତିଆରି କଲେ । ତା' ପରେ ଭୁବନେଶ୍ୱରରେ ରାଜଧାନୀ ସ୍ଥାପନର ଚିନ୍ତା ଚାଲିଲା । ସାର୍ ହୋଥୋର୍ଣ୍ଣ ଲୁଇ ଓ ଗୋଖଲେଙ୍କ ସହ ଆଲୋଚନା ହୋଇଥିଲା । ୧୯୪୬ ମସିହା ମନ୍ତ୍ରିମଣ୍ଡଳ ଗଠନ ପୂର୍ବରୁ ଭୁବନେଶ୍ୱରରେ ରାଜଧାନୀ ହେବ ବୋଲି ମୁଁ ମନରେ ସ୍ଥିର କରିସାରିଥିଲି । ଆଉ ବେଶି ବାଦ ବିବାଦକୁ ପ୍ରଶ୍ରୟ ନ ଦେଇ ମୁଁ ବ୍ୟବସ୍ଥା ସଭାରେ ସର୍ବସମ୍ମତିକ୍ରମେ ପ୍ରସ୍ତାବକୁ ଗୃହୀତ କରାଇଲି ।''

ସଂସ୍କୃତି ଗବେଷକ
ଚଣ୍ଡିମାତା କଲୋନୀ
ଭୁବନେଶ୍ୱର– ୭୫୧୦୧୦

# ସୃଜନଶୀଳତାର ଆଧାରଭୂତ ବିଭିନ୍ନ ତତ୍ତ୍ୱର ବିଶ୍ଳେଷଣ

ସୁଚିତ୍ରା ବେହେରା

ବାହ୍ୟ ଜୀବନରେ ହେଉ ଅବା ଆନ୍ତରିକ ଜୀବନରେ ହେଉ ନିଜ ରୁଚିର କ୍ଷେତ୍ରରେ କିଛି ନୂଆ କରି ସୃଷ୍ଟି କରିବାକୁ ହିଁ ସୃଜନଶୀଳତା କୁହାଯାଏ । କବି, ଲେଖକ ଓ କଳାକାର ଜଣେ ଜଣେ ସୃଜନଶୀଳ ସ୍ରଷ୍ଟା । ଏହି ସ୍ରଷ୍ଟାଙ୍କ ଉପରେ ସର୍ବୋଚ୍ଚ ସ୍ରଷ୍ଟା ହେଲେ ଈଶ୍ୱର । ଜଗତ୍ ସ୍ରଷ୍ଟା ଚତୁର୍ମୁଖ ବ୍ରହ୍ମାଙ୍କ ଭଳି କବି, ଲେଖକ ଓ କଳାକାରମାନେ ନିଜର ସୃଷ୍ଟି ରଚ଼ନା କରନ୍ତି । ବିଧିର ବିଚ଼ିତ୍ର ସୃଷ୍ଟିକୁ ନିଜ ଭାବ ଦ୍ୱାରା ପରଖି, ଅନୁଭୂତି ସ୍ନିଗ୍ଧ କରି, ବିଚାରାତ୍ମକ କ୍ରିୟା ଓ ପ୍ରକ୍ରିୟା ଦେଇ ଏହି ସ୍ରଷ୍ଟାମାନେ ସୃଜନ କରିଥା'ନ୍ତି । ପ୍ରତ୍ୟେକ ସୃଜନ ପାଇଁ ଉତ୍ସାହ, ଉଦ୍ଦୀପନା ଓ ଧୈର୍ଯ୍ୟ ହିଁ ସଫଳତା ପଦାନ କରିଥାଏ । ସ୍ରଷ୍ଟା ମଧ୍ୟରେ ଯେଉଁ ସୃଜନ କ୍ଷମତା ରହିଥାଏ, ଯେଉଁ ଇଚ୍ଛାଶକ୍ତି ରହିଥାଏ, ତାହା ପ୍ରକାଶିତ ହେବାରେ କୌଣସି ପ୍ରତିବନ୍ଧ ଗତିରୋଧ କରିପାରେ ନାହିଁ । ବିନ୍ଦୁ ମଧ୍ୟରେ ସିନ୍ଧୁ ଦର୍ଶନ, ଅନ୍ଧକାର ମଧ୍ୟରେ ଆଲୋକର ସନ୍ଧାନ ଭଳି ସ୍ରଷ୍ଟା ସର୍ଜନାର ମୂଳ ବିଶେଷତ୍ୱ ଉପରେ ଏବଂ ଉଭୟ ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିରୁ ଏହାର ମୂଲ୍ୟବୋଧ ଉପରେ ଗୁରୁତ୍ୱାରୋପ କରିଥାଏ ।

କଳ୍ପନାର ଇନ୍ଦ୍ରଜାଲ ଓ ସ୍ୱପ୍ନପ୍ରବଣତାଠାରୁ ବାସ୍ତବତାର କଠିନ ଚିତ୍ର ଅଧିକ ମହତ୍ତ୍ୱପୂର୍ଣ୍ଣ ଏବଂ ପ୍ରଭାବବିସ୍ତାରୀ ହୋଇଥାଏ । ଜୀବନର ନିରାଟ ବାସ୍ତବତାକୁ ନିର୍ବିଘ୍ନରେ ସମାଜ ସମ୍ମୁଖରେ ଅବିରତ ଉପସ୍ଥାପନ କରିବାରେ ସୃଜନଶୀଳତା ଏକ ପ୍ରବହମାନ ଧାରା ଭଳି ବହି ଚାଲିଥାଏ । ଗତାନୁଗତିକ ଧାରାରେ ଦୀର୍ଘଦିନ ଚାଲିଲେ ସୃଜନାତ୍ମକ ଚିନ୍ତନର ଦିଗ ସଂପ୍ରସାରିତ ହୋଇପାରେ ନାହିଁ । ଏଥିପାଇଁ ପରିବର୍ତ୍ତନ ହିଁ ଏକ ନୂତନ ମାର୍ଗର ଅନୁସନ୍ଧାନ ଦେଇଥାଏ । ପରିବର୍ତ୍ତିତ ଜୀବନର ନୂତନତାରେ ଯେଉଁ ସମ୍ଭାବନା ଆସେ, ତାହା ମୌଳିକ ରଚ଼ନାର ପ୍ରାରମ୍ଭ ହୋଇଥାଏ ।

ସୃଜନଶୀଳତାର ଆଧାରଭୂତ ବିଭିନ୍ନ ତତ୍ତ୍ୱ ରହିଛି, ଯାହାକୁ ବୋଧ ହେବା ଦ୍ୱାରା ସ୍ରଷ୍ଟା ଉତ୍ତମ ସୃଜନର ଦିଗ ଆଡ଼କୁ ଉନ୍ମୁଖ ହୋଇଥାଏ । ଏହି ତତ୍ତ୍ୱଗୁଡ଼ିକର ଆଧାରରେ ନିଜର କ୍ଷମତା ଓ ରୁଚି ମଧ୍ୟରେ ସନ୍ତୁଳନ ରକ୍ଷା କରି ନୂତନ ସୃଜନ ସମ୍ପନ୍ନ କରିବାକୁ ପଡ଼ିଥାଏ । ସେହି ତତ୍ତ୍ୱଗୁଡ଼ିକ ଏହିପରି ଅଟେ –

**ଜିଜ୍ଞାସା ଭାବ–** ସୃଜନଶୀଳତାର ପ୍ରଥମ ଚରଣ ହେଉଛି ଜିଜ୍ଞାସା ଭାବ । ପ୍ରତ୍ୟେକ ସୃଜନର ଏହା ହେଉଛି ମୂଳତତ୍ତ୍ୱ । କୌଣସି ବିଷୟରେ ଜାଣିବାର ଇଚ୍ଛାଶକ୍ତି ହିଁ ଜିଜ୍ଞାସା ଅଟେ । ଜିଜ୍ଞାସାରୁ ହିଁ ଜ୍ଞାନ ଅଧିକତର ହୁଏ । ତେଣୁ ଜିଜ୍ଞାସା ଭାବ ଯେତେ ଗଭୀର ହୋଇଥାଏ ଜ୍ଞାନ ମଧ୍ୟ ସେତେ ଗଭୀର ହୋଇଥାଏ । ଫଳରେ ବିବିଧ ରଚ଼ନାର ପ୍ରସ୍ଫୁଟନ ହୋଇଥାଏ । ସାଧାରଣତଃ ମାଟିକୁ ଅଧିକ ଖୋଳିଲେ ଗର୍ତ୍ତ ମଧ୍ୟରୁ ଜଳ ବାହାରେ । ଯେତେ ଅଧିକ ଗଭୀର ସ୍ତରକୁ ଖୋଳାଯିବ ସେଥି ମଧ୍ୟରୁ ଗୋଡ଼ି, ପଥର, ଭିନ୍ନ କିସମର ମାଟି, ବାଲି ଆଦି ବାହାରେ । ତା'ପରେ ଜଳ ସ୍ତରର ଗଭୀରତା ଏବଂ ପ୍ରକାରରେ' ଜଣାପଡ଼େ । ସେଇଭଳି ଅଧିକ ଜାଣିବାର ଇଚ୍ଛାଶକ୍ତିରୁ ବିଭିନ୍ନ ନୂତନ ଜ୍ଞାନୋଦୟ ହୋଇଥାଏ । ଏହି ଜ୍ଞାନ ଦ୍ୱାରା ସୃଜନ ଚେତନା ଜାଗ୍ରତ ହୋଇ ଉତ୍କୃଷ୍ଟ ରଚନାରେ ସ୍ରଷ୍ଟା ସଫଳତା ଅର୍ଜନ କରିଥାଏ ।

**ଅଧ୍ୟୟନ**–ସୃଜନ ସମଗ୍ରତା ପାଇଁ ଅଧ୍ୟୟନର ବ୍ୟାପକତା ବହୁତ ସହାୟକ ହୋଇଥାଏ । ଉତ୍ତମ ସୃଜନ ପ୍ରତ୍ୟେକ ସ୍ରଷ୍ଟାର ଲକ୍ଷ୍ୟ ହୋଇଥାଏ । ମାତ୍ର କେବଳ ଲକ୍ଷ୍ୟ ସ୍ଥିର କଲେ ତ ସୃଜନାତ୍ମକ ସଫଳତା ମିଳିଯିବ ନାହିଁ । ଏଥିପାଇଁ ଅଧ୍ୟୟନ ଜରୁରୀ ହୋଇଥାଏ । ଯେତେ ଅଧିକ ଅଧ୍ୟୟନ ହେବ ନୂଆ ନୂଆ ଦିଗ ସେତେ ଆବିଷ୍କାର ହେବ । ସେତେ ଅଧିକ ଜ୍ଞାନ ଅର୍ଜନ ହେବ । ଏହିଭଳି ଜ୍ଞାନ ଅର୍ଜନ କରି ବାଲ୍ୟକାଳରୁ ଅଦ୍‌ଭୁତ ମାନସିକ ଶକ୍ତିର ପରିଚୟ ଦେଇଥିଲେ ଆଚାର୍ଯ୍ୟ ଶଙ୍କର । ଚାରିବେଦରେ ନିପୁଣତା ଓ ଷଡ଼ଦର୍ଶନ ଆୟତ୍ତ କରି ପ୍ରତ୍ୟେକ ଦର୍ଶନର ଗୁଣ ଓ ଦୋଷ ହୃଦୟଙ୍ଗମ କରିପାରିଥିଲେ । ମାତ୍ର ୩୨ବର୍ଷ ବୟସର ସୀମା ଭିତରେ କଠିନ ଶାସ୍ତ୍ରଗୁଡ଼ିକର ଅଧ୍ୟୟନ କରି ଓ ବ୍ୟାଖ୍ୟା କରି ବିଭିନ୍ନ ତତ୍ତ୍ୱ ପରିପ୍ରକାଶ କରିବାରେ ସଫଳ ହୋଇଥିଲେ । ପ୍ରଚଣ୍ଡ ଜ୍ଞାନ ହିଁ ଲଳିତ ସୃଷ୍ଟି ରଚନା କ୍ଷେତ୍ରରେ ତାଙ୍କର ମୂଳ ଆବେଦନ ଥିଲା । ଧ୍ୟାନ ଓ ଅଧ୍ୟୟନ ତାଙ୍କର ଜ୍ଞାନର ଅଭିବୃଦ୍ଧିରେ ସହାୟକ ଥିଲା । ଫଳରେ ତାଙ୍କର ପ୍ରତ୍ୟେକଟି ସୃଜନ ଉଭୟ ପରିମାଣ ଓ ଗୁଣ ଦୃଷ୍ଟିରୁ ମହନୀୟ ହୋଇପାରିଥିଲା । ଏହି ହେତୁ ସୃଜନଶୀଳତା ପାଇଁ ଅଧ୍ୟୟନ ଏକ ବିଶେଷ ତତ୍ତ୍ୱ ଅଟେ ।

**ଏକାଗ୍ରତା ଓ ମନଃସଂଯମ** – ସୃଜନଶୀଳତା ପାଇଁ ଲକ୍ଷ୍ୟରେ ସ୍ଥିରତା ରହିବା ଏକାନ୍ତ ଆବଶ୍ୟକ । ଲକ୍ଷ୍ୟରେ ସ୍ଥିରତା ରହିଲେ ସୃଜନ ଚେତନା ସୁଦୃଢ଼ ହୋଇଥାଏ । ଏଥିପାଇଁ ଏକାଗ୍ରତା ଓ ମନଃସଂଯମ ବିଶେଷ ଜରୁରୀ ତତ୍ତ୍ୱ ଅଟେ । ଜୀବନର ଧାଁ ଦଉଡ଼ ଓ ଜଞ୍ଜାଳ ଭିତରେ ସ୍ରଷ୍ଟାକୁ ଅନେକ ଖୋରାକ୍ ମିଳେ, ଯାହାକୁ ସଂଗ୍ରହ କରି ସୃଜନର ପରିପ୍ରକାଶ ଦିଗରେ କ୍ରିୟାଶୀଳ ହେବାକୁ ପଡ଼େ । ମାତ୍ର ଏକାଧିକ ଚାପ ଭିତରେ ସୃଜନ ଚେତନା ସୁଦୃଢ଼ ହୋଇପାରେ ନାହିଁ । ଯେମିତିକି ରାସ୍ତାରେ ଦୌଡ଼ି ଦୌଡ଼ି ଯିବାରେ ସବୁକିଛି ଦୃଷ୍ଟିଗୋଚର ହୋଇନଥାଏ । ମାତ୍ର ଚାଲି ଚାଲି ଯିବାରେ ପ୍ରତ୍ୟେକ ସୂକ୍ଷ୍ମ ଦୃଶ୍ୟ ଅବଲୋକନ କରିବାରେ ସହଜ ହୋଇଥାଏ । ବ୍ୟସ୍ତତାର କୌଣସି ଚାପ ନଥିବା ହେତୁ ମନଃସଂଯମ ରହିଥାଏ । ସୃଜନାତ୍ମକ ଚିନ୍ତାଧାରା ଅଧିକ ଗଭୀର ହୋଇଥାଏ, ଏକାଗ୍ରତା ଓ ମନଃସଂଯମରେ ।

ଅଧ୍ୟୟନ କ୍ଷେତ୍ରରେ ଏକାଗ୍ରତା ଓ ମନଃସଂଯମ ରହିଲେ ସୃଜନ କ୍ଷମତା ବୃଦ୍ଧି ପାଇଥାଏ । ଏହାର ବାସ୍ତବ ସତ୍ୟତା ସ୍ୱାମୀ ବିବେକାନନ୍ଦଙ୍କ ଅନୁଭୂତିରୁ ସ୍ପଷ୍ଟ ଅନୁମେୟ । ଖେତଡ଼ିର ରାଜାଙ୍କ ସଙ୍ଗରେ ପରିଚୟ ହେବା ପରେ ସ୍ୱାମୀଜୀ ଯେତେବେଳେ ତାଙ୍କର ଅତିଥି ହୋଇ ରହିଲେ ସେହି ସମୟରେ ବହିକୁ ଦେଖି ଖୁବ୍‌ଶୀଘ୍ର ପୃଷ୍ଠା ଲେଉଟାଇ ଦେଉଥିଲେ ଓ ବହିକୁ ସମ୍ପୂର୍ଣ୍ଣ ପଢ଼ି ଦେଉଥିଲେ । ସେ ସ୍ୱାମୀଜୀଙ୍କୁ ଏହିଭଳି ପଢ଼ିବାର ଦେଖି ପଚାରିଲେ – କିପରି ଏହା ସମ୍ଭବ ? ସ୍ୱାମୀଜୀ ରାଜାଙ୍କୁ ବୁଝାଇ କହିଲେ, ‘‘ଜଣେ ଛୋଟ ପିଲା ପ୍ରଥମେ ପଢ଼ି ଶିଖିଲାବେଳେ ଗୋଟିଏ ଅକ୍ଷରକୁ ତିନିଥର ଉଚ୍ଚାରଣ କରିବା ପରେ ଶବ୍ଦଟି ପଢ଼ିପାରେ । ସେତେବେଳେ ତା'ର ନଜର ଗୋଟିଏ ଅକ୍ଷର ଉପରେ ଥାଏ । ଆହୁରି କିଛି ଦିନ ଶିଖିବା ପରେ ସେ ଆଉ ଅକ୍ଷର ଚିହ୍ନି ପଢ଼େ ନାହିଁ । ତା'ର ନଜର ସେତେବେଳେ ଥାଏ ଗୋଟିଏ ଗୋଟିଏ ଶବ୍ଦ ଉପରେ । ଆହୁରି ଅଭ୍ୟାସ ଦ୍ୱାରା ଏକ ନଜରରେ ଗୋଟିଏ ଗୋଟିଏ ବାକ୍ୟ ପଢ଼ିପାରେ । ଏହିପରି କ୍ରମଶଃ ଭାବ ଗ୍ରହଣର କ୍ଷମତା ବଢ଼ିଗଲେ ସେ ଗୋଟିଏ ଗୋଟିଏ ପୃଷ୍ଠା ପଢ଼ିପାରେ ।’’ ସ୍ୱାମୀଜୀ ସେହି ଭାବରେ ହିଁ ପଢ଼ନ୍ତି । ଏହା କେବଳ ମନଃସଂଯମ ଓ ଏକାଗ୍ରତାର ଫଳ ବୋଲି ସ୍ୱାମୀଜୀ ମତବ୍ୟକ୍ତ କରିଥିଲେ ।

**ମନନ ଓ ଚିନ୍ତନ** – ଉତ୍ତମ ସୃଜନ ନିମିତ୍ତ ମନନ ଓ ଚିନ୍ତନ ଏକ ବିଶେଷ ତତ୍ତ୍ୱ ଅଟେ । କୌଣସି ବିଷୟକୁ ଅନୁଧ୍ୟାନ କରି ସୁସ୍ଥ ମସ୍ତିଷ୍କରେ ଚିନ୍ତନ କରିବାରେ ତାହାର ଅନୁଶୀଳନ ହୋଇଥାଏ । ତେଣୁ ଗହନ ଚିନ୍ତନ ଓ ମନନ ପାଇଁ ଉପଯୁକ୍ତ ଏକାନ୍ତ ଶାନ୍ତ ମୁହୂର୍ତ୍ତ ଏବଂ ମନଃସ୍ଥିତି ଯେତେବେଳେବି ଉପଲବ୍ଧ ହେବ ତାହାର ସଦୁପଯୋଗ ପାଇଁ ସର୍ବଦା ତତ୍ପର ରହିବା ଉଚିତ । ଚିନ୍ତନ ଓ ମନନ ଦ୍ୱାରା ଯେଉଁ ଭାବର ପରିପ୍ରକାଶ ହୁଏ, ତାହା ସୃଜନର ମୌଳିକତା ଓ ସ୍ରଷ୍ଟାର ସଫଳତା ଦିଗରେ ସହାୟକ ହୋଇଥାଏ ।

**ଧ୍ୟାନ ଓ ଶୃଙ୍ଖଳିତ ପରିବେଶ** – ରଚନାତ୍ମକ ସୃଜନ ଦିଗରେ ଧ୍ୟାନ ଓ ଶୃଙ୍ଖଳିତ ପରିବେଶ ଅତ୍ୟନ୍ତ ଲାଭଦାୟକ

ହୋଇଥାଏ । ଧ୍ୟାନ ଦ୍ୱାରା ମନ ଚାପମୁକ୍ତ ହୋଇଥାଏ । ସ୍ଥିରତା ଓ ଏକାଗ୍ରତା ବଢ଼ିଥାଏ । ତା' ସହିତ ଶୃଙ୍ଖଳିତ ପରିବେଶ ସମସ୍ତ ଭାରାକ୍ରାନ୍ତ ଅବସ୍ଥାକୁ ଦୂରୀଭୂତ କରିଥାଏ । ଏହାଦ୍ୱାରା ସ୍ରଷ୍ଟା ଏକ ସୁନ୍ଦର ସର୍ଜନା କରିବାରେ ଧୈର୍ଯ୍ୟ, ବୁଦ୍ଧି ଓ ଉତ୍ସାହ ପାଇଥାଏ । ଅସମ୍ପୂର୍ଣ୍ଣ ଓ ଅଶାନ୍ତ ମନରେ ବାଞ୍ଛିତ ସଫଳତାର ଆଶା କରାଯାଇ ନପାରେ । ତେଣୁ ମନକୁ ଶାନ୍ତ କରି ସୃଜନ ସଫଳତା ପାଇବାକୁ ହେଲେ ଧ୍ୟାନ ଓ ଶୃଙ୍ଖଳିତ ପରିବେଶର ଆବଶ୍ୟକତା ଜରୁରୀ ହୋଇଥାଏ ।

**ବିଶେଷଜ୍ଞଙ୍କ ସଙ୍ଗତି** – ସୃଜନାତ୍ମକ ଉତ୍କର୍ଷତା ପାଇଁ କେବଳ ପୁସ୍ତକ ବା ପରିବେଶ ଜ୍ଞାନ ଦେଇ ନଥାଏ । ଏଥିରେ ବିଶେଷଜ୍ଞଙ୍କର ସଙ୍ଗତି ମଧ୍ୟ ଏକାନ୍ତ ଆବଶ୍ୟକ । କୌଣସି ସୃଜନ ପୂର୍ବରୁ ସ୍ରଷ୍ଟା ଯେଉଁ ମୂଳ ସତ୍ୟକୁ ଖୋଜୁଥାଏ ଏବଂ ସେହି ବିଷୟକୁ ଅଧିକ ସଂପ୍ରସାରିତ କରିବାକୁ ଚାହୁଁଥାଏ, ତାହାର ପର୍ଯ୍ୟାପ୍ତ ଜ୍ଞାନ ଅନେକ ବିଶେଷଜ୍ଞଙ୍କ ପାଖରେ ଥାଏ । ବିଶେଷଜ୍ଞଙ୍କ ସହ ଆଲୋଚନା ଓ ପର୍ଯ୍ୟାଲୋଚନା କରିବା ଦ୍ୱାରା ଅଧିକ ଜ୍ଞାନ ମିଳିଥାଏ । ଏହାଦ୍ୱାରା ସୃଜନ କ୍ଷମତା ସୁଦୃଢ଼ ହୋଇଥାଏ । ଏହି ହେତୁ ସୃଜନଶୀଳତାରେ ବିଶେଷଜ୍ଞଙ୍କର ସଙ୍ଗତି ଜରୁରୀ ହୋଇଥାଏ ।

**ଗବେଷଣାତ୍ମକ ଅଭିଜ୍ଞତା** – ସୃଜନଶୀଳତା ପାଇଁ ଗବେଷଣା ଏକ ଗୁରୁତ୍ୱପୂର୍ଣ୍ଣ ତତ୍ତ୍ୱ ଅଟେ । ଯେତେ ଅଧିକ ଗବେଷଣା ହେବ ସେତେ ଅଧିକ ତଥ୍ୟ ପ୍ରକାଶିତ ହେବ । ମୂଳ ତତ୍ତ୍ୱର ଆବିଷ୍କାର ହେଲା ପରେ ନୂତନ ସୃଜନର ମୌଳିକତା ପ୍ରକାଶ ପାଏ । ଗବେଷଣାରୁ ଅଭିଜ୍ଞତା ଅଧିକ ହୋଇଥାଏ ।

**ସାମଗ୍ରିକ ଦୃଷ୍ଟିକୋଣ** – ସୃଜନଶୀଳତା ପାଇଁ ଆଉ ଏକ ତତ୍ତ୍ୱ ହେଉଛି ସାମଗ୍ରିକ ଦୃଷ୍ଟିକୋଣ । କୌଣସି ବିଷୟର ନିଷ୍କର୍ଷରେ ପହଞ୍ଚିବା ପାଇଁ ସାମଗ୍ରିକ ଦୃଷ୍ଟିକୋଣର ପ୍ରୟୋଜନୀୟତା ରହିଛି । ଗୋଟିଏ ପକ୍ଷ ଉପରେ ଧ୍ୟାନ କେନ୍ଦ୍ରିତ କରିବା ଦ୍ୱାରା ବିଷୟଟି ଅତିରଂଜିତ ହୋଇଯାଏ । ସୃଜନ ସମଗ୍ରତା ରହେ ନାହିଁ । ଏହାଦ୍ୱାରା ସଠିକ୍ ନିଷ୍କର୍ଷ ମିଳିପାରେ ନାହିଁ । ତେଣୁ ଉଭୟ ପକ୍ଷ ଉପରେ ସାମଗ୍ରିକ ଦୃଷ୍ଟିକୋଣ ରହିବା ଦ୍ୱାରା ସ୍ରଷ୍ଟାକୁ ସୃଜନ ସଫଳତା ମିଳିଥାଏ ।

**ସମାଲୋଚନା ବା ସମୀକ୍ଷା** – ସ୍ରଷ୍ଟା କୃତିର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ସମାଲୋଚନା ବା ସମୀକ୍ଷା । (ସମ୍ + ଆ + ଲୋଚନ + ଆ = ସମାଲୋଚନା), ଏହି ଶବ୍ଦର ଅର୍ଥ ହେଉଛି ସବୁ ଦିଗରୁ ଭଲ ଭାବେ ଦେଖିବା । (ସମ୍ + ଈକ୍ଷ + ଆ = ସମୀକ୍ଷା), ଏହି ଶବ୍ଦର ଅର୍ଥ ମଧ୍ୟ ସେଇ ସମାନ ଅର୍ଥ ସୂଚାଏ । ସମୀକ୍ଷା ବା ସମାଲୋଚନା କୌଣସି ସାଧାରଣ କାର୍ଯ୍ୟ ନୁହେଁ । ନିରପେକ୍ଷତା ସହିତ ତ୍ରୁଟି, ବିଚ୍ୟୁତି ଓ ସଠିକ୍ ଭାବେ ମୂଲ୍ୟାଙ୍କନ କରିବା ହିଁ ସମୀକ୍ଷାର ଉଦ୍ଦେଶ୍ୟ । ଏଥିରେ ଯେଉଁ ତର୍କ ଓ ବିଶ୍ଳେଷଣ ଥାଏ ତଦ୍ୱାରା ସତ୍ୟତାକୁ ନିରୂପଣ କରିହୁଏ । ତେଣୁ ସମୀକ୍ଷା ଦ୍ୱାରା ସୃଜନର ମୂଲ୍ୟବୋଧ ପ୍ରକାଶିତ ହୋଇଥାଏ । ଉତ୍ତମ ଓ ସଠିକ୍ ସୃଜନ ପାଇଁ ସମାଲୋଚନା ବା ସମୀକ୍ଷାର ଆବଶ୍ୟକତା ବହୁତ ଜରୁରୀ ହୋଇଥାଏ । ସ୍ରଷ୍ଟା କୃତିରେ ଏହା ପ୍ରତ୍ୟେକ ଭ୍ରମକୁ ସଂଶୋଧନ କରିବା ସହିତ ଏହାର ବିଶେଷତ୍ୱକୁ ପ୍ରକାଶିତ କରିଥାଏ ।

ସୃଜନଶୀଳତା ହେଉଛି ଏକ ଅନ୍ତଃସଲିଳା ଚିରସ୍ରୋତା ଫଲ୍‌ଗୁ । ଯାହା ସ୍ରଷ୍ଟାର ରଚନାରେ ସର୍ବଦା ନୂତନତ୍ୱ ଓ ମୌଳିକତ୍ୱକୁ ବିନା ପ୍ରତିବନ୍ଧରେ ପ୍ରକାଶ କରି ଏହାର ସତ୍ତା ବଜାୟ ରଖେ । ସ୍ରଷ୍ଟାର ଅନ୍ତରାତ୍ମାରେ ଥିବା ମାନବବାଦ, ଶ୍ରଦ୍ଧା ଓ ବିଚାରଶକ୍ତି ପ୍ରତ୍ୟେକ ସୃଜନ ପାଇଁ ମହତ୍ତ୍ୱପୂର୍ଣ୍ଣ ହୋଇଥାଏ । ଏହା ବ୍ୟତୀତ ସମ୍ବେଦନା, ଧୀର ସ୍ୱଭାବ ଓ ଶାନ୍ତ ଚିତ୍ତ ସୃଜନଶୀଳତାରେ ମଧୁରତା ଭରିଥାଏ । ତେଣୁ ଉତ୍ତମ ସୃଜନ ଦିଗରେ ଏହାର ଆଧାରଭୂତ ତତ୍ତ୍ୱଗୁଡ଼ିକ ସ୍ରଷ୍ଟାର ସର୍ବଦା ସହାୟକ ହୋଇଥାଏ ।

ପ୍ଲଟ୍ ନଂ –୧୩୬/୮୫୦
ବ୍ରହ୍ମେଶ୍ୱର ପାଟଣା
ଭୁବନେଶ୍ୱର –୧୮

# ଅଶୋକାଷ୍ଟମୀ ରଥଯାତ୍ରା

**ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ତ୍ରିପାଠୀ**

ବୌଦ୍ଧ ଜଗତରେ ପ୍ରସିଦ୍ଧ ତିବ୍ବତର ଲାମାମାନେ ସୂର୍ଯ୍ୟୋଦୟ ବେଳେ ସୂର୍ଯ୍ୟଦେବଙ୍କ ସହ ସମ୍ପର୍କ ଥିବା ମାରିଚୀଙ୍କୁ ପ୍ରାର୍ଥନା କରିଥାନ୍ତି । ହିନ୍ଦୁ ଦେବତା ସୂର୍ଯ୍ୟଙ୍କ ରଥକୁ ସାତଟି ଘୋଡ଼ା ଟାଣୁଥିବା ବେଳେ ମାରିଚୀଙ୍କ ରଥକୁ ସପ୍ତଶୂକରୀ ଟାଣିଥାନ୍ତି । ସୂର୍ଯ୍ୟଙ୍କ ସାରଥି ଅରୁଣଙ୍କର ଗୋଡ଼ ଦୃଶ୍ୟ ହୁଏ ନାହିଁ । ସେହିପରି ମାରିଚୀଙ୍କ ସାରଥି ଜଣେ ଦେବୀ ବା ରାହୁ ଯାହାଙ୍କର ଗୋଡ଼ ବି ଥାଏ ଅଦୃଶ୍ୟ । ମାରିଚୀ ଧ୍ୟାନୀ ବୁଦ୍ଧ ବୈରୋଚନଙ୍କଠାରୁ ଉତ୍ପତ୍ତି ହୋଇଛନ୍ତି । ତାଙ୍କଠାରୁ ଜନ୍ମ ହୋଇଥିବା ପାଞ୍ଚଗୋଟି ଦେବୀମାନଙ୍କ ମଧ୍ୟରୁ ମାରିଚୀ ଅନ୍ୟତମ । ମାରିଚୀ ଓ ବୈରୋଚନଙ୍କ ଯୁଗଳ ମୂର୍ତ୍ତିଥିବାର ଦେଖାଯାଇଥାଏ । ସାଧନା ମାଳାରେ ଛଅ ପ୍ରକାର ମାରିଚୀଙ୍କ ମୂର୍ତ୍ତିର ବର୍ଣ୍ଣନା ଅଛି । ସେମାନେ ଏକ, ପଞ୍ଚ ଓ ଷଡ଼ମୁଖୀ । ସେହିଭଳି ସେମାନଙ୍କ ମଧ୍ୟରେ ଦ୍ୱିଭୁଜା, ଅଷ୍ଟଭୁଜା, ଦଶଭୁଜା ଓ ବାରଭୁଜା ରହିଥାନ୍ତି । ମାରିଚୀଙ୍କ ଚାରି ସହଚରୀ ଯଥା ଭରାଳୀ, ଭଦାଳୀ, ଭର୍ତ୍ତାଳୀ ଏବଂ ବରାହୀମୁଖୀ । ତାଙ୍କର ପୂଜା ମନ୍ତ୍ର 'ଓଁ ମାରିଚାଇ ମମ୍ ହୁମ୍ ସ୍ୱାହା ବା ଓଁ ବଜ୍ରବେତାଳି ହୁଁ ଫଟ୍ ।' ସାଧନା ମାଳାରେ ବିସ୍ତାରିତ



ଛଅପ୍ରକାର ମାରିଚୀଙ୍କ ସମ୍ପର୍କରେ ଆଲୋଚନା କରାଯାଇଛି ।

ମାରିଚୀ ପ୍ରକାର ଭେଦରେ ଛଅ ହେଲେ ମଧ୍ୟ ଆର୍ଯ୍ୟ ମାରିଚୀଙ୍କ ବ୍ୟତୀତ ପ୍ରତ୍ୟେକଙ୍କ ହାତରେ ଅଶୋକ ଡାଳ ବା ଫୁଲ ଧରିଥିବାର ସ୍ପଷ୍ଟତା ଦେଖାଯାଇଥାଏ । ତେଣୁ ମାରିଚୀଙ୍କର ପ୍ରିୟ ହିଁ ଅଶୋକ ଗଛ ବା ଏହାର ପସ୍ଫୁଟିତ ପୁଷ୍ପ । ଉଭୟ ବରାନନା ମାରିଚୀଙ୍କର ରହିଛି ବାରହାତ । ବାମ ଭାଗରେ ଥିବା ଛଅଟି ହାତ ମଧ୍ୟରୁ ଗୋଟିଏ ହାତରେ ବ୍ରହ୍ମାଙ୍କର ମସ୍ତକ ଧାରଣ କରିଥାନ୍ତି । ତାଙ୍କ ମସ୍ତକର ମୁକୁଟରେ ବୈରୋଚନଙ୍କ ପ୍ରତିକୃତି ଥାଏ ଓ ହିନ୍ଦୁ ବିଗ୍ରହ ହରି, ହର ଓ ବ୍ରହ୍ମାଙ୍କୁ ଗୋଡ଼ରେ ଚାପି ଧରିଥିବାର ଦେଖାଯାଏ । ମାତ୍ର ସପ୍ତଶୂକରୀ ଟାଣୁଥିବା ରଥ ଓ ଚାରିଜଣ ସହଚର ଭର୍ତ୍ତାଳୀ, ଭଦାଳୀ, ଭରାଳୀ ଓ ବରାହୀମୁଖୀଙ୍କ ସମ୍ପର୍କରେ ସାଧନା ମନ୍ତ୍ର ନିରବ ରହିଛି । ସେହିପରି ଷଡ଼ମୁଖୀ, ଦ୍ୱାଦଶ ଭୁଜା ବଜ୍ରଧାତ ବିଶ୍ୱବରୀ ମାରିଚୀ ତାଙ୍କର ଡାହାଣ ପାଖ ଛଅ ହାତ ମଧ୍ୟରୁ ଗୋଟିକରେ ବ୍ରହ୍ମାଙ୍କ ମସ୍ତକ ଧାରଣ କରିଛନ୍ତି । ମୁଖ୍ୟତଃ ମାରିସୀ ବା ମାରିଚୀ ବିଗ୍ରହମାନ ଯେଉଁ ପ୍ରକାରର ହେଲେ ମଧ୍ୟ ଅଶୋକ ଗଛର ଡାଳ ବା ସ୍ତବକ ପ୍ରତ୍ୟେକ ଧାରଣ କରିଥାନ୍ତି । ଭାରତୀୟ ଉପମହାଦେଶରେ ମାରିଚୀ ଦ୍ୱିଭୁଜା, ଗୋଟିଏ ହସ୍ତ ବରଦା ମୁଦ୍ରା, ଅନ୍ୟଟି ଅଶୋକ ବୃକ୍ଷର ଡାଳ ଧରିଥିବା ସହ ସପ୍ତଶୂକରୀ ରଥରେ ଆରୋହଣ କରିଥିବାର ଦେଖାଯାଏ ।

ଭୁବନେଶ୍ୱର ଏକ ବୌଦ୍ଧକ୍ଷେତ୍ର ଭାବେ ସ୍ମରଣାତୀତ କାଳରୁ ବିଦିତ । ଏଠାରେ ହୋଇ ଆସୁଥିବା ଅଶୋକାଷ୍ଟମୀ ଯାତ୍ରା ବୌଦ୍ଧଯାତ୍ରାର ଏକ ପ୍ରମୁଖ ଉତ୍ସବ । ଚୈତ୍ର ମାସ ଶୁକ୍ଳ ପକ୍ଷ ଅଷ୍ଟମୀ (ପୁନର୍ବସୁ ବା ପୁଷ୍ୟା ସୁନକ୍ଷତ୍ର) ଦିନଠାରୁ ପାଞ୍ଚଦିନ ପର୍ଯ୍ୟନ୍ତ ଏହି ଉତ୍ସବ ପାଳିତ ହୁଏ । କହିବାକୁ ଗଲେ ଏହା ହିଁ ଭୁବନେଶ୍ୱରରେ ମାରିଚୀଙ୍କ ବସନ୍ତ ଉତ୍ସବ । ଅଶୋକାଷ୍ଟମୀର ପ୍ରତ୍ୟୁଷରୁ ମାରିଚୀକୁଣ୍ଡର ପାଣିକୁ ବନ୍ଧ୍ୟା ସ୍ତ୍ରୀ ଲୋକମାନେ ପିଇବା ସହ ଆଠଟି ଅଶୋକ କଢ଼ି ଖାଇଲେ ପୁତ୍ରବତୀ ହେବାର ପ୍ରବାଦ ରହିଛି । ସେଥିପାଇଁ ବହୁ ପ୍ରତ୍ୟାଶୀ ସେହିଦିନ ପ୍ରତ୍ୟୁଷରୁ ସେଠାରେ ଏକତ୍ରିତ ହୋଇଥାନ୍ତି ଓ ସ୍ଥାନୀୟ ପ୍ରଶାସନ ପକ୍ଷରୁ ତାହାର ପାଣିକୁ ନିଲାମ କରାଯାଏ । ମୁକ୍ତେଶ୍ୱର ଶୈବପୀଠର ମନ୍ଦିରକୁ ଲାଗି ରହିଛି ଏହି ମାରିଚୀକୁଣ୍ଡ । ଏହାର ଦୈର୍ଘ୍ୟ ୧୦', ପ୍ରସ୍ଥ ୫' ଓ ଗଭୀରତା ପ୍ରାୟ ୧୦ଫୁଟ । କେଦାରଗୌରୀ କୁଣ୍ଡରୁ ମାଟିତଳେ ଏକ ନାଳ ସହ ଏହି କୁଣ୍ଡ ସମ୍ପୃକ୍ତ ଅଛି । ଏହି କୂପରୁ ପାଣି ପିଇବା ପରେ ଆଠଟି ଅଶୋକ କଢ଼ି ମନ୍ତ୍ରୋଚାରଣ ସହ ଖାଇବାକୁ ଦିଆଯାଏ । ଏହା ଏକ ଧାର୍ମିକ ବିଶ୍ୱାସ । ତେବେ ଏଭଳି ବିଶ୍ୱାସର ପ୍ରଚ୍ଛନ୍ନ ଭାବନା କ'ଣ ତାହାର ଆଲୋଚନା କଲେ ଜଣାଯାଏ ଯେ ମାରିଚୀକୁଣ୍ଡର ଜଳପାନ ଓ ଅଶୋକ କଢ଼ି ଖାଇ ଦେବୀଙ୍କର ଆଶୀର୍ବାଦ ନେବା ଏକ ବୌଦ୍ଧ ଧାର୍ମିକ ଚେତନା । ମୁକ୍ତେଶ୍ୱର ମନ୍ଦିର ଏକ ପିଢ଼ ଉପରେ ନିର୍ମାଣ ହୋଇଛି । ବହୁ ଶୈବପୀଠ ପୂର୍ବାଭିମୁଖୀ ଥିବାବେଳେ ଏଠାରେ ହୋଇଛି ତାହାର ବ୍ୟତିକ୍ରମ । ମୁଖ୍ୟ ମନ୍ଦିର ପଞ୍ଚରଥ ଶୈଳୀରେ ନିର୍ମିତ । ସ୍ଥାପତ୍ୟ କଳା ଦୃଷ୍ଟିରୁ ଏହା ଅନନ୍ୟ । ମନ୍ଦିର ପ୍ରଦକ୍ଷିଣ କରିବା ପାଇଁ ଏହାର ଚତୁଃପାର୍ଶ୍ୱରେ ପ୍ରଦକ୍ଷିଣ ପ୍ରସ୍ତର ନିର୍ମିତ ପଥ ରହିଛି । ଏଥିସହିତ ଏକ ଅଳ୍ପ ଉଚ୍ଚତା ବିଶିଷ୍ଟ ପ୍ରସ୍ତର ପ୍ରାଚୀର ଏହାକୁ ଘେରି ରହିଥିବାର ଦେଖାଯାଏ । ନିମ୍ନ ଅଂଶରେ ଚୈତ୍ୟ ପଦକ ସଦୃଶ ନକ୍ସା ମଧ୍ୟରେ ଜୈନତୀର୍ଥଙ୍କରମାନଙ୍କର ପ୍ରତିମା ସବୁ ରହିଛି । ପ୍ରାଚୀର ମଧ୍ୟଭାଗର ଖୋପଗୁଡ଼ିକରେ ବୌଦ୍ଧମାନଙ୍କର ଚକ୍ରପଦ୍ମ ରହିଛି । ହିନ୍ଦୁ ଦେବାଦେବୀମାନଙ୍କର ପ୍ରତିମୂର୍ତ୍ତି ସହିତ ଧ୍ୟାନୀ ବୁଦ୍ଧଙ୍କର ନିଖୁଣ ବିଗ୍ରହ ଏଠାରେ ଥିବାର ଦେଖିବାକୁ ମିଳେ । ମନ୍ଦିରର ଉପର ଭାଗରେ ଅନ୍ୟ ମନ୍ଦିର ଭଳି ଗଜସିଂହମାନଙ୍କର ମୂର୍ତ୍ତି ନାହିଁ । ଏହା ଶୈବପୀଠରେ ପରିଣତ ହେବା ପୂର୍ବରୁ ଏକ ଚୈତ୍ୟ ଥିଲା ଓ ତାହାର ଅବସାନ ପରେ କାରୁକାର୍ଯ୍ୟ ବିମଣ୍ଡିତ ସୁନ୍ଦର ତୋରଣ ସହ ଏଭଳି ଶୈବ ମନ୍ଦିର ଏଠାରେ ଗଢ଼ିଉଠିଛି । ପ୍ରଶ୍ନ ଆସେ କୌଣସି ମନ୍ଦିରରେ ତୋରଣ ନଥିଲା ବେଳେ ଏପରି ସୁନ୍ଦର କାରୁକାର୍ଯ୍ୟ ପୂର୍ଣ୍ଣ ପ୍ରବେଶ ତୋରଣ ଏଠାରେ କାହିଁକି ତିଆରି ହୋଇଛି? ତେବେ ତାହାର କୌଣସି ଇତିହାସ ନାହିଁ । ବୌଦ୍ଧ ଚୈତମାନଙ୍କରେ

ଏପରି ତୋରଣମାନ ପ୍ରାୟ ରହିଥାଏ । ଶୈବପୀଠରେ ବୌଦ୍ଧଦେବୀ ମାରିଚୀଙ୍କ ନାମରେ କୁଣ୍ଡ, ତା'ର ପାଣି ଓ ଅଶୋକ କଢ଼ି ଖାଇବାର ତାତ୍ପର୍ଯ୍ୟ ପଛରେ ଲୁଚି ରହିଛି ଯେ ଏହା ଦିନେ ଥିଲା ଏକ ବୌଦ୍ଧପୀଠ ଏବଂ ସେଠାରେ ମାରିଚୀ ଦେବୀ ହିଁ ପୂଜା ପାଉଥିଲେ । ଏହି ପୀଠର ଅଦୂରରେ ପୂଜିତା ଗୌରୀ ମଧ୍ୟ ଏକ ବୌଦ୍ଧଦେବୀ ଯାହାକୁ କି ଗୌରୀତାରା କୁହାଯାଏ । କେଦାରଶ୍ୱର ମନ୍ଦିର ଗଙ୍ଗ ରାଜତ୍ୱରେ ନିର୍ମିତ ହୋଇଥିବା ସେଠାରେ ଥିବା ଶିଳାଲିପିରୁ (ଅନ୍ୟତ୍ର ଦର୍ଶାଯାଇଛି) ଜଣାଯାଏ ।

ହିନ୍ଦୁଙ୍କ ପୂଜିତ ସୂର୍ଯ୍ୟ ବିରଞ୍ଚି ବା ସୂର୍ଯ୍ୟ ନାରାୟଣ ଭାବେ ବିଦିତ । ସେହିଭଳି ବୌଦ୍ଧ ଦେବୀ ମାରିଚୀ ସୂର୍ଯ୍ୟଙ୍କ ସଦୃଶ ଓ ମା'ଭାବେ ପୂଜିତା । ବୌଦ୍ଧ ମତରେ ସେ ମଧ୍ୟ ସମସ୍ତ ଶକ୍ତିର ଆଧାର । ଏହି ଦେବୀ ବିଗ୍ରହମାନ ହାତରେ କାହିଁକି ଅଶୋକ ଡାଳ ବା ସ୍ତବକ ଧାରଣ କରିଥାନ୍ତି ସେ ସମ୍ପର୍କରେ ବୌଦ୍ଧ ଶାସ୍ତ୍ରମାନ ନିରବ ରହିଛି । ବସନ୍ତ ଋତୁରେ ଅଶୋକ ଫୁଲକାମୀ ଜନମାନଙ୍କର ଅତ୍ୟନ୍ତ ପ୍ରିୟ । ମହର୍ଷି ବାତ୍ସାୟନଙ୍କ ଦ୍ୱାରା ରଚିତ କାମଶାସ୍ତ୍ର ଗ୍ରନ୍ଥରେ ଉଲ୍ଲେଖ ଥିବା ୧୭ଟି ପର୍ବ ମଧ୍ୟରେ ଅଶୋକ ପର୍ବ ଅନ୍ୟତମ । କାମଦେବଙ୍କ ପଞ୍ଚ ଫୁଲଶର ମଧ୍ୟରେ ଅଶୋକ ଫୁଲର ସ୍ଥାନ ରହିଛି । ସାହିତ୍ୟ ଦର୍ପଣରେ ବର୍ଣ୍ଣନା ଅଛି ଯେ ନାରୀ ପଦାଘାତରେ ଅଶୋକ ବିକଶିତ ହୁଏ । ମହାକବି କାଳିଦାସଙ୍କ ମେଘଦୂତ, ମାଳବିକାଗ୍ନିମିତ୍ର ଆଦି ଗ୍ରନ୍ଥରେ ବି ନାରୀ ପଦାଘାତଦ୍ୱାରା ଅଶୋକ ବୃକ୍ଷରେ ପୁଷ୍ପ ପ୍ରସ୍ଫୁଟିତ ହୋଇଥାଏ, ଯାହାକୁ ଦୋହାଦ ଭାବେ ବର୍ଣ୍ଣନା କରାଯାଇଛି । ବହୁ ପ୍ରାଚୀନ ମନ୍ଦିର ଗାତ୍ରରେ ଥିବା ଭାସ୍କର୍ଯ୍ୟରେ ନାରୀ ଅଶୋକ ଡ଼ାଳକୁ ଧରି ଠିଆ ହେବାର ଦୃଶ୍ୟ ରହିଛି । ବସନ୍ତ କାଳରେ ପୁଷ୍ପବିମଣ୍ଡିତ ଅଶୋକ ବୃକ୍ଷର ବର୍ଣ୍ଣନା କବି ଲେଖନୀରେ ସତତ ମୁଖରିତ ହୋଇଛି । ତେଣୁ ମାରିଚୀ ସୂର୍ଯ୍ୟଙ୍କ ସମକକ୍ଷା ଓ ସମସ୍ତ ଶକ୍ତିର ଆଧାର ହେଲେ ମଧ୍ୟ ସେ ବାସନ୍ତୀ । ହିନ୍ଦୁ ପୂଜିତ ହରି, ହର, ବ୍ରହ୍ମା ମଧ୍ୟ ତାଙ୍କର କବଳିତ । ମାରିଚୀଙ୍କ ପଞ୍ଚଦିବସର ବସନ୍ତୋତ୍ସବରେ ତାଙ୍କର ଦର୍ଶନ ନିମନ୍ତେ ସେମାନଙ୍କର ଆଗମନ ହୋଇଥାଏ ଓ ଉତ୍ସବ ଶେଷରେ ସେମାନେ ପଛେଇ ଫେରିଯାଆନ୍ତି ନିଜ ନିଜର ଆଳୟକୁ ।

ମାଉସୀ ମା' ମନ୍ଦିର ଅତୀତରେ ଥିଲା ମାରିଚୀଙ୍କ ପୀଠ । ମାରିଚୀ ବା ମାରିସୀ ମା'ରୁ ମାଉସୀ ମା' ଶବ୍ଦ କ୍ରମଶଃ ଅପଭ୍ରଂଶ ହୋଇଛି । ସେଠାରେ ଥିବା ପାଞ୍ଚଟି ମନ୍ଦିର ମଧ୍ୟରୁ ମାରିଚୀ ଓ ତାଙ୍କର ୪ଜଣ ସହଦେବୀ ଭର୍ତ୍ତାଳୀ, ଭଦାଳୀ, ଭରାଳୀ ଓ ବରାହୀମୁଖୀଙ୍କ ନିମନ୍ତେ ଉଦ୍ଦିଷ୍ଟ ଥିଲା । ମନ୍ଦିର ପରିସର ମଧ୍ୟରେ ଅଛି ଅଶୋକ ଝର ଓ ଅଶୋକ କୁଣ୍ଡ । ଯାହାର ପାଣିରେ ଏହି ଦିନ ସ୍ନାନ କଲେ ଶାଶ୍ୱତ ପୁଣ୍ୟ ଲାଭ ହୁଏ । ମାରିଚୀ ପୀଠର ଦକ୍ଷିଣ ଦିଗରେ ଥିଲା ବିଜୟ ସ୍ତମ୍ଭ ଯାହାକି ପରବର୍ତ୍ତୀ କାଳରେ ଅଶୋକ ସ୍ତମ୍ଭ ଭାବେ ବିଦିତ ହୋଇଛି । ସେଠାରେ ପଡ଼ିଥିବା ଏହି ସ୍ତମ୍ଭର ମୂଳ ଅଂଶକୁ ହଟାଇ ନିଆଯାଇ ରାଜ୍ୟ ସଂଗ୍ରହାଳୟର ପରିସର ମଧ୍ୟରେ ରଖାଯାଇଛି । ଖମ୍ବର ଗଣ୍ଡି ଅଂଶ ଭାସ୍କରେଶ୍ୱର ଶିବଲିଙ୍ଗ ଭାବେ ପୂଜିତ ଯାହାର ମୂଳ ଅଂଶରେ ଲେଖା ରହିଛି ବୌଦ୍ଧଧାରିଣୀ ମନ୍ତ୍ର । ଯାହାକି ପୂର୍ବରୁ ବିଜୟ ସ୍ତମ୍ଭ ଭାବେ ବିଦିତ ଥିଲା । ପୁରୁଣା ଭୁବନେଶ୍ୱରସ୍ଥ ବିଭୀଷଣେଶ୍ୱର, ଧଉଳିର ଧବଳେଶ୍ୱର ପ୍ରଭୃତି ଶିବଲିଙ୍ଗମାନ ଏହିଭଳି ସ୍ତମ୍ଭର ଅଂଶ ବିଶେଷ । ମାରିଚୀ ପୀଠର ଉତ୍ତରକୁ ଅଛି ପୁରାତନ ଗୌତମନଗର । ପୁଣି ସ୍ଥାନଟିର ଅନତି ଦୂରରେ ଅଛି ବାରିଗଡ଼ ବା ବଡ଼ଗଡ଼ । ଯାହା ଉପରେ ସଗର୍ବରେ ଠିଆ ହୋଇଛି ରାଜ୍ୟ ସଂଗ୍ରହାଳୟ । ବିଶାଳ ପ୍ରାସାଦ ମଧ୍ୟରେ ଦୁଇଟି ପ୍ରାଚୀନ ବାମ୍ପୀ ବ୍ୟତୀତ ଅତୀତର କୌଣସି ସ୍ମାରକୀ ସେଠାରେ ଆଉ ଦେଖିବାକୁ ମିଳେନାହିଁ । ମାରିଚୀ ପୀଠର ଦକ୍ଷିଣକୁ ଅତି ଅଳ୍ପ ଦୂର ରେଲଲାଇନ୍ ପାଖରେ ଅଛି କୁକୁଟେଶ୍ୱର ଶୈବପୀଠ । ଅତୀତରେ ଏଠାରେ କୁକୁଟେଶ୍ୱର ପଡ଼ା ଥିଲା । ବୋଧଗୟା ନିକଟରେ କୁକୁଟପଡ଼ା ନାମରେ ଏକ ଚୈତ୍ୟ ଥିଲା ଓ ସେଠାରେ କାଶ୍ୟପ ବୁଦ୍ଧ ଅବସ୍ଥାନ କରୁଥିଲେ । ଏହି ପୀଠ ସମ୍ପର୍କରେ ଐତିହାସିକ ଗବେଷଣା ଅବ୍ୟାହତ ରହିଲେ ବହୁ ଅନାଲୋଚିତ ତଥ୍ୟ ମିଳିପାରନ୍ତା । ମୋର ପିଲାଦିନେ ଏହି ପୀଠରେ କୌଣସି ମନ୍ଦିର ନଥିବା

ଦେଖିଛି । ଆଜିର ମାରିଚୀ ପୀଠରେ ରାମେଶ୍ୱର, ଲକ୍ଷ୍ମଣେଶ୍ୱର, ଭରତେଶ୍ୱର, ଶତ୍ରୁଘ୍ନେଶ୍ୱର ନାମରେ ଯେଉଁ ଚାରୋଟି ମନ୍ଦିର ଦେଖାଯାଏ ଏହା କେବଳ ଉପଯୁକ୍ତ ମାରିଚୀ ମା'ଙ୍କ ସହଦେବୀମାନଙ୍କର ମନ୍ଦିରକୁ ପରିବର୍ତ୍ତନ କରାଯାଇଛି । ରାମେଶ୍ୱର ନାମରେ ବର୍ତ୍ତମାନର ମନ୍ଦିର ହିଁ ମାରିଚୀଙ୍କ ନିମନ୍ତେ ଉଦ୍ଦିଷ୍ଟ ଥିଲା । ଏହି ଦେବୀ ବିଗ୍ରହମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ମନ୍ଦିରମାନଙ୍କରୁ ବୌଦ୍ଧ ସ୍ଥାପତ୍ୟର ଚିହ୍ନ ଏ ପର୍ଯ୍ୟନ୍ତ ଲିଭିଯାଇ ନାହିଁ । ବିଜୟ ପଡ଼ିଆ ଭାବେ ଯେଉଁ ସ୍ଥାନକୁ କୁହାଯାଉଛି, ତାହା ହିଁ ଥିଲା ବିଜୟସ୍ତମ୍ଭର ପ୍ରକୃତ ସ୍ଥାନ । ମାରିଚୀଙ୍କ ସହଚରୀ ଭର୍ତ୍ତାଳୀ, ଭଦାଳୀ (ଭୋଦଳ), ଭରାଳୀ (ଭରାଳୀ) ଓ ଭରାହୀ (ବରାହୀ) ନାମରେ ଚାରୋଟି ଜନପଦ ଭୁବନେଶ୍ୱରକୁ ଲାଗିଥିବା ବର୍ତ୍ତମାନର କଟକ ସଦରଥାନାରେ ରହିଛି । ଭର୍ତ୍ତାଳୀ– ନାଲି ବର୍ଣ୍ଣ, ଚାରିହାତ, ନାଲିଲୁଗା ଓ ସମସ୍ତ ଅଳଙ୍କାର ପରିହିତା, ଫାଶ ଓ ଅଶୋକ ପୁଷ୍ପ ବାମ ହାତରେ ଥିବାବେଳେ ବ୍ରଜାଙ୍କୁଶ ଏବଂ ଛୁଞ୍ଚି ଦକ୍ଷିଣ ହାତରେ ଧାରଣ କରିଥାନ୍ତି । ଭଦାଳୀ– ବର୍ଣ୍ଣ–ହଳଦିଆ, ଫାଶ ଓ ବଜ୍ର ବାମ ହସ୍ତରେ ଥିବାବେଳେ ଅଶୋକ ପୁଷ୍ପ ଓ ଛୁଞ୍ଚି ରହିଛି ଦକ୍ଷିଣ ହସ୍ତରେ । ଭରାଳୀ– ଅନେକାଂଶରେ ଭଦାଳୀଙ୍କ ଭଳି ଦେଖାଯିବା ସହ ବଜ୍ର ଓ ଛୁଞ୍ଚି ଦକ୍ଷିଣ ହାତରେ ଧରିଛନ୍ତି ଅଶୋକ ଫୁଲ ଏବଂ ଫାଶ ତାଙ୍କର ବାମ ହାତରେ ରହିଥିବାର ଦେଖାଯାଏ । ବରାହୀମୁଖୀ– ଅନେକାଂଶରେ ଉପର ବର୍ଣ୍ଣିତ ଦୁଇ ବିଗ୍ରହଙ୍କ ପିନ୍ଧିଥିବା ଅଳଙ୍କାର ସହିତ ସମାନ । ରକ୍ତ ବର୍ଣ୍ଣ ଦେହ । ଧନୁ ଓ ତୀର ଦକ୍ଷିଣ ହସ୍ତରେ ଥିବାବେଳେ ବାମ ହାତରେ ଫାଶ ସହିତ ଅଶୋକ ଫୁଲ ରହିଛି । ମାରିଚୀଙ୍କ ଏହି ସହଚରୀମାନଙ୍କ ବର୍ଣ୍ଣନାର ତାତ୍ପର୍ଯ୍ୟ ହେଲା ଯେ ପ୍ରତ୍ୟେକ ଅଶୋକଫୁଲକୁ ଧାରଣ କରିଥାନ୍ତି । ତେଣୁ ଅଶୋକାଷ୍ଟମୀ ସହ ଅଶୋକ ପୁଷ୍ପର ମହତ୍ତ୍ୱକୁ ଏଠାରେ ପ୍ରତିପାଦନ କରାଯାଇଛି ମାତ୍ର । ଏହି ପୀଠକୁ ଲାଗି ରହିଛି ନାଗେଶ୍ୱର ଟାଙ୍ଗୀ ଓ ସେହି ନାମରେ ଶୈବପୀଠ ମୈତ୍ରେୟ ବୁଦ୍ଧଙ୍କର ଅତି ପ୍ରିୟ ଥିଲା ନାଗେଶ୍ୱର ପୁଷ୍ପ । ସେଥିପାଇଁ ସମ୍ଭବତଃ ସ୍ଥାନଟିର ନାମ ନାଗେଶ୍ୱର ଟାଙ୍ଗୀ ହୋଇଛି । ପିଲାବେଳେ ବହୁ ନାଗେଶ୍ୱର ଏଠାରେ ଥିବାର ଲେଖକ ଦେଖିଛି ।

ଅଶୋକାଷ୍ଟମୀ ଦିନ ଲିଙ୍ଗରାଜଙ୍କ ବିଜୟ ପ୍ରତିମା ଚନ୍ଦ୍ରଶେଖର, ଶକ୍ତି ସ୍ୱରୂପିଣୀ ମାତା ଦୁର୍ଗା (ରୁକ୍ମିଣୀ) ଦୋଳଗୋବିନ୍ଦ (ବିଷ୍ଣୁ) ରଥରେ ଯାତ୍ରା କରିଥାନ୍ତି ଓ ଏଥିରେ ବ୍ରହ୍ମା ସାରଥି ହୁଅନ୍ତି । ରଥର ୪ଟି ଚକ, ୨୧ଟି ଛାୟା, ୧୬ କରମଣ୍ଡଳ, ୪ ତୋରଣ, ୪ଅଶ୍ୱ ଓ ସୁବର୍ଣ୍ଣ କଳସ ଥାଏ । ଆନୁମାନିକ ତ୍ରୟୋଦଶ ଶତାବ୍ଦୀଠାରୁ ଷୋଡ଼ଶ ଶତାବ୍ଦୀ ମଧ୍ୟରେ ରଚିତ ସ୍ୱର୍ଣ୍ଣାଦ୍ରୀ ମହୋଦୟ, ଏକାମ୍ର ଚନ୍ଦ୍ରିକା, କପିଳ ସଂହିତା ପ୍ରଭୃତି ଗ୍ରନ୍ଥରେ ଲିଙ୍ଗରାଜଙ୍କ ବିବିଧ ଯାତ୍ରା ସମ୍ପର୍କରେ ଉଲ୍ଲେଖ ରହିଛି । ସେହିସବୁରୁ ଜଣାଯାଏ ଯେ ଏହି ରଥଯାତ୍ରା ସମସ୍ତ ଯାତ୍ରା ମଧ୍ୟରେ ଥିଲା ସର୍ବୋତ୍ତମ । ଅରୁଣ ଅର୍ଥାତ୍ ସୂର୍ଯ୍ୟଙ୍କ ବର୍ଣ୍ଣରେ ଏହି ରଥ ପରିକଳ୍ପିତ । ୧୬ଶ ଶତାବ୍ଦୀର ମିଥିଳାର କବି ବାଚସ୍ପତି ମିଶ୍ର ସ୍ୱରଚିତ 'ତୀର୍ଥ ଚିନ୍ତାମଣି' ଗ୍ରନ୍ଥରେ କୃତିବାସ ବା ଲିଙ୍ଗରାଜଙ୍କ ମାହାତ୍ମ୍ୟ ଓ ଅଶୋକାଷ୍ଟମୀ ତିଥିରେ କୃତିବାସଙ୍କ ଦର୍ଶନର ବୈଶିଷ୍ଟ୍ୟତାର ବର୍ଣ୍ଣନା କରିଛନ୍ତି । ଏହି ଅରୁଣ ବର୍ଣ୍ଣ ରଥରେ ତାଙ୍କୁ ଦର୍ଶନ କଲେ ସର୍ବ ପାପ କ୍ଷୟ ହେବାର ସେଥିରେ ଉଲ୍ଲେଖ ମଧ୍ୟ ରହିଛି । ତେଣୁ ଲିଙ୍ଗରାଜଙ୍କ ରଥର ବର୍ଣ୍ଣ ସୂର୍ଯ୍ୟ ବା ଅରୁଣ ବର୍ଣ୍ଣ ହେବାର ତାତ୍ପର୍ଯ୍ୟ ଆଉ କ'ଣ ବା ଥାଇପାରେ? ଶିବ, ବିଷ୍ଣୁ, ବ୍ରହ୍ମା, ସମେତ ରୁକ୍ମିଣୀ, ଗୋପାଳୁଣୀ ପ୍ରମୁଖ ଦେବ ଓ ଦେବୀମାନଙ୍କର ଏକତ୍ର ରଥ ଆରୋହଣ କରିଯିବା ଓ ମାରିଚୀ ପୀଠରେ ପାଞ୍ଚଦିନ ରହି ସେଠାରେ ଆୟୋଜିତ ବସନ୍ତୋତ୍ସବରେ ଭାଗ ନେବା ମଧ୍ୟ ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ବିଜୟ ପଡ଼ିଆରେ ରୁକୁଣା ରଥ ପହଞ୍ଚିବା ପରେ ସେଠାରୁ ରଥାରୁଢ଼ ଦେବ ଦେବୀମାନଙ୍କୁ ମାରିଚୀ ମା'ଙ୍କ ପୀଠକୁ ନିଆଯାଏ । ଏହି ରଥରେ କପିଳେଶ୍ୱରଙ୍କ ଚଳନ୍ତି ପ୍ରତିମାକୁ ମଧ୍ୟ ଅଣାଯାଇଥାଏ, ଯାହାକି ଐତିହାସିକ ଦୃଷ୍ଟିରୁ ହୋଇଛି ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ । କପିଳେଶ୍ୱର ଏକ ବୌଦ୍ଧପୀଠ । ଏହି ରଥର ନାମ ରୁକୁଣା ରଥ କାହିଁକି ହୋଇଛି, ତା'ର କୌଣସି ନିର୍ଦ୍ଦିଷ୍ଟ ଇତିହାସ ନାହିଁ । ଲୋକମୁଖରେ ଏ ସମ୍ପର୍କରେ ବହୁ ଜନଶ୍ରୁତି ପ୍ରଚଳିତ । ସେ ମଧ୍ୟରୁ ଗୋଟିଏ ହେଲା ଶ୍ରୀଜଗନ୍ନାଥ (ଶ୍ରୀକୃଷ୍ଣ) ତାଙ୍କ ଭଉଣୀ ସୁଭଦ୍ରା ଓ ବଡ଼ଭାଇ ବଳରାମଙ୍କୁ ନେଇ ନିଜର ଆଦି ପୀଠ ଗୁଣ୍ଡିଚା

ମନ୍ଦିରକୁ ଯିବାବେଳେ ମାତା ଲକ୍ଷ୍ମୀ ବା ରୁକ୍ମିଣୀଙ୍କୁ ସାଥିରେ ନେଇ ନଥାନ୍ତି । ତେଣୁ କ୍ରୋଧିତା ମାତା ଗୁଣ୍ଡିଚା ଉତ୍ସବବେଳେ ପଟୁଆରରେ ଯାଇ ରଥର ଗୋଟିଏ ପାଖ ଭାଙ୍ଗିବା ସହ ଶ୍ରୀଜଗନ୍ନାଥଙ୍କୁ ଶ୍ରୀମନ୍ଦିର ମଧ୍ୟରେ ପ୍ରବେଶ କରାଇ ଦିଅନ୍ତି ନାହିଁ । ଶେଷରେ ଲକ୍ଷ୍ମୀ ଓ ପ୍ରଭୁଙ୍କ କଳିର ସମାଧାନ ହେବା ପରେ ଶ୍ରୀଜଗନ୍ନାଥ ଭଉଣୀ ଓ ଭାଇଙ୍କ ସହିତ ଶ୍ରୀମନ୍ଦିରରେ ପ୍ରବେଶ କରିଥାନ୍ତି । ସେଥିପାଇଁ କୃତିବାସ (ଲିଙ୍ଗରାଜ) ନିଜର ଭଉଣୀ ରୂପେ ମାନ୍ୟତା ପାଇଥିବା ମାତା ରୁକ୍ମିଣୀଙ୍କୁ ସାଥିରେ ନେଇ ରଥରେ ବୁଲାଇଥାନ୍ତି ଓ ତାଙ୍କ ସମ୍ମାନ ପାଇଁ ରଥର ନାମ ରୁକୁଣା ରଥ ହୋଇଥିବାର କୁହାଯାଏ । ଏହା ଏକ ଧାର୍ମିକ ଚେତନା । କେବଳ ଧର୍ମପ୍ରାଣ ଲୋକଙ୍କୁ ଆକୃଷ୍ଟ କରିବା ନିମନ୍ତେ ଏପରି ଗପର ହୋଇଛି ସୃଷ୍ଟି । ମାତ୍ର ରୁକୁଣା ରଥ ନାମକରଣର ଏହା ମୀମାଂସାଯୁକ୍ତ ଉତ୍ତର ନୁହେଁ । ପୁଣି ସେ ରଥ ଅଣଲେଉଟା ଅର୍ଥାତ୍ ରଥ ଆଉ ପଛକୁ ନ ଘୂରି ସେହି ପଛପଟରେ ହିଁ ଟଣା ଯାଇ ଫେରାଇ ଅଣାଯାଏ । ବିଜେ ପ୍ରତିମାମାନଙ୍କୁ ପଛପଟରୁ ହିଁ ରଥ ଉପରକୁ ନିଆଯାଏ । ଅଶୋକାଷ୍ଟମୀ ଦିନ ସୂର୍ଯ୍ୟାସ୍ତ ପୂର୍ବରୁ ରଥ ବିଜୟ ପଡ଼ିଆରେ ପହଞ୍ଚିଥାଏ । ମଝିରେ ପାରି ହେବାକୁ ଥାଏ କର୍ଦ୍ଦମାକ୍ତ ଅସୁରଗହୀର । ରଥ ଯିବା ନିମନ୍ତେ ସେଥିରେ ଆଗେ ରାସ୍ତା ତିଆରି ହେଉଥିଲା । ରଥ ଗଢ଼ା ଆରମ୍ଭଠାରୁ ଫେରିବା ପର୍ଯ୍ୟନ୍ତ ସମସ୍ତ ଦାୟିତ୍ୱ ଭୋଇ (ବାଉରୀ)ମାନଙ୍କ ଉପରେ ନ୍ୟସ୍ତ ଥାଏ । ଏପରି ସେବା ମଧ୍ୟ ଲିଙ୍ଗରାଜଙ୍କ ସ୍ୱତ୍ୱଲିପି ମଧ୍ୟରେ ଗୃହୀତ । ଶ୍ରୀଜଗନ୍ନାଥଙ୍କ ସେବା ମଧ୍ୟରେ ଏହି ଭୋଇ ବା ମହାଭୋଇମାନଙ୍କର ସେବା ଅନ୍ୟତମ । ସେଠାରେ ସେମାନେ ରଥ ଗଢ଼ା ଓ ତା'ର ଚାଳନାର ଦାୟିତ୍ୱ ନେଇଥାନ୍ତି । ହିନ୍ଦୁ ଶାସକମାନଙ୍କ ଶାସନରେ ଏହି ଭୋଇମାନେ ଶାସନର ଏକ ଅଙ୍ଗ ଥିଲେ । ପ୍ରତି ଜନପଦମାନ ବୁଲି ଶାସନ ନିମନ୍ତେ ସୈନ୍ୟ ସଂଗ୍ରହ ସେମାନଙ୍କର ଥିଲା ମୁଖ୍ୟ କାର୍ଯ୍ୟ । କେଉଁମାନେ ସୈନ୍ୟ ବାହିନୀରେ ଯିବା ପାଇଁ ଉପଯୁକ୍ତ, ତାହା ସେମାନେ ହିଁ ସ୍ଥିର କରୁଥିଲେ । ଆଦେଶ ନ ମାନିଲେ ଦଣ୍ଡ ବିଧାନ ନିମନ୍ତେ ପ୍ରସ୍ତାବ ଦେବା ଥିଲା ସେମାନଙ୍କର ଅଧିକାର । ଯୁଦ୍ଧକୁ ସୈନ୍ୟବାହିନୀ ଯିବା ପୂର୍ବରୁ ବାଟ ଦେଖା ଓ ରହିବାର ସ୍ଥାନ ଇତ୍ୟାଦି ସେମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଥିଲା । ଜନପଦମାନଙ୍କରେ ବୁଲି ଜନସାଧାରଣଙ୍କ ଅଭାବ ଅସୁବିଧା ସେମାନେ ରାଜାଙ୍କୁ ଜଣାଉଥିଲେ ଓ ବିଦ୍ରୋହୀମାନଙ୍କୁ ଧରିବା ତଥା ଗୁପ୍ତ ତଥ୍ୟ ରାଜଦରବାରଙ୍କୁ ଦେବା ମଧ୍ୟ ସେମାନଙ୍କ ଦାୟିତ୍ୱର ଅନ୍ତର୍ଭୁକ୍ତ ଥିଲା । ପ୍ରତ୍ୟେକ ଦେବପୀଠ ବା ଧର୍ମୀୟ ସ୍ଥାନର ସୁରକ୍ଷା ଦାୟିତ୍ୱ ଏହି ଭୋଇ ସମ୍ପ୍ରଦାୟମାନଙ୍କ ଉପରେ ନ୍ୟସ୍ତ ରହୁଥିଲା । ସେଥିପାଇଁ କୌଣସି ଗୋଟିଏ ସ୍ଥାନରେ ରହିବା ସେମାନଙ୍କ ପକ୍ଷରେ ସମ୍ଭବ ହେଉନଥିଲା । ସେମାନଙ୍କର ପରିବାରବର୍ଗଙ୍କ ଚଳିବା ନିମନ୍ତେ ପର୍ଯ୍ୟାପ୍ତ ନିଷ୍କର ଭୂସମ୍ପତ୍ତିମାନ ରାଜଶାସନ ପକ୍ଷରୁ ଯୋଗାଇ ଦିଆଯାଇଥିଲା । ମୋଗଲ ରାଜତ୍ୱରେ ଓଡ଼ିଶା ପରାଧୀନ ହୋଇଯିବା ପରେ ସେମାନଙ୍କ ଉପରେ ଅଙ୍କୁଶ ଲଗାଯାଇ ସେପରି ସୁବିଧାମାନ ଆଉ ଦିଆଗଲା ନାହିଁ । ନିଷ୍କର ଭୋଗୁଥିବା ସମସ୍ତ ଭୂସମ୍ପତ୍ତି ସେମାନଙ୍କଠାରୁ ଫେରାଇ ନିଆଗଲା । ଯାହା କିଛିଟା ଥିଲା ଇଂରେଜମାନଙ୍କ ଓଡ଼ିଶା ଦଖଲ ପରେ ତାହା ମଧ୍ୟ ଶେଷରେ ଚାଲିଗଲା । ଏହିପରି ଭାବରେ ସେମାନେ ନିସ୍ୱ ଓ ଦରିଦ୍ର ଭାବେ କାଳ କଟାଇଥିଲେ । ଲିଙ୍ଗରାଜ ମହାପ୍ରଭୁଙ୍କ ମନ୍ଦିର ସନ୍ନିକଟରେ ଭୋଇ (ବାଉରୀ) ସାହି ଏବେ ବି ରହିଛି ଓ ସେମାନଙ୍କର ସେବା କେବଳ ରଥ ଗଢ଼ା କାର୍ଯ୍ୟରେ ସୀମିତ । ଭୋଇ ଶବ୍ଦ ହିଁ ଭୋଗୀ ଶବ୍ଦର ଅପଭ୍ରଂଶ । ସେମାନେ ପ୍ରଥମରୁ ହିଁ ବୌଦ୍ଧ ଥିଲେ । ଭୋଇ ଶବ୍ଦ ଯେ କେବଳ ବର୍ତ୍ତମାନର ବାଉରୀମାନଙ୍କ ନାମ ସହ ଜଡ଼ିତ ବା ସାଙ୍ଗିଆ, ତାହା ନୁହେଁ । ବହୁ କ୍ଷତ୍ରିୟ ପରିବାର ଏହି ଭୋଇ ଶବ୍ଦକୁ ନିଜ ନାମ ସହ ଯୋଡ଼ିଥାନ୍ତି । ଏପରିକି ବର୍ତ୍ତମାନର ସ୍ୱୟଂ ଉତ୍କଳାଧିପତି ମାହମାନ୍ୟ ଗଜପତି ମଧ୍ୟ ଭୋଇ ବଂଶର ଦାୟାଦ । ତେବେ ରଥ ତିଆରି କାର୍ଯ୍ୟ ଏହି ଭୋଇ (ବାଉରି)ମାନଙ୍କ ଉପରେ ନ୍ୟସ୍ତ ରହିବା ତାତ୍ପର୍ଯ୍ୟପୂର୍ଣ୍ଣ । ତେବେ ଗଜପତି ଶାସନ ପରେ ସେମାନଙ୍କର ନିୟନ୍ତ୍ରକ ଥିଲେ ବଡ଼ଗଡ଼ର କିଲ୍ଲାଦାର । ବାଲିଅନ୍ତାର ସାମନ୍ତରାଜା ଯେ କି ପରବର୍ତ୍ତୀ କାଳରେ ଜମିଦାର ଭାବେ ସ୍ୱୀକୃତି ପାଇଥିଲେ ସେ ଏପରି ଦାୟିତ୍ୱରେ ଥିଲେ ।

ତାଙ୍କ ନ ଆସିବା ପର୍ଯ୍ୟନ୍ତ ରଥ ଚାଲୁନଥିଲା । ବାଲିଅନ୍ତାରୁ ସେ ଘୋଡ଼ା ବା ପାଲିଙ୍କିରେ ବସି ରଥଯାତ୍ରାକୁ ଆସୁଥିଲେ । ତାଙ୍କ ସହ ଯେଉଁମାନେ ରଥଚଳା କାର୍ଯ୍ୟରେ ସାହାଯ୍ୟ କରିବାକୁ ଆସୁଥିଲେ ତାଙ୍କୁ 'କଳା ବେଠିଆ' କୁହାଯାଉଥିଲା । ନହରକଣ୍ଠାର ଜମିଦାର, ଭିଙ୍ଗାରପୁର ବ୍ରାହ୍ମଣ ବଂଶୀୟ ଜମିଦାର, ବାଳକାଟିର ମକଦ୍ଦମ ଶାସନ ମଧ୍ୟ ଏଥିରେ ସାହାଯ୍ୟ କରୁଥିଲେ । ମାତ୍ର ଖ୍ରୀ.୧୮୧୯ରେ ବଡ଼ଗଡ଼ର ଶେଷ ସାମନ୍ତରାଜା (କିଲାଦାର) ପଦ୍ମନାଭ ଛୋଟରାୟଙ୍କ ମୃତ୍ୟୁ ପରେ ସେହି ଦାୟିତ୍ୱ ବାଲିଅନ୍ତାର ଜମିଦାରଙ୍କ ଉପରେ ନ୍ୟସ୍ତ କରାଯାଇଥିଲା ।

**ଅସୁର ଗହୀର**

ଅସୁର ଗହୀର ନାମରେ ପଙ୍କ କାଦୁଅ ଭରା ରାସ୍ତା ଶ୍ରୀ ଲିଙ୍ଗରାଜଙ୍କ ରକୁଣା ରଥ ଗଡ଼ିବା ନିମନ୍ତେ ଥିଲା ବାଧକ । ବିଗତ ଶତାବ୍ଦୀରେ ବାଲିଅନ୍ତାର ଜମିଦାରଙ୍କ ଦ୍ୱାରା ଏପରି ରାସ୍ତାକୁ ମାଟିପକାଇ ସଚଳ କରିବା ସହ ରଥକୁ ଠେଲି ଉପରକୁ ନେବା ହିଁ ଥିଲା ତାଙ୍କ ସହ ଆସିଥିବା କର୍ମଚାରୀ ସମୂହଙ୍କର କାର୍ଯ୍ୟ, ଯାହାଙ୍କୁ କି ସେତେବେଳେ 'କଳା ବେଠିଆ' କୁହାଯାଉଥିଲା । ଏଥିରେ ତାଙ୍କସହ ସହଯୋଗ କରୁଥିଲେ ଭିଙ୍ଗାରପୁରସ୍ଥ ବ୍ରାହ୍ମଣ ବଂଶୀୟ ଚୌଧୁରୀ ଜମିଦାର, ନହରକଣ୍ଠାର ଜମିଦାରଙ୍କ ସହ ବାଳକାଟିର ମକଦ୍ଦମଙ୍କର ଲୋକଶକ୍ତି । ତେବେ ଏହି ଅସୁର ଗହୀର ସମ୍ପର୍କରେ ସାମାନ୍ୟ ଆଲୋଚନା କଲେ ଜଣାଯାଏ ଯେ ଭୁବନେଶ୍ୱରସ୍ଥ ଜାଗମରାରେ ଅସୁରମାନଙ୍କ ସହିତ ଯୁଦ୍ଧ ହୋଇଥିଲା ଓ ଯାହାଫଳରେ ସେଠାରେ ଆୟୋଜିତ ଯାଗ ବା ଯଜ୍ଞକୁ ନଷ୍ଟ କରି ଦିଆଯାଇଥିବାରୁ ସ୍ଥାନଟିର ନାମ ଜାଗମରା ହୋଇଛି । ଏହାର କିମ୍ବଦନ୍ତୀ ଓ କୌଣସି ତଥ୍ୟଭିତ୍ତିକ ଐତିହାସିକ ପ୍ରମାଣ ଏଥିରେ ନାହିଁ । ଦ୍ରୁମଳ ନାମରେ ଜଣେ ଅସୁର ଭୁବନେଶ୍ୱର ଅଞ୍ଚଳରେ ସେତେବେଳେ ରାଜତ୍ୱ କରୁଥିବାର ପୁରାଣମାନଙ୍କରେ ବର୍ଣ୍ଣନା ରହିଛି । ତାହାର ଥିଲେ ଏକଶତ ପୁତ୍ର । ସେମାନେ ପରସ୍ପର ମଧ୍ୟରେ ଯୁଦ୍ଧକରି ମରିଯାଇଥିଲେ ଓ ରହିଯାଇଥିଲେ କେବଳ କୃତି ଓ ବାସ ନାମରେ ଦୁଇଜଣ । ମାତା ପାର୍ବତୀଙ୍କ ଉପରେ ସେମାନଙ୍କର ଲୋଲୁପ ଦୃଷ୍ଟି ପଡ଼ିବା କାରଣରୁ ଶିବଙ୍କ ଦ୍ୱାରା ସେ ଦୁହେଁ ମୃତ୍ୟୁବରଣ କରିଥିଲେ । ସେଥିପାଇଁ ଲିଙ୍ଗରାଜ ମହାପ୍ରଭୁ କୃତିବାସ ନାମରେ ନାମିତ ହୋଇଥିବାର କିମ୍ବଦନ୍ତୀ ପ୍ରଚଳିତ ଅଛି । ଏହା ଉପରେ କୌଣସି ଐତିହାସିକ ତଥ୍ୟ ମିଳେନାହିଁ । ଏହି ଜାଗମରା ନିକଟସ୍ଥ ଗହୀରରୁ ପ୍ରବାହିତ ଝରଣା ପାଣିର ସ୍ରୋତ ବର୍ତ୍ତମାନର ବିନ୍ଦୁସାଗର ଓ ତାହାର ପରବର୍ତ୍ତୀ କଣ୍ଡରା ପୋଖରୀ ପାର ହୋଇ ଦୟା ବା ଗଙ୍ଗୁଆ ନଦୀକୁ ବହିଯାଉଥିଲା । ଏବେ ସେହି ଧାର ପ୍ରାୟତଃ ପୋତି ହୋଇପଡ଼ିଲାଣି । ଏପରି ଆଲୋଚନାରୁ ଜଣାଯାଏ ଯେ ଓଡ଼ିଶାରେ ପ୍ରାୟ ୪୫ଟି ସ୍ଥାନ ଅସୁରଙ୍କ ନାମରେ ନାମିତ ଥିଲା । ଆସିରିଆମାନଙ୍କ ପୁରାତନ ସହରରୁ ବିଭିନ୍ନ ସ୍ଥାନରେ ବସତି ସ୍ଥାପନ କରିଥିବା ଲୋକମାନେ କ୍ରମଶଃ ଅସୁର ନାମରେ ନାମିତ ହୋଇଛନ୍ତି । ସେମାନଙ୍କ ବସତିର ସ୍ଥାନ ସାଗର ବା ନଦୀ ତୀରବର୍ତ୍ତୀ ଅଞ୍ଚଳରେ ରହିଥିବାର ଦେଖାଯାଏ । କାରଣ ନୌବାଣିଜ୍ୟ ନିମନ୍ତେ ସେମାନେ ବିଭିନ୍ନ ଦେଶରୁ ଆସିଥାନ୍ତି । କେତେକ ସ୍ଥାନରେ ଥିବା ମାଟିକୁଦ ବା ଜନପଦକୁ ଅସୁର ଡିପ, ଅସୁର ମୁଣ୍ଡ, ଅସୁର ବନ୍ଧ, ଅସୁର ପାଟଣା ନାମରେ ବିଦିତ ଥିବାର ଦେଖାଯାଏ । କଳାହାଣ୍ଡିରେ ଥିବା ଅସୁରଗଡ଼ର ଖନନ ୧୯୭୩ ମସିହାରେ ହୋଇଥିଲା । ଏହାପରେ ଫୁଲବାଣୀ ଜିଲ୍ଲାର ମନମଣ୍ଡା ନିକଟସ୍ଥ ଅସୁରଗଡ଼ର ପ୍ରତ୍ନତାତ୍ତ୍ୱିକ ଖନନ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଇତିହାସ ବିଭାଗ ଦ୍ୱାରା ୧୯୮୧, ୧୯୮୩ ଓ ୧୯୯୦ରେ ହୋଇଥିଲା । ସେଠାରୁ ମିଳିଥିବା ପ୍ରତ୍ନତାତ୍ତ୍ୱିକ ଅବଶେଷରୁ ଜଣାଯାଏ ଯେ ତାହାସବୁ ଖ୍ରୀଷ୍ଟପୂର୍ବ ତୃତୀୟରୁ ପଞ୍ଚମ ଶତାବ୍ଦୀ ମଧ୍ୟର । ଟାଇଗ୍ରିସ୍ ନଦୀକୂଳସ୍ଥ ଏକ ସ୍ଥାନକୁ ଇଷ୍ଟଇଣ୍ଡିଆ କମ୍ପାନୀର ଜଣେ ପ୍ରତ୍ନତାତ୍ତ୍ୱିକ ଅଧିକାରୀ ଖ୍ରୀ.ଅ. ୧୮୨୦ରେ ଖୋଳାଇଥିଲେ । ସ୍ଥାନୀୟ ଅଧିବାସୀ ତାହାଙ୍କ ଦେଶ ଥିବାର ତାଙ୍କୁ କହିଥିଲେ । 'ଇକ୍ଷ' ଶବ୍ଦର ଅର୍ଥ ଜାଣିହୁଏ ନାହିଁ । ତେଣୁ ଭୁବନେଶ୍ୱର ରଥଦାଣ୍ଡରେ ଏହି ନାମରେ ନାମିତ ଅସୁର ଗହୀର ଦିନେ ସେହିମାନଙ୍କ ଅଧୀନରେ ଥିଲା ବା ଅସୁର ନାମରେ ଏକ ବଣିକ ଜାତି ଭୁବନେଶ୍ୱର

ଅଞ୍ଚଳରେ ଦିନେ ରାଜତ୍ୱ କରୁଥିଲେ ଓ ସେହି ଜଳପଥ ହିଁ ସେମାନଙ୍କର ଯାତାୟାତ ପଥ ଥିଲା । କେଦାରଗୌରୀ କୁଣ୍ଡରେ ଦୂଷିତ ଜଳ ବାହାରିଯିବାର ବାଟରେ ପଥର ମୂର୍ତ୍ତିଟିଏ ବସିଛି ଓ ତା'ର ମୁଖ ଗହ୍ୱରକୁ ଅସୁରୁଣୀ କହିଥାନ୍ତି ।

ରଥୋତ୍ସବ ଦେଖିବା ଓ ଲିଙ୍ଗରାଜଙ୍କ ସେବା ନିମନ୍ତେ ରାଜ ପରିବାର ଆସିଲେ ମନ୍ଦିର ପଛପଟରେ ଥିବା ରାଜନଅରରେ ରହୁଥିଲେ । ବର୍ତ୍ତମାନର ମନ୍ଦିର ପଛ ପାଖରେ ଥିବା ଦକ୍ଷିଣ ଚଣ୍ଡୀ ଓ ଗଣେଶଙ୍କ ବିଗ୍ରହ ଦ୍ୱୟ ସେତେବେଳର ରାଜପୂଜିତ ଓ ତାହା ନଅର ପରିସର ମଧ୍ୟରେ ରହିଥିଲା । ସେଠାରେ ଥିବା ସୁଡ଼ଙ୍ଗ ଓ ଭଗ୍ନ ରାଜପ୍ରାସାଦର ପ୍ରସ୍ତର ଗଦାମାନ ଲେଖକର ଦୃଷ୍ଟିକୁ ଆସିଛି । ମାତ୍ର ବର୍ତ୍ତମାନ ଉପର ଆଲୋଚ୍ୟ ଦୁଇଟି ପୂଜିତ ବିଗ୍ରହ ବ୍ୟତୀତ ଆଉ କୌଣସିର ଚିହ୍ନ ନାହିଁ । ସେ ସ୍ଥାନରେ ଠିଆ ହୋଇଛି ବହୁ ସୁରମ୍ୟ ଅଟ୍ଟାଳିକାମାନ ।

ମାରିଚୀ ମା'ଙ୍କ ପୀଠ ଏକ ବୌଦ୍ଧ ପୀଠ ଥିବାର ଆଗରୁ ଆଲୋଚିତ ହୋଇଛି । ଭୌମକର ବଂଶର ରାଜତ୍ୱ କାଳରେ ତୋଷାଳିରେ ବୌଦ୍ଧ ଧର୍ମର ବ୍ୟାପକତା ଦେଖାଯାଇଥିଲା । ମାରିଚୀ ମା'ଙ୍କର ଏହିଭଳି ବସନ୍ତୋତ୍ସବର ଆୟୋଜନ ଭୌମକରମାନଙ୍କ ଶାସନରେ ହୋଇଥିବାର ସମ୍ଭାବନା । ମାତ୍ର ତାହା ପୂର୍ବରୁ ଏହା ପାଳିତ ହେଉଥିବାର ସମ୍ଭାବନାକୁ ଆଦୌ ଏଡ଼ାଇ ଦିଆଯାଇନପାରେ । ଶ୍ରୀଜଗନ୍ନାଥଙ୍କୁ ବୌଦ୍ଧମାନେ ସେମାନଙ୍କ ସର୍ବମାନ୍ୟ ତ୍ରିରତ୍ନ (ବୁଦ୍ଧ, ସଂଘ ଓ ଧମ୍ମ) ଭାବରେ ଗ୍ରହଣ କରିବା ସହ ପ୍ରଭୁଙ୍କ ରତ୍ନସିଂହାସନ ସେପରି ଶବ୍ଦରୁ ଆସିଛି ବୋଲି ମତ ଦେଇଥାନ୍ତି । ତୋଷାଳିର ବୌଦ୍ଧ ସମ୍ରାଟ୍ ଲଳିତଭାର କୋଶଳର ଶୈବ ଉପାସକ ମହାରାଜ ମହାଭବଗୁପ୍ତ ଯଯାତିଙ୍କ ପୁତ୍ରୀ (ପୃଥ୍ୱୀଦେବୀ) ତ୍ରିଭୁବନ ମହାଦେବୀଙ୍କୁ ବିବାହ କରିଥିଲେ । ସେତେବେଳେ ଶୈବ ଓ ବୌଦ୍ଧଧର୍ମର ଲୋକମାନଙ୍କ ମଧ୍ୟରେ ବୈବାହିକ ସମ୍ପର୍କ ରହୁଥିଲା । କୋଶଳର ରାଜଧାନୀ ସେତେବେଳେ ଥିଲା ସୁବର୍ଣ୍ଣପୁର । ନର୍ମଦା ନଦୀକୂଳସ୍ଥ ଚେଦୀ ରାଜବଂଶର ଶାସକମାନେ ଯଯାତିଙ୍କ ଶାସିତ କୋଶଳକୁ ବାରମ୍ବାର ଆକ୍ରମଣ କରୁଥିଲେ । ଚେଦୀମାନଙ୍କ ସହ କୋଶଳ ପକ୍ଷରୁ ଯୁଦ୍ଧ କରି ଲଳିତଭାରଙ୍କର ମୃତ୍ୟୁ ହୋଇଥିଲା । ତେଣୁ ତାଙ୍କ ପରେ ତ୍ରିଭୁବନ ମହାଦେବୀ ତୋଷାଳିର ସାମ୍ରାଜ୍ଞୀ ହେଲେ । ମାତ୍ର ଅଭିଭାବକ ଶାସକ ଭାବେ ସୋମବଂଶୀ ଶାସକମାନଙ୍କର ତୋଷାଳିରେ ଆବିର୍ଭାବ ହୋଇଥିଲା । ପିତା ଯଯାତି ତୋଷାଳିରେ ତାଙ୍କର ଶାସନ କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ସୋମବଂଶୀମାନେ ଶୈବ ଉପାସକ ଥିଲେ । ଏପରି ଶାସନ ଫଳରେ ଶୈବ ଓ ବୌଦ୍ଧଧର୍ମର ସମନ୍ୱୟ ଘଟିଥିଲା । ଦଶମ ଶତାବ୍ଦୀର ଶେଷ ବେଳକୁ ସୋମବଂଶର ପ୍ରତ୍ୟକ୍ଷ ଶାସନ ତୋଷାଳିରେ ଦେଖାଦେଲା ଓ ସେହି ସମୟରେ ହିଁ ସମ୍ପୂର୍ଣ୍ଣ ଭାବେ ବୌଦ୍ଧପୀଠଗୁଡ଼ିକୁ ଶୈବପୀଠରେ ପରିଣତ କରିଦିଆଗଲା । ଏହିଭଳି ଅଶୋକାଷ୍ଟମୀ ରଥଯାତ୍ରା ପୁରୀ ଜିଲ୍ଲାର ନିରାକାରପୁର ଡିଆଁ କପିଳେଶ୍ୱରଙ୍କ ପୀଠରେ ହୋଇଥାଏ । ମାତ୍ର ସେଠାରେ ରାତ୍ରୀରେ ରଥଟଣା ହେବାର ପରମ୍ପରା ରହିଛି । କାହିଁକି ଏପରି ହୋଇଥାଏ ତାହାର କୌଣସି ଲୋକକଥା ଶୁଣିବାକୁ ମିଳେ ନାହିଁ । ସମ୍ଭବତଃ ବୁଦ୍ଧଦେବ ରାତ୍ରୀରେ ରାଜନିବାସ ଛାଡ଼ି ଚାଲି ଯାଇଥିବାର ପରମ୍ପରାରେ ଏପରି ରାତ୍ରୀ ଯାତ୍ରାର ସୃଷ୍ଟି ହୋଇଥିବାର କୁହାଯାଇପାରେ ।

କୋଣାର୍କ ଏକ ସୁପ୍ରସିଦ୍ଧ ବୌଦ୍ଧକ୍ଷେତ୍ର ରୂପେ ପୂର୍ବରୁ ବିଦିତ ଥିଲା । କଣେୟଗିରି ପର୍ବତ ଉପରେ ଏପରି ବୌଦ୍ଧକ୍ଷେତ୍ର ଥିବାର ବର୍ଣ୍ଣନା ରହିଛି । ସୂର୍ଯ୍ୟଦେବ ଶତ ସଂଖ୍ୟକ ଚକ ସହ ଅଷ୍ଟ ଅଶ୍ୱ ସଂଯୋଜିତ ରଥ ବ୍ୟବହାର କରୁଥିଲେ । ସେହି ରଥର ନାମ ଥିଲା ବିଜୟ ରଥ । ତାହାର ବର୍ଣ୍ଣ ଥିଲା ଶ୍ୱେତ । ସୂର୍ଯ୍ୟ ଦେବ ପ୍ରତ୍ୟହ ସେହି ରଥରେ ତାଙ୍କ ଗତିପଥରେ ପରିଭ୍ରମଣ କରିଥାନ୍ତି । ପରେ ସୂର୍ଯ୍ୟଦେବଙ୍କ ରଥ ଏକ ଚକ ଓ ସପ୍ତ ଅଶ୍ୱଯୁକ୍ତ ହେଲା । ମାତ୍ର ଜ୍ୟୋତିଷଶାସ୍ତ୍ର ଅନୁସରଣରେ ୧୨ମାସ ଓ ୨୪ ପକ୍ଷକୁ ଭିତ୍ତିକରି ୨୪ଚକ ଉପରେ ସୂର୍ଯ୍ୟମନ୍ଦିର ନିର୍ମାଣ କରାଗଲା । ଶାମ୍ବଦଶମୀ ଦିନଠାରୁ ୨୭ଦିନ ବ୍ୟାପୀ କୋଣାର୍କରେ ରଥୋତ୍ସବ ପାଳନ କରାଯାଉଥିଲା । କପିଳ ସଂହିତାରେ କୋଣାର୍କର ସୂର୍ଯ୍ୟ ରଥର

ବର୍ଣ୍ଣନା ରହିଛି । ମାଦଳାପାଞ୍ଜିରେ ଅର୍କକ୍ଷେତ୍ରର ଦ୍ୱାଦଶ ଯାତ୍ରା ପାଳିତ ହେବାର ଉଲ୍ଲେଖ ଥିଲେ ମଧ୍ୟ କେବଳ ମାଘ ସପ୍ତମୀର ବର୍ଣ୍ଣନା ଅଛି । କୋଣାର୍କ ନିକଟ ପ୍ରାଚୀ ମୁହାଣରେ ମାରିଚୀପୁର ନାମରେ ଏକ ବଡ଼ ଜନପଦ ଦେଖାଯାଏ । ଦ୍ୱାଦଶ ଭୁଜା ବୌଦ୍ଧଦେବୀ ମାରିଚୀ ସେଠାରେ ପୂଜିତା । ତେଣୁ ବୌଦ୍ଧ ମତରେ ମାରିଚୀଙ୍କର ହେଉଥିବା ରଥଯାତ୍ରା ହିନ୍ଦୁ ମତରେ ପୂଜିତ ସୂର୍ଯ୍ୟଙ୍କ ରଥଯାତ୍ରାଠାରୁ ଭିନ୍ନ ।

ଓଡ଼ିଶାର ଭୁବନେଶ୍ୱରରେ ଚୈତ୍ରମାସ ଶୁକ୍ଳ ପକ୍ଷ ଅଷ୍ଟମୀରେ ହେଉଥିବା ରଥଯାତ୍ରା, ଶ୍ରୀକ୍ଷେତ୍ରରେ ଆଷାଢ଼ ମାସ ଶୁକ୍ଳ ଦ୍ୱିତୀୟାଦିନ ନବଦିନ ଶ୍ରୀଗୁଣ୍ଡିଚା, ଆଶ୍ୱିନ ମାସ ଶୁକ୍ଳ ଅଷ୍ଟମୀ ଦିନ ଗଦାକ୍ଷେତ୍ର ଯାଜପୁରରେ ବିରଜାଙ୍କ ନବ ଦିନାତ୍ମକ ସିଂହଧ୍ୱନି ଓ ଅର୍କକ୍ଷେତ୍ର କୋଣାର୍କରେ ସପ୍ତବିଂଶ ଦିନ ସୂର୍ଯ୍ୟ ରଥଯାତ୍ରାମାନ ଅନୁଷ୍ଠିତ ହୋଇଆସୁଛି ।

ଭୁବନେଶ୍ୱରସ୍ଥ ଅଶୋକାଷ୍ଟମୀ ରଥଯାତ୍ରା ସହର ସହିତ ନିକଟସ୍ଥ ସମସ୍ତ ଜନପଦମାନଙ୍କର ଏକଦା ଏକ ଗଣଯାତ୍ରା ଥିଲା । ଏହି ଯାତ୍ରା ଦେଖିବାକୁ ଗାଁ ଗହଳରୁ ଲୋକେ ଶଗଡ଼, ପାଲିଙ୍କି, ଘୋଡ଼ା ଏପରିକି ପାଦରେ ଚାଲି ଚାଲି ଆସୁଥିଲେ । ଅତି ସୀମିତ ରାସ୍ତାରେ ରଥ ଟଣା ହେଉଥିବାରୁ ଜନ ସମାଗମ ପ୍ରବଳ ହେଉଥିଲା ଓ ଏହାକୁ କଥାରେ ଅଶୋକା ଭିଡ଼ ବୋଲି ଲୋକ ପ୍ରବାଦ ରହିଛି । ଏହି ଯାତ୍ରାରୁ ଚାଷୀମାନେ ବର୍ଷକ ନିମନ୍ତେ ଚାଷ ଉପକରଣମାନ କ୍ରୟ କରୁଥିଲେ । ବିବାହ ପ୍ରସ୍ତାବ ପଡ଼ିବା ସହ ବୋହୂ ଦେଖା ଓ ନିର୍ବନ୍ଧମାନ ମଧ୍ୟ ଏହିଦିନ ଏଠାରେ ଅନୁଷ୍ଠିତ ହୋଇପାରୁଥିଲା । ଅଶୋକାଷ୍ଟମୀ ରଥଯାତ୍ରା ଦେଖି ବସନ୍ତ ଋତୁର ମନୋମୁଗ୍ଧକର ଜ୍ୟୋତ୍ସ୍ନା ରାତ୍ରୀରେ ଦଳବଦ୍ଧ ହୋଇ ଗ୍ରାମମାନଙ୍କୁ ଫେରିଯିବାର ଦୃଶ୍ୟ ଏବେ ବି ମୋ ମନରେ ନାଚିଯାଉଛି । ସେହି ଉପଭୋଗ୍ୟ ଜ୍ୟୋତ୍ସ୍ନାସ୍ନାତ ରଜନୀ, ଶୀତଳ ଶୀକରରେ ଉଲ୍ଲସିତ ହୋଇଉଠୁଥିବା ଦେହ ଓ ମନ ଆଉ ଜୀବନରେ ଫେରିଆସିବ ନାହିଁ । ବୟସର ଚକ ଏହା ମଧ୍ୟରେ ବହୁତ ଗଡ଼ିଯାଇଛି । ଉତ୍ତରପୁରୁଷଙ୍କର ସେ କଥା ଶୁଣିବାର ଆଉ ଆଗ୍ରହ ବି ନାହିଁ ।

ବିଜୟ ପଡ଼ିଆ ନାମରେ ମାଉସୀମା' ମନ୍ଦିର ଆଗକୁ ଯାହା କୁହାଯାଉଛି ସେଠାରେ ଥିଲା ବିଜୟସ୍ତମ୍ଭ, ଯାହାକୁ କି ଅଶୋକସ୍ତମ୍ଭ କୁହାଯାଉଛି । ସମ୍ଭବତଃ ସେହି ସ୍ତମ୍ଭ ଭାସ୍କରେଶ୍ୱର ମନ୍ଦିରରେ ଶିବଲିଙ୍ଗ ଭାବେ ପୂଜିତ । ସ୍ତମ୍ଭ ପୂଜିତ ସେହି ମନ୍ଦିରର ମାପକୁ ନେଇ ଗଢ଼ାଯାଏ ଲିଙ୍ଗରାଜଙ୍କ ରୁକୁଣା ରଥ । ଏଥିରୁ ଜଣାଯାଏ ଯେ ଉକ୍ତ ସ୍ତମ୍ଭର ମହତ୍ତ୍ୱ ଓ ରଥଯାତ୍ରା ସହ ତାହାର କିଭଳି ଥିଲା ନିବିଡ଼ତା । ପୁଣି ଭୋଇ (ବାଉରୀ)ମାନଙ୍କ ଦ୍ୱାରା ରଥ ତିଆରିର ଗୁରୁତ୍ୱ ହେଜାଇ ଦିଏ ଅତୀତର ମହିମାମୟ ଗୌରବୋଜ୍ଜ୍ୱଳ ବୌଦ୍ଧଧର୍ମର ପ୍ରଭାବ । ମାଘ ସପ୍ତମୀ ଦିନ କପିଳେଶ୍ୱର, ଲିଙ୍ଗରାଜ ପଟୁଆର ସହ ଆସିଥାନ୍ତି ଏହି ଭାସ୍କରେଶ୍ୱର ପୀଠକୁ । ଏହାର ଏପରି ନାମକରଣ କାହିଁକି ହୋଇଛି ତାହା ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ । ପ୍ରାୟଶଃ ମାଘ ସପ୍ତମୀରେ ତିଷ୍ୟା ନକ୍ଷତ୍ରର ତିଥି ଥାଏ । ବୌଦ୍ଧ ଧର୍ମରେ ଏହି ତିଷ୍ୟା ନକ୍ଷତ୍ର ତିଥି ଅତି ପବିତ୍ର । ଧଉଳିରେ ଥିବା ଅଶୋକଙ୍କ ଶିଳାଲିପିରେ ତିଷ୍ୟା ନକ୍ଷତ୍ର ତିଥିରେ ଧର୍ମକଥା ତୋଷାଳିର ଲୋକମାନଙ୍କୁ ବୁଝାଇବା ନିମନ୍ତେ ଧର୍ମାମାତ୍ୟମାନଙ୍କୁ ଅଶୋକଙ୍କର ନିର୍ଦ୍ଦେଶ ରହିଛି । ଏହି ତିଥି ମଧ୍ୟ ଥିଲା ସମ୍ରାଟ୍ ଅଶୋକଙ୍କ ଜନ୍ମଦିବସ । ଆଧୁନିକ ପାଟନା (ପାଟଳୀପୁତ୍ର) ସହ ସମଗ୍ର ବିହାର ରାଜ୍ୟରେ ଏହି ଦିନକୁ ସବେତନ ଛୁଟି ଘୋଷଣା କରାଯାଇଥାଏ । ତେଣୁ ସମ୍ରାଟ୍ ଅଶୋକଙ୍କ ସହ ଭୁବନେଶ୍ୱରରେ ହେଉଥିବା ଏହି ଅଶୋକାଷ୍ଟମୀ ରଥଯାତ୍ରା କେତେ ସମ୍ପର୍କ ରହିଛି, ତାହା ସହଜେ ଅନୁମେୟ ।

ପ୍ଲଟ୍ ନଂ.୧୧୧/ବି
ଜୟଦେବ କମ୍ପ୍ଲେକ୍ସ, ଶହୀଦ ନଗର, ଭୁବନେଶ୍ୱର



# ମହାବିଷୁବ ସଂକ୍ରାନ୍ତି

**ମୌସୁମୀ ଦାସ**

ହିନ୍ଦୁ କ୍ୟାଲେଣ୍ଡର ଅନୁସାରେ ବାରମାସ ମଧ୍ୟରୁ ବୈଶାଖ ମାସଟି ଆଦ୍ୟ ମାସ ଭାବରେ ପରିଗଣିତ । ବୈଶାଖର ଆରମ୍ଭ ହୁଏ ଚୈତ୍ରପୂର୍ଣ୍ଣମୀ ପରଦିନଠାରୁ । କେହି କେହି ଭିନ୍ନ ମତରେ ମାସର ଆରମ୍ଭ ସଂକ୍ରାନ୍ତିଠାରୁ ଗ୍ରହଣ କରନ୍ତି । ଚାନ୍ଦ୍ରମାସ ଅନୁସାରେ ଚୈତ୍ର ପୂର୍ଣ୍ଣମୀ ପରବର୍ତ୍ତୀ ଦିନଟିକୁ, ବୈଶାଖ ପ୍ରତିପଦା ତିଥିକୁ ନୂଆ ବର୍ଷ ଭାବରେ କେଉଁଠି କେଉଁଠି ପାଳନ କରାଗଲାବେଳେ, ସୌରମାସ ହିସାବରେ ପ୍ରଥମ ସଂକ୍ରାନ୍ତି ବା ମେଷ ସଂକ୍ରାନ୍ତିଠାରୁ ହିନ୍ଦୁ ମତାବଲମ୍ବନରେ ବର୍ଷ ଆରମ୍ଭ ବୋଲି ଗଣନା କରାଯାଏ । ଚୈତ୍ରପୂର୍ଣ୍ଣମୀ ପରଦିନଠାରୁ ଆରମ୍ଭ ହୋଇ ବୈଶାଖ ପୂର୍ଣ୍ଣିମା ବା ଚନ୍ଦନ ପୂର୍ଣ୍ଣିମା (ଏବଂ ବୌଦ୍ଧ ମତରେ ବୁଦ୍ଧ ପୂର୍ଣ୍ଣିମା) ଦିନ ପର୍ଯ୍ୟନ୍ତ ଏହି ପ୍ରଥମ ମାସର ଅବଧି ମଧ୍ୟରେ ପଡ଼େ ମେଷ ସଂକ୍ରାନ୍ତି । ଏହାକୁ 'ମହାବିଷୁବ ସଂକ୍ରାନ୍ତି' ଭାବରେ ଜଣାଯାଏ । ପ୍ରାୟତଃ, ଅପ୍ରେଲ ୧୪ (କେବେ କେବେ ୧୩ କିମ୍ବା ୧୫) ତାରିଖରେ ଏହି 'ମହାବିଷୁବ ସଂକ୍ରାନ୍ତି' ପଡ଼େ ।

ସୂର୍ଯ୍ୟଙ୍କ ଗତିପଥ ଅନୁସାରେ ବୈଶାଖ ମାସରେ ସେ ପ୍ରଥମ ରାଶି ମେଷରେ ଅବସ୍ଥାନ କରନ୍ତି । କୁହାଯାଏ ଯେ, ସୂର୍ଯ୍ୟ ବର୍ଷରେ ଦୁଇଥର ବିଷୁବ ରେଖାର ଠିକ୍ ଉପରେ ଅବସ୍ଥାନ କରନ୍ତି । ବସନ୍ତ ଋତୁର ଶେଷଭାଗରେ, ଅର୍ଥାତ୍ ବୈଶାଖ ମାସରେ, ଯାହା ଇଂରାଜୀ ମାର୍ଚ୍ଚ ମାସର ୨୧ କିମ୍ବା ୨୨ ତାରିଖରେ ପଡ଼େ । ଠିକ୍ ସେହିପରି ସେପ୍ଟେମ୍ବର ୨୨ କିମ୍ବା ୨୩ ତାରିଖରେ ଶରତ କାଳରେ ଆଶ୍ୱିନମାସରେ ସୂର୍ଯ୍ୟଙ୍କ ଅବସ୍ଥାନ ବିଷୁବରେଖାର ଉପରି ଭାଗରେ ହୁଏ । ଏହିଦିନଗୁଡିକରେ ଦିବସ ଓ ରାତ୍ରିର ସମୟ ସମାନ ରୁହେ, ଠିକ୍ ବାରଘଣ୍ଟା ଲେଖାଏଁ । ବୈଶାଖ ଆରମ୍ଭରେ ରୌଦ୍ରତାପ ମଧ୍ୟ ବୃଦ୍ଧି ପାଇବାକୁ ଆରମ୍ଭ କରେ । ତେଣୁ ବିଷୁବରେଖା ଉପରେ ଏହି ମାସ ସଂକ୍ରାନ୍ତିରେ ସୂର୍ଯ୍ୟଙ୍କ ଅବସ୍ଥାନ ହେତୁ ଏହି ସଂକ୍ରାନ୍ତିକୁ 'ମହାବିଷୁବ ସଂକ୍ରାନ୍ତି' ଭାବରେ ଅଭିହିତ କରାଯାଇଛି । ଆଧ୍ୟାତ୍ମିକବାଦର ପ୍ରଦେଶ ଓଡ଼ିଶା । ଏଠି ବହୁ ପ୍ରାଚୀନ କାଳରୁ ବିଷ୍ଣୁ, ରୁଦ୍ର, ଶକ୍ତି ଓ ସୂର୍ଯ୍ୟ ଆରାଧନା ପ୍ରଚଳିତ । ବାରମାସରେ ଏଠି ତେରପର୍ବ । ଆ କା ମା ବୈ, ଅର୍ଥାତ୍ ଆଷାଢ଼, କାର୍ତ୍ତିକ, ମାର୍ଗଶିର, ବୈଶାଖ ଏହି ଚାରିଟି ମାସକୁ ସବୁଠୁ ଅଧିକ ପୁଣ୍ୟମାସ ଭାବରେ ଗ୍ରହଣ କରାଯାଇଛି । ବିଷ୍ଣୁଙ୍କର ଦ୍ୱାଦଶ ନାମ ଅନୁସାରେ ଆମର ବାରମାସର ଆରାଧନା ପଦ୍ଧତି ରହିଛି । ଯେମିତି, ବୈଶାଖମାସରେ ତାଙ୍କୁ ମଧୁସୂଦନ ରୂପରେ ପୂଜା କରାଯାଏ । ବିଷ୍ଣୁ ଆରାଧନାରେ ସର୍ବପ୍ରଥମ ଦ୍ରବ୍ୟ ଭାବେ ତୁଳସୀର ପ୍ରାଧାନ୍ୟ ରହିଛି । ତେଣୁ ତୁଳସୀ ବୃକ୍ଷର ଚାରା ରୋପଣ, ପୋଷଣ ଓ ପୂଜନ ପ୍ରତିଟି ହିନ୍ଦୁ ଘରର ମୁଖ୍ୟ କର୍ତ୍ତବ୍ୟ ଭାବେ କେଉଁ ଆବହମାନ କାଳରୁ ରହି ଆସିଛି । ସର୍ବ ଦେବଦେବୀଙ୍କର ବାସସ୍ଥଳୀ ଏହି ପବିତ୍ର ତୁଳସୀବୃକ୍ଷ କେବଳ ଆଧ୍ୟାତ୍ମିକତା ଦୃଷ୍ଟିରୁ ନୁହେଁ, ବରଂ ଔଷଧୀୟ ପ୍ରୟୋଗ ଦୃଷ୍ଟିରୁ ମଧ୍ୟ ଅତ୍ୟନ୍ତ ଉପାଦେୟ । ପ୍ରକୃତିର ଅନନ୍ୟ ଗୁଣସବୁ ରହିଛି ତୁଳସୀ ବୃକ୍ଷରେ । 'ସର୍ବରୋଗ ବିନାଶକାୟ' ତୁଳସୀପତ୍ରର ଉପକାରିତା ବହୁବିଧ । ଘରେ ତୁଳସୀ ବୃକ୍ଷର ଅବସ୍ଥାନ ଅନେକ

ନକାରାତ୍ମକତାକୁ ନଷ୍ଟ କରି ସୁସ୍ଥ ସକାରାତ୍ମକ ବାତାବରଣ ସୃଷ୍ଟି କରିବା ସହିତ ପ୍ରଦୂଷଣ ନାଶ କରେ । ବାତ, ପିତ୍ତ, କଫ, ଏହି ତିନିଟି ମଣିଷ ଶରୀର ସଂରଚନାର ମୂଳତତ୍ତ୍ୱ, ଯଦି ସନ୍ତୁଳିତ ଭାବେ ରହିଲେ । ଗୁଣଭାବେ ଉପକାରୀ ଏବଂ ଅସନ୍ତୁଳିତ ହେଲେ ଦୋଷଭାବେ ଶରୀରର ପ୍ରଭୂତ ଅହିତ ସାଧନ କରେ । ପ୍ରତ୍ୟହ ତୁଳସୀ ସେବନ ଦ୍ୱାରା ଏହି ତ୍ରିଦୋଷ ପ୍ରକୋପରୁ ରକ୍ଷା ମିଳିଥାଏ । ତେଣୁ ତୁଳସୀ ବୃକ୍ଷର ଉପାଦେୟତା ଘରେ ଘରେ ରହିଛି ।

ଗ୍ରୀଷ୍ମ ଆଗମନରେ ସୂର୍ଯ୍ୟଙ୍କର ପ୍ରଖର ତେଜ ଓ ରୌଦ୍ର ଉଷ୍ମ ତାପରେ ସମସ୍ତ ଜୀବ ଜଗତ ଅତିଷ୍ଠ ହୋଇପଡ଼ନ୍ତି । ବୃକ୍ଷସବୁ ଶୁଖିବା ସହ ଜଳକଷ୍ଟରେ ପ୍ରାଣୀ ଓ ଉଦ୍ଭିଦ ଉଭୟ ଆକୁଳ ହୋଇ ପଡ଼ନ୍ତି । ଏହି ଉତ୍ତାପରୁ ରକ୍ଷା ପାଇବା ପାଇଁ ଆମେ ଯେମିତି ଶୀତଳତା ଓ ସ୍ନାନ ଆବଶ୍ୟକତା କରୁ, ଠିକ୍ ସେମିତି ତୁଳସୀ ବୃକ୍ଷକୁ ରୌଦ୍ର ତାପାନଳରୁ ରକ୍ଷା କରିବା ପାଇଁ ବସୁନ୍ଧରା ଠେକି ବସାଉ । ତୁଳସୀ ଗୁଳ୍ମ ଜାତୀୟ । ତେଣୁ ଶୀଘ୍ର ଗ୍ରୀଷ୍ମ ତାପରେ ଶୁଖିଯାଏ । ତୁଳସୀ ଗଛ ଓ ଚଉରା ଚାରିପଟେ ଛାମୁଣ୍ଡିଆ କରି ମୁଣ୍ଡ ଉପରେ ନଡ଼ିଆ ବାହୁଙ୍ଗା, ଗବଗଛ ଡାଳ ଆଦି ବିଛେଇ ଦୁଇଖଣ୍ଡ ଗବ ଡାଳକୁ ଛନ୍ଦି ସେଥିରେ ମାଟିର କଳସ ବନ୍ଧାଯାଏ । ଏହାର ନିମ୍ନ ଭାଗରେ ଏକ ଛିଦ୍ରକରି କୁଟା ଖଣ୍ଡରେ ବନ୍ଦ କରାଯାଏ । ଏଥିରେ ଜଳପୂର୍ଣ୍ଣ କଲାପରେ ଏହି ଛିଦ୍ର ମଧ୍ୟ ଦେଇ ବିନ୍ଦୁ ବିନ୍ଦୁ ଜଳ ତୁଳସୀ ଉପରେ ସାରାଦିନ ପଡ଼ିବା ଦ୍ୱାରା ଏହାର ମୂଳ ଶୁଷ୍କ ହୁଏନାହିଁ ଓ ଗ୍ରୀଷ୍ମରେ ବି ସତେଜ ରହିଥାଏ । ବୈଶାଖ ମାସ ଆରମ୍ଭରୁ ରୌଦ୍ରତାପାନଳରୁ ରକ୍ଷାପାଇଁ ମହାବିଷୁବ ସଂକ୍ରାନ୍ତି ଦିନ ତୁଳସୀ ଚଉରା ଚାରିକଡ଼େ ଛାମୁଣ୍ଡିଆ କରି ବସୁନ୍ଧରା ଠେକି ବା ବସୁନ୍ଧରା ଘଡ଼ି ବସାଇବା ପ୍ରତ୍ୟେକ ଓଡ଼ିଆ ଘରର ପରମ୍ପରା ଭାବରେ କେଉଁ ଆବହମାନ କାଳରୁ ପାଳିତ ହୋଇ ଆସୁଛି । ମେଷ ସଂକ୍ରାନ୍ତି ବା ମହାବିଷୁବ ସଂକ୍ରାନ୍ତିଠାରୁ ବୃଷ ସଂକ୍ରାନ୍ତି ଯାଏଁ ଏହି ଠେକି ବନ୍ଧା ଯାଇଥାଏ । ବିଷୁବ ସଂକ୍ରାନ୍ତି ଦିନ ବିଧି ମୁତାବକ ପୂର୍ଜାର୍ଚ୍ଚନା ଓ ଭୋଗନୈବେଦ୍ୟ ଅର୍ପଣ କରି ବସୁନ୍ଧରା ଠେକି ବନ୍ଧାଯାଏ । ବୈଶାଖ ବ୍ରତଧାରୀ ଏ ମାସରେ ନିଷ୍ଠାପୂର୍ବକ ପ୍ରାତଃସ୍ନାନ ଓ ଜଳଦାନ କରନ୍ତି ।

ନିଦାଘର ତୃଷା ନିବାରଣ ପାଇଁ ଜଳଦାନକୁ ମହାପୁଣ୍ୟ ଭାବେ ଗ୍ରହଣ କରାଯାଇଛି । ତେଣୁ ଏହି ମାସଠାରୁ ଗ୍ରୀଷ୍ମଋତୁ ଶେଷ ହେବା ପର୍ଯ୍ୟନ୍ତ ତୃଷାର୍ତ୍ତଙ୍କୁ ଜଳଦାନ ପାଇଁ ଜଳଛତ୍ର ଖୋଲିଲେ ମହାପୁଣ୍ୟ କାର୍ଯ୍ୟ ସାଧିତ ହୁଏ । କେବଳ ମାନବଙ୍କ ପାଇଁ ନୁହେଁ, ଜୀବଜନ୍ତୁ, ପକ୍ଷୀ, ବୃକ୍ଷ ସମସ୍ତଙ୍କ ପାଇଁ ପାନୀୟ ଜଳର ବନ୍ଦୋବସ୍ତ ସାଧମତେ କରିବା ବିଧେୟ । ଜଳଦାନ ମହାପୂଣ୍ୟ, ବସୁନ୍ଧରା ଠେକି ଏହି ବାର୍ତ୍ତା ଦେଇଥାଏ ।

ମହାବିଷୁବ ସଂକ୍ରାନ୍ତିକୁ ଉତ୍କଳୀୟତା ମାନ୍ୟତା ଅନୁସାରେ ନୂଆବର୍ଷର ପ୍ରଥମ ଦିନ ଭାବେ ଗଣାଯାଉଛି । ଏହି ଦିନକୁ ହନୁମାନ ଜୟନ୍ତୀ ଭାବରେ ବି ପାଳନ କରାଯାଉଛି । ଶାକ୍ତ ଉପାସକମାନେ ଏହିଦିନ 'ପାଟୁଆ', 'ଝାମୁ', 'ଦଣ୍ଡ' ଆଦି ବିଭିନ୍ନ ଯାତ୍ରାରେ ଆଞ୍ଚଳିକ ଭିତ୍ତିରେ ଯୋଗଦାନ କରି ଚୈତ୍ରମାସର ବ୍ରତ ଉଦ୍ୟାପନ କରନ୍ତି । ଏହିଦିନ ବେଲ କିମ୍ବା ଛତୁଆରେ କଦଳୀ, ନଡ଼ିଆ, ଛେନା, ଗୁଡ଼, ଆମ୍ବକଷି, ଅଦା,ଗୋଲମରିଚ ଆଦି ଦେଇ ଯେଉଁ ସ୍ୱାଦିଷ୍ଟ ପଣା ପ୍ରସ୍ତୁତ ହୋଇ ଘରେ ଘରେ ପାନ କରାଯାଏ, ସେହି ଦିନଠୁ ଏହି ଦିନଟିକୁ ପଣାସଂକ୍ରାନ୍ତି ଭାବରେ ପାଳନ କରାଯାଏ । ଓଡ଼ିଆ ଚଳଣିରେ ପ୍ରତ୍ୟେକ ମାସରେ ଏକାଧିକ ପର୍ବପର୍ବାଣି ପାଳନ ଏ ଜାତିକୁ ଧାର୍ମିକ ଓ ଆଧ୍ୟାତ୍ମବାଦୀ କରିବାରେ ସହାୟକ । ବୈଶାଖରୁ ଚୈତ୍ର ବା ବାରମାସଯାକ ଶିବ, ବିଷ୍ଣୁ, ଶକ୍ତି, ସୂର୍ଯ୍ୟ ଆଦି ଦେବାଦେବୀଙ୍କ ଆରାଧନାରେ ତୁଳସୀର ପ୍ରୟୋଜନୀୟତା ସର୍ବାଗ୍ରେ ରହିଥିବାରୁ ଏବଂ ବୃନ୍ଦାବତୀ ପୂଜକ ପ୍ରାତ୍ୟହିକ ଧର୍ମଧାରଣାର ମୂଳବୀଜ ହୋଇଥିବାରୁ, ବସୁନ୍ଧରା ଠେକିର ବିଶେଷତ୍ୱ ଉତ୍କଳୀୟତାର ବିଶେଷତ୍ୱ ପ୍ରତିପାଦନ କରୁଛି । ଏହା ସହିତ, ସମଗ୍ର ବିଶ୍ୱକୁ ଉତ୍ତପ୍ତ ହେବାରୁ ରକ୍ଷା କରୁଥିବା ତୁଳସୀ ବୃକ୍ଷର ମାହାତ୍ମ୍ୟକୁ ଜଗତରେ ପ୍ରତିପାଦିତ କରୁଛି ।

ସତ୍ୟନଗର, ଭୁବନେଶ୍ୱର